# ଭାଗବତ କଥା

( ଷୋଡ଼ଶ ଖଣ୍ଡ )


ଲେଖକ

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା

ଡଃ କୃଷ୍ଣପ୍ରସାଦ ମିଶ୍ର

ଅନୁବାଦ

ଶ୍ରୀ ଉଦ୍ଧବ ଚରଣ ନାୟକ



ପ୍ରକାଶକ



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୨

ପ୍ରଥମ ସଂସ୍କରଣ—୧୯୮୫

ପ୍ରଚ୍ଛଦ :
ଅମିତ୍ ମୁଖାର୍ଜୀ

ମୁଦ୍ରଣ :
ବାସୁକୀ ପ୍ରିଣ୍ଟର୍ସ
ତେଲେଙ୍ଗାବଜାର, କଟକ

ମୂଲ୍ୟ :
ବନ୍ଧାଇ—୧୫ ଟଙ୍କା
ଅବନ୍ଧା—୧୨ ଟଙ୍କା

# BHAGABAT KATHA

( Sixteenth Part )

Sri Prabhudatta Brahmacharee

*Publisher* :
Srimati Annapurna Mishra
Cuttack Students' Store
Cuttack-2

*First Edition*— 1985

*Price* :
Deluxe Rs. 15·00
Popular Rs. 12·00

# ସୂଚୀପତ୍ର


| ବିଷୟ | ପୃଷ୍ଠା |
| --- | --- |
| ୧ । ଯମଦୂତ ଓ ବିଷ୍ଣୁଦୂତମାନଙ୍କର ସମ୍ବାଦ | ୧ |
| ୨ । ଭଗବାନଙ୍କ ନାମ ଦ୍ୱାରା ସକଳ ପାପର ପ୍ରାୟଶ୍ଚିତ୍ତ | ୯ |
| ୩ । ହରି ନାମ ଦ୍ୱାରା ମହାପାପ ନିବୃତ୍ତି | ୧୬ |
| ୪ । ହାସ୍ୟ ବିନୋଦରେ ଭଗବାନ୍ନାମ ଶ୍ରେୟସ୍କର | ୨୧ |
| ୫ । ହରି ଉଚ୍ଚାରଣ ମାତ୍ରକେ ପାପହରଣ | ୩୦ |
| ୬ । ନାମ ଉଚ୍ଚାରଣର ଅମୋଘ ଫଳ | ୪୦ |
| ୭ । ଅଜାମିଳର ଅନୁତାପ | ୫୧ |
| ୮ । ଅଜାମିଳଙ୍କୁ ଭଗବାନଙ୍କ ପାର୍ଷଦ ପଦପ୍ରାପ୍ତି | ୫୫ |
| ୯ । ଶୂନ୍ୟହସ୍ତରେ ଯମଦୂତମାନଙ୍କର ଯମରାଜଙ୍କୁ ନିବେଦନ | ୬୨ |
| ୧୦ । ଯମରାଜାଙ୍କ ଦ୍ୱାରା ଦୂତମାନଙ୍କ ପ୍ରଶ୍ନର ଉତ୍ତର ପ୍ରଦାନ | ୬୯ |
| ୧୧ । ଯମଦୂତ କାହା ପାଖକୁ ଯିବେ କାହା ପାଖକୁ ଯିବେନାହିଁ ··· | ୭୬ |
| ୧୨ । ଭଗବାନଙ୍କ ନାମର ମାହାତ୍ମ୍ୟ | ୮୧ |
| ୧୩ । ପ୍ରଚେତାଙ୍କ ପୁତ୍ର ଦକ୍ଷଙ୍କର ପ୍ରଜାବୃଦ୍ଧି ପାଇଁ ତପସ୍ୟା | ୯୧ |
| ୧୪ । ପ୍ରଜାପତି ଦକ୍ଷଙ୍କର ଭଗବଦ୍ଦର୍ଶନ | ୯୬ |
| ୧୫ । ମୈଥୁନ ଧର୍ମଦ୍ୱାରା ଦକ୍ଷଙ୍କର ହର୍ଯଶ୍ୱ ନାମରେ ପୁତ୍ର ଜନ୍ମ | ୧୦୩ |
| ୧୬ । ନାରଦଙ୍କର ହର୍ଯଶ୍ୱଙ୍କୁ ଦଶଟି ଗୂଢ଼ ପ୍ରଶ୍ନ | ୧୦୯ |
| ୧୭ । ହର୍ଯଶ୍ୱ ନାରଦଙ୍କ କଷ୍ଟ ବଚନରେ ବିମର୍ଷ | ୧୧୬ |
| ୧୮ । ପୁତ୍ର ବିୟୋଗୀ ଦକ୍ଷଙ୍କ ପୁନରପି ପୁତ୍ର ଲାଭ | ୧୨୧ |
| ୧୯ । ଶବଳାଶ୍ୱମାନଙ୍କୁ ଶିଷ୍ୟ କରିବା ପରେ ଦକ୍ଷଙ୍କର ନାରଦଙ୍କୁ ଅଭିଶାପ | ୧୨୬ |
| ୨୦ । ଦକ୍ଷଙ୍କ ଷାଠିଏ କନ୍ୟା | ୧୩୫ |

| ବିଷୟ | ପୃଷ୍ଠା |
|---|---|
| ୧୧ । ଦକ୍ଷ କନ୍ୟାମାନଙ୍କର ବଂଶ ବର୍ଣ୍ଣନ | ୧୪୦ |
| ୧୨ । ତାର୍କ୍ଷ୍ୟ ଗରୁଡ଼ ଏବଂ ଅରୁଣ | ୧୪୫ |
| ୧୩ । ଇନ୍ଦ୍ରଙ୍କୁ ଦକ୍ଷଙ୍କର ଅଭିଶାପ | ୧୫୭ |
| ୧୪ । କଶ୍ୟପ ପତ୍ନୀମାନଙ୍କର ବଂଶବର୍ଣ୍ଣନ | ୧୬୧ |
| ୧୫ । ଇନ୍ଦ୍ରଙ୍କର ବୃହସ୍ପତିଙ୍କ ପ୍ରତି ଅପମାନ | ୧୬୭ |




# ଭୂମିକା

ସୂତ ସୂତ ମହାଭାଗ ବଦ ନୋ ବଦତାଂ ବର ।
କଥାଂ ଭାଗବତାଂ ପୁଣ୍ୟାଂ ଯଦାହ ଭଗବାଞ୍ଛୁକଃ ॥
[ ଶ୍ରୀ ଭାଗବତ—୧ମ ସ୍କନ୍ଦ, ୪ର୍ଥ ଅଧ୍ୟାୟ—ଶ୍ଳୋକ-୨]

## ଛପ୍‌ପୟ

ଅଜର ଅମର ହରିକଥା ଜନମ ଅରୁ ନାଶ ନ ଜାମୈଂ ।
ତବହୀ ଜାନୋ ଜନମ କବହୁଁ ଜାକୁଁ ନର ପାମୈଂ ॥
ଜା ଦିନହୋବୈ ପ୍ରକଟ ପୁଣ୍ୟତୈଂ କଥା ପୁରାନୀ ।
ହୃଦୟ ପଟଲପୈ ଜନମ ଭୟୋ ନୂତନ ପୁନି ମାନୀ ॥
ଗଙ୍ଗାଜଲ, ପୟ, ସିତା ମିଲି, ଲମ୍‌ସୀ ବନି ପ୍ରକଟଇ ଯଥା ।
ତ୍ୟେଂ ଗୁରୁପୁନୋଂ କୁଂ ମଧୁର, ପ୍ରକଟୀ 'ଭାଗବତୀ କଥା' ॥

ବିକ୍ରମ ସମ୍ବତ୍ ୨୦୦୨ ଗୁରୁପୂର୍ଣ୍ଣିମାଠାରୁ ଏପର୍ଯ୍ୟନ୍ତ ପ୍ରତିଷ୍ଠାନପୁରଠାରେ ଅନୁଷ୍ଠିତ ହୋଇଥିବା ଅଷ୍ଟାଦଶ ପୁରାଣ ପାଠୋତ୍ସବରେ ମୁଁ ଯୋଗଦାନ କରିଥିଲି । ଏଠାରେ 'ଭାଗବତୀ କଥା' ବିଷୟ ମୋ ମନରେ ପ୍ରବେଶ କଲା, ଫଳରେ ଜନ୍ମାଷ୍ଟମୀ ଦିନ ଏହାର ଏକ ଛପ୍‌ପୟ ଲେଖା ଆରମ୍ଭ କରି ପୁନର୍ବାର କାର୍ତ୍ତିକ ଶୁକ୍ଳ ଅଷ୍ଟମୀ ଦିବସରେ ନିୟମାନୁଯାୟୀ ଏକ ଅଧ୍ୟାୟ ଲେଖିବା ଆରମ୍ଭ କଲି । କାର୍ତ୍ତିକଠାରୁ ଆଷାଢ଼ ପର୍ଯ୍ୟନ୍ତ ଆଶ୍ରମମଣ୍ଡଳ ମଧ୍ୟରେ ରହିଥିଲି । ସମ୍ବତ୍ ୨୦୦୩ ଗୁରୁପୂର୍ଣ୍ଣିମା ଦିନ ଏହାର ପ୍ରଥମ ଖଣ୍ଡ ସମସ୍ତଙ୍କ ସମ୍ମୁଖକୁ ଆସିଗଲା, ଏଣୁ ଏହାର ଧାର୍ମିକ ଜନ୍ମତିଥି

ଭାବରେ ଆମେମାନେ ପୂର୍ଣ୍ଣିମା ଦିବସକୁ ଗ୍ରହଣ କରୁ । ଏହାର ଦ୍ୱିତୀୟ ବାର୍ଷିକୋତ୍ସବ ଗତ ଗୁରୁପୂର୍ଣ୍ଣିମା ଦିନ ପୂଜ୍ୟପାଦ ଶ୍ରୀହରି ବାବାଜୀଙ୍କ ସନ୍ନିଧାନରେ ଉତ୍ସାହ ସହକାରେ ପାଳନ କରାଯାଇଥିଲା ।

ନିୟମ ଅନୁଯାୟୀ ବର୍ତ୍ତମାନ ପର୍ଯ୍ୟନ୍ତ ଏହାର ୨୪ ଖଣ୍ଡ ପ୍ରକାଶ କରିବାକୁ ଆଶା ରଖିଥିଲି, କିନ୍ତୁ କାଗଜ ଅଭାବ, ଛାପାଖାନାର ଅସୁବିଧା ତଥା ଅନ୍ୟାନ୍ୟ ବହୁକାରଣରୁ ଏହାର ମାତ୍ର ୧୬ ଖଣ୍ଡ ବର୍ତ୍ତମାନ ସୁଦ୍ଧା ପ୍ରକାଶିତ ହୋଇପାରିଛି । ମୋର ଚେଷ୍ଟାଥିଲା ମାସକୁ ଖଣ୍ଡିଏ ନୁହେଁ, ମାସକୁ ଦୁଇଖଣ୍ଡ କରି ପ୍ରକାଶ କରିବାପାଇଁ; କିନ୍ତୁ ନିଜ ଇଚ୍ଛାରେ ସବୁ କାର୍ଯ୍ୟ ସାଧିତ ହୋଇଗଲେ ଯେ ସମସ୍ତେ ଲକ୍ଷପତି ହୋଇଯାଆନ୍ତେ, କାହାକୁ କିଛି ରୋଗ ହୁଅନ୍ତାନାହିଁ କି କାହା ମନରେ କିଛି ଦୁଃଖ ବି ରହନ୍ତା ନାହିଁ । କର୍ମ କରିବା ପ୍ରାଣୀର ଅଧିକାର, ଫଳପ୍ରାପ୍ତିର ଚାବି କେତେକ ବ୍ୟକ୍ତି ସେମାନଙ୍କ ହାତରେ ସୁନ୍ଦର ଭାବରେ ରଖିଛନ୍ତି । ଏମାନେ ଯେତେବେଳେ ଯାହାପାଇଁ ଗୃହାନ୍ତ କରେଇ ଦିଅନ୍ତି । ପଶୁଭଳି ଏମାନଙ୍କ ଇଙ୍ଗିତରେ ସମସ୍ତେ ନାଚକରନ୍ତି ।

ବର୍ତ୍ତମାନ ଏଠାରେ ଦୁଇବର୍ଷର ଘଟଣା କହୁଅଛି । କ୍ଷଣ କ୍ଷଣକେ ପରିବର୍ତ୍ତନଶୀଳ ସଂସାରରେ ଏଇ ଦୁଇବର୍ଷ ମଧ୍ୟରେ ବହୁ ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନ ଘଟିଛି । ମୋର କୁଟୀରରେ ମଧ୍ୟ ମହାନ ପରିବର୍ତ୍ତନ ଘଟିଛି । ଋଷି ମୁନିମାନଙ୍କ ମତରେ ପିଣ୍ଡ ବ୍ରହ୍ମାଣ୍ଡ ସମାନ । ନିଜର ମନ ଯେପରି ଜଗତଯାକର ମନ ସେହିପରି ବ୍ୟକ୍ତିର ଯଥାର୍ଥ ଜ୍ଞାନ ସମଷ୍ଟିର ଜ୍ଞାନ ଭାବରେ ବିବେଚିତ । ନିଜର ଉନ୍ନତିରେ ଜଗତର ଉନ୍ନତି, ନିଜର ମୁକ୍ତିରେ ବିଶ୍ୱବ୍ରହ୍ମାଣ୍ଡର ମୁକ୍ତି । ଏଣୁ ବାହାରକୁ ନ ଦେଖି ଭିତରକୁ ଦେଖ । ଅନ୍ୟର ପରିବର୍ତ୍ତନରେ ନ ହସି, ନିଜେ ନିଜକୁ ଦେଖ । ତିନିବର୍ଷ ପୂର୍ବେ ଯେଉଁଠାରେ ମାତ୍ର କେତୋଟି ଗୋଟିଏ ପ୍ରକାରର ଗଛ ଥିଲା, ଆଜି ସେଠାରେ ନାନାଜାତିର ଶହଶହ ଗଛ ଦେଖିବାକୁ ମିଳେ । ବହୁତ ସୁନ୍ଦର ସୁନ୍ଦର ଲତା ମାଡ଼ି ଭୂମିକୁ ଚୁମା ଦେଉଛନ୍ତି, ବହୁତ ପ୍ରକାର ଫୁଲ ଫୁଟି ଆନନ୍ଦରେ ଅଧୀର ହୋଇ ଖେଳୁଛନ୍ତି ଓ ହସୁଛନ୍ତି । ଗଛରେ ବହୁତ ଫଳ ଫଳି ଶ୍ରାବଣ ମାସର ଝୁଲଣ ପରି ଦୋଳି ଖେଳୁଛନ୍ତି । ଯେତେ ପ୍ରକାର ଗଛ ସମସ୍ତଙ୍କର ବିଭିନ୍ନ ପ୍ରକାର ଇତିହାସ ଅଛି । ପାଠକମାନଙ୍କୁ ଏହାର ପୃଥକ ପୃଥକ ଭାବରେ ପରିଚୟ କରାଇଲେ ଏକ ପୃଥକ ପୁସ୍ତକ ହୋଇଯିବ । 'ଭଗବତ କଥା'ର ମହତ୍ତ୍ୱ କମିଯିବ । ଏଣୁ ବିସ୍ତାର କରି ବର୍ଣ୍ଣନା କରିବନାହିଁ ; କିନ୍ତୁ କିଛି ମାତ୍ର ଶୁଣାଇବ । କାହିଁକି ଶୁଣାଇବ ମହାଶୟ ! ଗଛପାନ କଥାରେ କାହିଁକି ଅଦାଲତରେ ସମସ୍ତ ନଷ୍ଟକରି ଭଗବାନଙ୍କ ସମ୍ମୁଖରେ ଚର୍ଚ୍ଚା ନ କରିବା ?

ଭଗବାନଙ୍କର ସମ୍ପର୍କରେ ତ ଚର୍ଚ୍ଚା କରୁଅଛୁ । ସକାଳେ କୌଣସି ଚତୁର ଚନ୍ଦ୍ରକର ଆସି ମୋର ସହ ପିଲାଖେଳ ଖେଳି ଚାଲିଯାଏ । ତାକୁ ମୁଁ କେବେ ଦେଖିନାହିଁ, ତାର ଖେଳକୁ ଦେଖିଛୁ, ତାର ଅଦ୍ଭୁତ ରଚନାକୁ ଦେଖିଅଛୁ । ଯିଏ ଯେଉଁ କଥାରେ ଆଗ୍ରହ, ସେ ସମ୍ପର୍କୀୟ ଆଲୋଚନାରେ ସୁଖୀ ହୁଏ । ଅତଏବ ଚନ୍ଦ୍ରକରର ଚନ୍ଦ୍ରକଳା ସମ୍ବନ୍ଧୀୟ ଆଲୋଚନା ଚନ୍ଦ୍ରପ୍ରେମୀଙ୍କୁ ଭଲ ଲାଗିବ । ପୁନଶ୍ଚ ଲେଖକର ମଧ୍ୟ ଏଥିପ୍ରତି ମମତା ଅଛି, ତାର ମଧ୍ୟ ଏହି ଫୁଲ, ପତ୍ର ଏବଂ ଲତାମାନଙ୍କ ଦ୍ୱାରା ମନୋରଞ୍ଜନ ହୁଏ । ଏଣୁ ଆଜି ବାର୍ଷିକ ପର୍ବ ଉପଲକ୍ଷେ ଏହାର ଚର୍ଚ୍ଚା ଅନୁଚିତ ନୁହେଁ ।

ଯେଉଁ ସ୍ଥାନରେ ଏହି 'ଭାଗବତ କଥା' ଲେଖାଯାଇଅଛି, ପୁରାଣରେ ଏହାର ନାମ 'ଯଜ୍ଞତୀର୍ଥ' । ପ୍ରଥମେ ଲେଖକ ହଂସତୀର୍ଥରେ ରହୁଥିଲେ, ଏବେ ଯଜ୍ଞତୀର୍ଥରେ ଅଛନ୍ତି । ଯେଉଁ କୁଟୀରରେ ଏହା ରଚନା କରାଯାଇଥିଲା ତାହା ବହୁତ ଉଚ୍ଚରେ ଅବସ୍ଥିତ । ଭଗବତୀ ଭାଗୀରଥୀର କୂଳରେ ନୁହେଁ, କୂଳଠୁ ବହୁ ଉଚ୍ଚ ସ୍ଥାନରେ । ଆଜିକାଲି ବର୍ଷାଯୋଗୁ ତନପନ୍ଥ ଗଙ୍ଗାମାତା ବହିବା ଯୋଗୁଁ ଏହି ସ୍ଥାନ ଏକ ଟାପୁରେ ପରିଣତ ହୋଇଅଛି । ଏହାର ସବାତଳେ ଏକ ସୁନ୍ଦର ମହୁଭରା ଗଛ । ଏହି ଗଛ ମୂଳରେ ମାଟିର ଚଉତରା ତିଆରି ହୋଇଛି । ବର୍ଷାଦିନେ ଗଙ୍ଗାମାତା ବଢ଼ିବା ଫଳରେ ଏହା ଜଳ ଦ୍ୱାରା ବୁଡ଼ିଯାଏ । ଏହାକୁ ଭୂଲୋକ କୁହାଯାଏ । ଏହାର ଉଚ୍ଚ ସ୍ଥାନର ତନଦିଗରେ ଇଟା ତିଆରି ପକ୍କା ପରିଧି ଅଛି । ପଶ୍ଚିମ ଦିଗରେ ଗଙ୍ଗାଙ୍କ ସାମନାରେ ଦାଉଁଶ ଜାଫିର ତିଆରି ହୋଇ ଘେର ଦିଆଯାଇଛି । ମଝିରେ ଗୋଟିଏ ପକ୍କା କୁଟୀର ମଧ୍ୟ ଅଛି, ଗଙ୍ଗାଙ୍କ ପଟରେ ଏକ ସୁନ୍ଦର ଅଗଣା ରହିଛି ଯାହାର କ ବଡ଼ ବଡ଼ ଘୁରେଟି ଦୁଆର ଅଛି । ଦୁଇଟି ଦକ୍ଷିଣ ଓ ଦୁଇଟି ଉତ୍ତର ପଟେ ତଥା ଗୋଟିଏ ପୂର୍ବ ପଟେ ରହିଛି । ଏହାର ଚତୁଃ ପାର୍ଶ୍ୱ ଏକ ଖୋଲାସ୍ଥାନ । ଏଥିରେ ବୃକ୍ଷଲତା ଶୋଭା ପାଉଛନ୍ତି । ଦକ୍ଷିଣ ପଟ କେବଳ ଚାରି ପାଞ୍ଚହାତ ଓସାରର ସ୍ଥାନ, ପଶ୍ଚିମ ପଟ ପନ୍ଦର ଷୋଳହ ହାତ, ଉତ୍ତର ପଟ ଦଶ ବାରହାତ ତଥା ପୂର୍ବ ପାଖ ପାଞ୍ଚ ଛଅହାତ ହେବ । ପଶ୍ଚିମପାଖ ବୃତ୍ତାକାର ଗୋଲ ସଦୃଶ, ପଶ୍ଚିମ ପାଖରେ ଗଙ୍ଗାଧାର ପିଟି ହେଉଅଛି । ଦକ୍ଷିଣ ଦିଗରେ ଏକ ବଡ଼ନାଳ ଅଛି ଯଦ୍ୱାରା ବର୍ଷା ଦିନରେ ଦୂରରୁ ପାଣି ଆସି ଗଙ୍ଗାରେ ମିଶିଥାଏ । ଉତ୍ତରରେ ଗଙ୍ଗାଠାରୁ ପ୍ରତିଷ୍ଠାନପୁର [ଝୁସୀ] ନଗରକୁ ଯିବାପାଇଁ ରାସ୍ତା ପଡ଼ିଅଛି । ଏହା ବ୍ୟତୀତ ବର୍ତ୍ତମାନ ଗଛମାନଙ୍କ କଥା ଶୁଣନ୍ତୁ । କେହି କେହି କହନ୍ତି —"କେତେ ଦିନରୁ ଆଜି ପର୍ଯ୍ୟନ୍ତ ଏଠାରେ ମାଲତୀର ବଡ଼ ଗଛ ଏଠାରେ ଅଛି, ତନବର୍ଷ ପୂର୍ବେ ଏହାର ଜଣେ ଡାଳ ଭାଙ୍ଗି ନେଇ ତନୋଟି ସ୍ଥାନରେ ଲଗାଇଥିଲି । ଦକ୍ଷିଣ ପାଖରେ ଥିବା ଏହି ଲତା ଉପରକୁ ଚଢ଼ିଯାଇଛି । ଗତ ବର୍ଷ ସ୍ୱତନ୍ତ୍ର ଦିବସ ଉପଲକ୍ଷେ ପାରିଜାତ ହରଶିଙ୍ଗାର

ବୃକ୍ଷକୁ, ଆମର ସ୍ୱାତନ୍ତ୍ରତା ଦ୍ୱାରଆଡ଼େ ରହିଲେ ଭଲ ଦେଖାଯିବ ଭାବି, ଦକ୍ଷିଣ ପାଖରେ ଲଗାଇଥିଲି । ଆଜି ଏହି ବୃକ୍ଷ ବଡ଼ ହୋଇ ଯାଇଛି, ଏଥିରୁ ଅନେକ ଶାଖା ବାହାରିଲାଣି । ବଡ଼ ବଡ଼ ପତ୍ରଥିବା ଏହି ଗଛ ଆଶାତୀତ ଭାବରେ ବଢ଼ିଯାଇଛି, ବର୍ଷକୁ ଦୁଇଟି ଶାଖା ଓ ହାରାହାରି ଏକଶହ ଉପଶାଖା ହୋଇଅଛି । ଏହାର ଆୟତନ ମଧ୍ୟ ବଢ଼ିଯାଇଛି । ମୋର ରହିବା ଘର ଆଗରେ ସ୍ୱତନ୍ତ୍ରତା ଦିବସ ଗଛ ରହିଛି । ଏହା ପୂର୍ବରୁ ମାଧବୀ ଲତା ମୋର ଦରଜା ପାଖରେ ରହିଥିଲା । ଗତବର୍ଷ ଭିତରେ ଏହି ଲତା ବହୁ ଗୁଣରେ ବଢ଼ିଯାଇଛି । ପଶ୍ଚିମ ଭାଗରେ ଦୁଇଟି ବଡ଼ ବଡ଼ କିଆରୀରେ ତୁଳସୀ ବଣ ରହିଛି । ଗୋଟିଏ ରାଧାବନ ଅନ୍ୟଟି କୃଷ୍ଣବନ, ଏକାଠି ଲଗାଇବା ଦ୍ୱାରା କୌଣସି ଝଗଡ଼ା ହେବ ନାହିଁ ଏଥିପାଇଁ ଦୁଇ ଦୁଇଟି କରି ମୁଁ ଲଗାଇଛି । ତା ମଝିରେ ଖୁଣ୍ଟି ଦେଇ ଯୂଇ ଲତା ଲଗାଯାଇଛି । ଏହି ଯୂଇ ବଣ ଖୁବ୍ ଘଞ୍ଚ ଓ ସୁନ୍ଦର, ଏହା ଉପରେ ବିଷ୍ଣୁକାନ୍ତା ଲତା ସ୍ୱତଃ ଚଢ଼ିଯାଇଅଛି । ଯୂଇ ଓ ବିଷ୍ଣୁକାନ୍ତା ଶାଖା ପରସ୍ପର ଛନ୍ଦି ହୋଇ ରହିଛନ୍ତି । ଯୂଇର ସୁନ୍ଦର ଶ୍ରେଷ୍ଠ ଶ୍ରେଷ୍ଠ ପୁଷ୍ପ ତଥା ସୁଗନ୍ଧଯୁକ୍ତ କଢ଼ସବୁ ବିଷ୍ଣୁକାନ୍ତାର ନୀଳ ତଥା ଆକାଶୀ ରଙ୍ଗ-କଢ଼ଗୁଡ଼ିକ ସହ ମିଶି ଆନନ୍ଦରେ ହିଲ୍ଲୋଳିତ ହେଉଥିବା ଜଣାଯାଉଛି, ଗଙ୍ଗା ଯମୁନା ସଖୀମାନେ ଧଳା ଓ ନୀଳଶାଢ଼ୀ ପିନ୍ଧି କ୍ରୀଡ଼ା କରୁଛନ୍ତି । ଏହି ପାଖରେ ତୁଳସୀ କିଆରୀ ଦୁଇଟି ଆଗରେ ସ୍ୱର୍ଣ୍ଣମଲ୍ଲୀ (ଚମେଲୀ)ର ଗଛ ଅଛି, ଏ ବହୁଦୂରରୁ ସାଙ୍ଗହେବାପାଇଁ ଆସିଅଛି । ବାମ ଭାଗରେ ଗନ୍ଧରାଜ ବୃକ୍ଷ ଓ ଏହାର ସାମନା ଡାହାଣ ଭାଗରେ କିଆ ଗଛ ରହିଛି । ବେଲ ଗଛ ବହୁତ ଅଛି । ଏମାନେ ଯେତେବେଳେ ଫୁଲ ଧରନ୍ତି, ଆକାଶରେ ତାରା ଖେଳିଲା ଭଳି ଜଣାଯାଏ । କୂଳେ କୂଳେ ଅମୃତ ଫଳ ପିଜୁଳିର ଗଛ । ଏମାନଙ୍କର ସଂଖ୍ୟା ତେର । ଗତବର୍ଷ କେତୋଟିରେ ଫଳ ମଧ୍ୟ ଆସିଥିଲା । ବର୍ତ୍ତମାନ ସବୁଥିରେ ଫଳ ହେବାର ଜଣାଯାଉଛି । ଫୁଲ ଧରିଛି । ମାଧବୀ ଲତାଗୁଡ଼ିକ ଆଶାତୀତ ଭାବରେ ବଢ଼ିଯାଇଛି । ଗୃହ କୋଣରୁ ଦୁଇଟି ଲତା କୁଟୀର ଉପରକୁ ଚଢ଼ିଯାଇଛି । ପଞ୍ଚମଟି ନିମଗଛ ପାଖରେ, ଉତ୍ତର ଦିଗରେ ଦୁଇଟି ପ୍ରାଚୀନ ନିମଗଛ ଅଛି । ତା ଉପରେ ଗିଲଂଗଛ ଚଢ଼ି ଯାଇଛି । ବେଲଗଛଟିଏ ବି ଲଗାଇ ଥିଲି, ବର୍ତ୍ତମାନ ଏଥିରୁ ଅନେକ ଶାଖା ପ୍ରଶାଖା ବାହାରି ନିମଗଛ ଆଡ଼କୁ ମୁହଁକରି ତା ଉପରେ ଚଢ଼ିକରି ରହିଛି । ଗତବର୍ଷ ଯେଉଁ ଦୁଇଟି ଚମ୍ପାଗଛ ଲଗାଇ ଥିଲି, ସେଗୁଡ଼ିକ ଶୁଖିଗଲାଣି । ଶ୍ରେଷ୍ଠଥିଲେ ବର୍ତ୍ତମାନ କିଆ ଲଗାଯାଇଛି । ଯୂଇର ତିନୋଟି ବିସ୍ତୀର୍ଣ୍ଣ ବଗିଚା ଅଛି । ପୂର୍ବ ପଟରେ ବାଡ଼ି ଉପରେ ଯୂଇର କେତୋଟି ଶାଖା ମାଡ଼ିକରି ରହିଛି । ସମସ୍ତଙ୍କର ସୁନ୍ଦର ଇତିହାସ ଅଛି । ସମସ୍ତଙ୍କର ଇତିହାସ କହିହେବ ନାହିଁ । ସମସ୍ତଙ୍କର ନାମ ଲେଖିଦେଉଛି ନହେଲେ ମୋ ଉପରେ ଅସନ୍ତୁଷ୍ଟ ହୋଇଯିବେ । ଆମର ନାମ ଲୁଚିବା କଥା କାହିଁକି ଲୁଚିବା ନାହିଁ ! ପ୍ରଥମେ ଲତାମାନଙ୍କର ନାମ କହୁଛି, ମଲ୍ଲିକା, ମାଧବୀ,

ବିଧାରି, ବିଷ୍ଣୁକାନ୍ତା, ଦ୍ରାକ୍ଷା, ଗୁଳୁଚ, ଲୌକି, ତୁରଇ, ଧନୁଆ, ରମାସ, ଆଦିକ୍ଷଣିକ, ଏଗୁଡ଼ିକ ବର୍ଷାଦିନେ ମାଡ଼େ ଓ ଖରାଦିନେ ଶୁଖିଯାଏ । ଏସବୁ କ୍ଷଣିକ ଅଟନ୍ତି । ଫୁଲ ଧରୁଥିବା ଗଛଗୁଡ଼ିକ ମଧ୍ୟରେ, ଯୂଇ, ବେଲ, ଗୋଲାପ, ରଜନୀଗନ୍ଧା, କୋରୁଆ, ଗନ୍ଧରାଜ, ନିବାରି, କୁନ୍ଦ, କଆ, ବକୁଳ, ସ୍ୱର୍ଣ୍ଣ ମାଳତୀ, କନଅର ଆଦି ବିଶେଷ ଉଲ୍ଲେଖଯୋଗ୍ୟ ଅଟେ । ଫଳଧାରଣକାରୀ ଗଛମାନଙ୍କ ମଧ୍ୟରେ ପିଜୁଳି, ଡାଳିମ୍ବ, ଆମ୍ବ, ଅମୃତଭଣ୍ଡା, ଆତ, ଫାର୍ସିକୋଳି, ଇତ୍ୟାଦି । ଏହାର ଦୁଇଦୁଇଟି, ତିନତିନୋଟି ଗଛ ହୁଏ । ବାହାରେ ପିଜୁଳି, ଲେମ୍ବୁ, ବେଲ ଆଦି ଏବଂ ଦୁଇ କମଳକୁଣ୍ଡ ମଧ୍ୟ ଗଛ ଲଗା ଯାଇଛି, ଯେଉଁଥିରେ କି ନୀଳ କମଳ ଖେଳୁଥାଏ । ପ୍ରଥମେ ପଢିଥିଲି -

ତୁଳସୀ କାନନଂ ଯତ୍ର ପଦ୍ମବନାନି ଚ ।
ପୁରାଣପଠନଂ ଯତ୍ର ତତ୍ର ସନ୍ନିହିତୋ ହରିଃ ॥

ଯେଉଁଠାରେ ତୁଳସୀ ବଣ, ପଦ୍ମବନ ଅଛି, ଦୈନିକ ପୁରାଣ ପାଠ ହେଉଅଛି ସେଠାରେ ଶ୍ରୀହରି ନିବାସ କରନ୍ତି । ଆହୁରି ମଧ୍ୟ ପଢିଥିଲି 'ମଦ୍ ଭକ୍ତାଃ ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ' । ଯେଉଁଠାରେ ମୋର ଭକ୍ତମାନେ ଏକତ୍ରିତ ହୋଇ ମୋର ନାମ ଗୁଣଗାନ କରନ୍ତି ସେଠାରେ ମୁଁ ଠିଆହୋଇ ରହେନାହିଁ, ବସିପଡ଼େ । ଏହାଭାବି ନିଜ କୁଟୀର ପାଖରେ ତୁଳସୀର ଦୁଇଟି ବଣ ତିଆରି କରିଛି ଓ ଦୁଇଟି କମଳ କୁଣ୍ଡ ତିଆରି କରି ରଖିଛି । ପ୍ରତ୍ୟେକ ଦିନ ନିୟମ ଅନୁଯାୟୀ ପୁରାଣ ମଣ୍ଡପରେ ପୁରାଣପାଠ ଓ ପ୍ରବଚନ ହୁଏ । ଉଦୟ ଅସ୍ତ ସବୁବେଳେ ଅଖଣ୍ଡ କୀର୍ତ୍ତନ ହେଉଥାଏ, ପୁଣି ମଧ୍ୟ ଶ୍ରୀହରି ଦେଖା ଯାଆନ୍ତି ନାହିଁ । ଏବେ ଏଠାରେ କେମିତି କପରି ଶାସ୍ତ୍ର ବଚନ ମିଥ୍ୟା ହେଲା, ଶ୍ରୀହରି ଆସିବେ, ରହିବେ କିନ୍ତୁ ସେ ଚତୁର୍ଭୁଜ ରୂପ, ମୁରଲୀଧାରୀ ରୂପ ଦେଖାଉ ନାହାନ୍ତି, ସନ୍ଥ ରୂପରେ ରହି ଦର୍ଶନ ଦେଇଛନ୍ତି, କିନ୍ତୁ ତାଙ୍କ ଉପରେ ନିଷ୍ଠା ନାହିଁ । ଯେଉଁ ବୃକ୍ଷ ଓ ଲତାମାନଙ୍କୁ ମୁଁ ଅତ୍ୟନ୍ତ ପ୍ରେମ ଭାବରେ ପାଠକମାନଙ୍କ ସହ ପରିଚିତ କରାଇଲି, ସେମାନେ ସମସ୍ତେ ଆଜିକାଲି ମୋର ସଖା, ସୁହୃଦ, ମିତ୍ର ଓ ସାଥି ଭାବରେ ପରିଚିତ । ମୁଁ ସେମାନଙ୍କ ସାଥିରେ ରହୁଛି, ସେମାନଙ୍କ ସାଥିରେ ଖେଳୁଛି, ସେମାନଙ୍କୁ ପଚାରୁଛି, ସେମାନଙ୍କ ସହ କଥାଭାଷା ହେଉଛି, ସେମାନଙ୍କୁ ଦେଖି ଆନନ୍ଦିତ ହେଉଛି । ଏମାନେ ସବୁଦିନ ବଢୁଛନ୍ତି, ଉନ୍ନତି କରୁଛନ୍ତି, ଫୁଲ ଝରିଛନ୍ତି, ଫଳ ଦେଉଛନ୍ତି । ଏମାନେ ବଡ଼ ସହନଶୀଳ । କିଏ ହାଣୁ, ମାରୁ କିଛି ଆପତ୍ତି ନାହିଁ । ଯେଉଁ ପାଣି ଏମାନଙ୍କୁ ଦିଆଯାଉଛି । ଏମାନେ ପିଇ ଦେଇଛନ୍ତି । ନଦେଲେ ମାଗୁ ନାହାନ୍ତି, କୁବାକ୍ୟ କହିଲେ ଲେଉଟିକରି ଉତ୍ତର ବି ଦେଉନାହାନ୍ତି । ଖରା,ବର୍ଷା, ଶୀତ, ସବୁକୁ ସେମାନେ ସହି ନେଉଛନ୍ତି । ଯିଏ ସ୍ପର୍ଶୁଛି ଫୁଲ, ଫଳ ତୋଳି ନେଇଯାଉଛି କାହାରିକୁ ସେମାନେ ମନା କରୁ-ନାହାନ୍ତି, ଦେବାପାଇଁ କୁଣ୍ଠାବୋଧ ମଧ୍ୟ କରୁନାହାନ୍ତି, କିଏ ତୋଳି ନ ନେଲେ ପୃଥିବୀ

ଉପରେ ଫୁଲଫଳ ପକାଇ ଦେଉଛନ୍ତି । ସବୁବେଳେ ସୁଗନ୍ଧ ପ୍ରଦାନ କରୁଛନ୍ତି । ଦୁର୍ଗନ୍ଧ ବସ୍ତୁ ଏମାନଙ୍କ ଭିତରକୁ ଆସିଲେ ଏମାନଙ୍କଠାରୁ ସୁଗନ୍ଧ ଗ୍ରହଣ କରି ନେଉଛନ୍ତି । ଏହି ମୂକ ସଖାମାନଙ୍କ ପାଖରେ କେତେ ଗୁଣ ପୂରି ରହିଛି କିନ୍ତୁ ମୋ ଠାରେ ଏସବୁ କିଛି ନାହିଁ । ମୁଁ ଅବଗୁଣରେ ପୂରି ରହିଛି । ଏମାନେ ପୁଣି ମୋର ନିଜର ଅଟନ୍ତି । ଏହି ଆଶା ନେଇ ବସିଛି କି ଯିଏ ଏମାନଙ୍କୁ ଜନ୍ମ ଦେଇଛନ୍ତି, ଏମାନଙ୍କର ଯେତେ ନିଜର କରି ନେବାର କ୍ଷମତା ଅଛି, ତେବେ ଏମାନଙ୍କର ସୃଷ୍ଟିକର୍ତ୍ତା ପାପୀମାନଙ୍କୁ ନିଶ୍ଚୟ ଆପଣାର କରିନେବେ । ଚଉଦବର୍ଷ ମଧ୍ୟରେ କେତେକ'ଣ ହୋଇଗଲା, କିନ୍ତୁ ମୋତେ ପୂର୍ଣ୍ଣ ଭାବରେ ପ୍ରଭୁପ୍ରେମ ମିଳିଲା ନାହିଁ । ଏଇ କାଳି କଲମ, ଏଇ କାଗଜ କାମ, କାଗଜ ଲେଖା, କାଗଜ ବିହାରି ଜୀବ ମୁଁ କାଗଜର ବ୍ୟବହାରକାରୀ ଅଟେ । ନାଥ ! ମୋତେ କେବେ ଆପଣାର କରିବେ, କେବେ ଏଇ ଜଞ୍ଜାଳରୁ ମୁକ୍ତ କରିବେ ହରି ! କେବେ ମହାତ୍ମା ଭାବରେ ଆପଣଙ୍କ ଚରଣ ତଳେ ଶରଣ ଦେବେ, ହେ ଅଶରଣ ଶରଣ ? କୁଟିଳ ପ୍ରତି କେବେ କୃପା କରିବେ, ହେ କୃପାସିନ୍ଧୋ ! କେବେ ଆପଣଙ୍କ ପ୍ରେମର ପିଆଲା ପିଆଇବେ, ହେ ପ୍ରେମାସ୍ପଦ !

'ଭାଗବତ କଥା'ର ବାର୍ଷିକ ଉତ୍ସବ ଉପଲକ୍ଷେ ମୁଁ ସମସ୍ତ ବିଷୟ ପାଠକମାନଙ୍କ ନିକଟରେ ପ୍ରକାଶ କରୁଛି ଏବଂ ପ୍ରାର୍ଥନା କରି କହୁଛି, ଏହି କଥାର ପ୍ରଚାର ଓ ପ୍ରସାର ନିମନ୍ତେ ଯତ୍ନବାନ ହୋଇ ପୁଣ୍ୟ ଭୋଗ କରନ୍ତୁ ।

ଆଉ ଗୋଟିଏ କଥା, ମୁଁ ଭାଗବତ କଥା ସହ ଯେଉଁ ରତ୍ନକୁ କାଚ ଖଣ୍ଡରେ ପରିଣତ କରିଛି, ଭଗବାନ ଓ ଭକ୍ତମାନଙ୍କ କଥା ସହ ଗ୍ରାମ କାହାଣୀ ଯାହା ସବୁ କହୁଛି ନିଜକଥା କହି ଯେଉଁ ଦଶ ପନ୍ଦର ପୃଷ୍ଠା କାଗଜ ଖର୍ଚ୍ଚ କରି ଦେଉଛି ଏହା ନିତାନ୍ତ ଅନୁଚିତ କଥା, କିନ୍ତୁ ଏଥିରେ ପାଠକମାନେ ଖରାପ ଭାବିବେ ନାହିଁ । ଏ କଥା ବି ଭାବିଦେ ନାହିଁ, ଗଙ୍ଗା ତଟରେ ମୁଁ କାହିଁକି ଏହି ଗୀତ ଗାଉଅଛି, କାହିଁକି ଗୋଟିଏ କଥାକୁ ବାରମ୍ବାର ଓଲଟପାଲଟ କରି କହୁଛି ? କାହିଁକି ଭକ୍ତ ଓ ଭଗବାନଙ୍କର କଥା ଛାଡ଼ି ନିଜ କଥା କହୁଛି ? ଏସବୁ କଥା ଭାଗବତ କଥାର ଗୋଟିଏ ଅଧ୍ୟାୟରେ କେତେ ଆଉ କହିବି, ତେଣୁ ଏହାର ଶୀଘ୍ର ସମାପ୍ତି ହେଉ । ମୁଁ ମଧ୍ୟ କେବେ କେବେ ଭାବୁଛି ଯେ, ଆଉ ମୋ ବିଷୟରେ ଲେଖିବି ନାହିଁ । ଆଜି ଏହାର ନିର୍ଣ୍ଣୟ ପାଠକମାନଙ୍କ ଉପରେ ଛାଡ଼ି ଦେଉଛି । ଆସନ୍ତା ଦୁଇଖଣ୍ଡରେ ପ୍ରାକ୍ କଥନ ଲେଖିବି ନାହିଁ । ଭାଗବତ କଥାର ଯେତେ ପାଠକ ଅଛନ୍ତି ସମସ୍ତେ ମୋ ପାଇଁ ଦୁଇପଇସା ଖର୍ଚ୍ଚ କରନ୍ତୁ । ଏହାକୁ ପଢି ସମସ୍ତେ ମୋତେ ସୂଚନା ଦିଅନ୍ତୁ, ପ୍ରାକ୍‌କଥନ ବନ୍ଦ କରିଦେବି ନା କେବେ କେବେ ମନକୁ ଆସିଲେ ଲେଖିବି । କାହିଁକି ନା ଏହି କଥନରେ ନିଜେ କାହିଁକି ଆତ୍ମଶ୍ଳାଘା ପରମାର୍ଥ ଚର୍ଚ୍ଚା କମ୍ ଅଛି ! ଏହାର ବିବେଚନା ପାଠକମାନଙ୍କ ଉପରେ । ସମସ୍ତଙ୍କର ସମ୍ମତିକୁ ଗ୍ରହଣ କରି ସେହି ଅନୁସାରେ ବିବେଚିତ ହେବ ।

ସମସ୍ତ ପାଠକମାନଙ୍କର ମତାମତ ଏ ବିଷୟରେ ଆଶା କରୁଛି । ମୋ ଅନୁରୋଧର ଅର୍ଥ ଯଦି ନିଜର ପ୍ରଶଂସା ଶୁଣିବା ପାଇଁ ବୋଲି କେହି ଭାବୁଥାଆନ୍ତି, ତେବେ ପାଠକମାନେ ଏପରି ଅର୍ଥ ନ କରିବା ପାଇଁ ଅନୁରୋଧ । 'ଭାଗବତକଥା'ର ପ୍ରଶଂସାକୁ ଯଦି ମୋର ପ୍ରଶଂସା ବୋଲି ମୁଁ ଭାବୁଥାଆନ୍ତି ତେବେ ମୁଁ ପାପକରୁଅଛି । ପ୍ରାକ୍‌କଥନ ସମ୍ବନ୍ଧରେ ବାସ୍ତବିକ ମୁଁ ଦ୍ୱିଧାରେ ପଡ଼ିଛି । ନିଜ ପାଣ୍ଡିତ୍ୟ ସମସ୍ତଙ୍କୁ ଭଲ ଲାଗେ, ମନନଶୀଳ ପାଠକମାନେ ଏହାକୁ ଭଲ ଭାବରେ ପଢ଼ି ବିବେଚନା କରିବା ଉଚିତ । ସମସ୍ତ ପାଠକମାନଙ୍କ ଠାରୁ ଉତ୍ତର ପାଇବାର ଆଶାରଖିଛି । ବର୍ତ୍ତମାନ ବେଶି ଗ୍ରାହକ ନାହାନ୍ତି । ଏହାର କାରଣ କିଛି ଜଣାପଡ଼ୁ ନାହିଁ । ଭାଗବତ କଥାରେ ଅମର କଥା-ମାନ ରହିଅଛି, ଏଥିରେ ସ୍ୱାର୍ଥ ଓ ପରମାର୍ଥ ଦୁଇଟି କଥା ରହିଛି, ଇହଲୋକ ପରଲୋକ ଦୁଇଟିର ନିର୍ମାଣ ହୋଇଛି, ମନୋରଞ୍ଜନ, ଧର୍ମ ଉପାର୍ଜ୍ଜନ ଏଥିସହ ରହିଛି । ଏଇ ସୁଲଭ ଅମୃତକୁ ଯିଏ ପାନ କରିବାକୁ ନ ଚାହିଁବେ, ତେବେ ମୁଁ କ'ଣ ଆଉ କହିବି ! ଭକ୍ତ ଭାବନ ଭଗବାନଙ୍କ ପାଦପଦ୍ମରେ ମୋର ପ୍ରାର୍ଥନା, ସେ ନିଜର ଗୁଣ ଶ୍ରବଣ ନିମନ୍ତେ ସମସ୍ତଙ୍କୁ ଅନୁରାଗ ପ୍ରଦାନ କରନ୍ତୁ ।

ଝୁସୀ ସଙ୍କୀର୍ତ୍ତନ ଭବନ (ପ୍ରୟାଗ)
ଶ୍ରାବଣ କୃଷ୍ଣ ଚତୁର୍ଦ୍ଦଶୀ, ୨୦୦୫

ପାଠକମାନଙ୍କର କୃପାଭିକ୍ଷୁ
ପ୍ରଭୁଦତ୍ତ

# ଯମଦୂତ ଓ
# ବିଷ୍ଣୁଦୂତମାନଙ୍କର ସମ୍ବାଦ

ଯୁୟଂ ବୈ ଧର୍ମରାଜସ୍ୟ ଯଦି ନିର୍ଦ୍ଦେଶ କାରିଣଃ ।
ବ୍ରୂତ ଧର୍ମସ୍ୟ ନସ୍ତତ୍ତ୍ୱଂ ଯଚ୍ଚ ଧର୍ମସ୍ୟ ଲକ୍ଷଣମ୍ ॥
ବେଦ ପ୍ରଣିହିତୋ ଧର୍ମୋ ହ୍ୟଧର୍ମସ୍ତଦ୍ ବିପର୍ଯ୍ୟୟଃ
ବେଦୋ ନାରାୟଣଃ ସାକ୍ଷାତ୍ ସ୍ୱୟଂଭୁରିତି ଶୁଶ୍ରୁମ ॥

ଶ୍ରୀମଦ ଭାଗବତ ॥ ୬ ସ୍କନ୍ଧ ॥ ୧ମ ଅଧ୍ୟାୟ ॥ (୩୮—୪୦)

ଛପ୍ପୟ

ସୁନି ନାରାୟଣନାମ ବିଷ୍ଣୁ ପାର୍ଷଦ ତହଁ ଆୟେ ।
ଯମଦୂତନକୁଁ ପକରି ଗଦାତେଁ ମାରି ଗିରାୟେ ॥
ଡ଼ରିକେଁ ପୁଛେ ଦୂତ— କୌନ ତୁମ ହମେଂ ଭଗାଓ ।
ମୋଲ ଲିବ ବିନୁ କାୟେ ତଡ଼ାତଡ଼ ମାରି ଲଗାଓ ॥
ଧର୍ମରାଜକେ ଦୂତ ହମ୍, ପାପୀକୁଁ ଲୈଜାତ ହୈଂ ।
କରି ପ୍ରୀ ନ ହମ ଅପରାଧ କଛୁ, କାହେ ଆପୁ ଖି ସାତ ହୈ ॥

ଶ୍ରୀ ଶୁକଦେବ କହିଲେ "ରାଜନ ! ବିଷ୍ଣୁଦୂତମାନେ ଯମଦୂତମାନଙ୍କୁ ପଚାରିଲେ, ତୁମେମାନେ ଯଦି ପ୍ରକୃତରେ ଧର୍ମରାଜଙ୍କର ନିର୍ଦ୍ଦେଶମତେ କାର୍ଯ୍ୟ କରୁଥାଅ, ତେବେ କୁହ ଧର୍ମ କାହାକୁ କୁହାଯାଏ ? ଧର୍ମର ତତ୍ତ୍ୱ କ'ଣ ?" ଯମଦୂତ କହିଲେ— "ମହାଶୟ ! ବେଦରେ ନିର୍ଦ୍ଦେଶ ହୋଇଥିବା କର୍ତ୍ତବ୍ୟ ଧର୍ମ ନାମରେ ଅଭିହିତ । ବେଦରେ ଯେଉଁ କର୍ତ୍ତବ୍ୟ ନିଷେଧ କରାଯାଇଅଛି ତାହା ଅଧର୍ମ । ଆମ୍ଭେମାନେ ଜାଣିଅଛୁ ଯେ, ବେଦ ନାରାୟଣଙ୍କର ସାକ୍ଷାତ ସ୍ୱରୂପ ଏବଂ ନାରାୟଣ ସ୍ୱୟଂଭୂ ଅର୍ଥାତ୍ ସେ କାହାଠାରୁ ଜନ୍ମଲାଭ କରି ନାହାନ୍ତି ।

ଦୁଇଟି ରାଜ୍ୟର ରାଜକର୍ମଚାରୀମାନେ ସମବେତ ହେଲେ, ଯେଉଁମାନେ ଅଧିକ ପ୍ରଭାବଶାଳୀ ତଥା ବଡ଼ ରାଜାଙ୍କର କର୍ମଚାରୀ ହୋଇଥାଆନ୍ତି, ସେମାନେ ପ୍ରଭୁ ସଦୃଶ ସେବକ ଉପରେ କ୍ଷମତା ବିସ୍ତାର କରିଲା ଭଳି ଶ୍ରେଷ୍ଠ ରାଜ୍ୟର କର୍ମଚାରୀମାନଙ୍କ ଉପରେ ପ୍ରଭାବ ବିସ୍ତାର କରନ୍ତି । ବାସ୍ତବରେ ଯିଏ ସମର୍ଥବାନ ପୁରୁଷ ସେ ପ୍ରଭୁ ଓ ଯିଏ ଅସମର୍ଥ ସେ ସେବକ ଭାବରେ ବିବେଚିତ । ଅସମର୍ଥ ବ୍ୟକ୍ତି ସଦା ସମର୍ଥବାନ ଓ ପ୍ରଭାବଶାଳୀ ପୁରୁଷ ସମ୍ମୁଖରେ ମଥାନତ କରେ ।

ଶୁକଦେବ କହିଲେ – "ରାଜା ! ଯେତେବେଳେ ଭଗବାନ ବିଷ୍ଣୁଙ୍କର ଚାରି ପାର୍ଷଦମାନେ ଏହି ଚାରିଜଣ ଯମଦୂତମାନଙ୍କ ନିକଟରେ ପ୍ରଭାବଶାଳୀ ହୋଇ ଉପସ୍ଥିତ ହେଲେ, ସେତେବେଳେ ଯମଦୂତମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇଯିବା ସଙ୍ଗେ ସଙ୍ଗେ ମଥାନତ କରି ରହିଲେ । ଏତେବେଳଯାଏ ସେମାନେ ନିଜକୁ ଅଧିକ ଶକ୍ତିଶାଳୀ ମନେକରି ପାପୀମାନଙ୍କୁ ସମ୍ମୁଖରେ ରଖି ଗର୍ଜନ ତର୍ଜନ ଓ ଧମକ ପ୍ରଦାନ ପୂର୍ବକ ଭୟ ପ୍ରଦର୍ଶନ କରୁଥିଲେ । ଆଜି କିନ୍ତୁ ସେମାନଙ୍କର ଗର୍ଜନ ତର୍ଜନ କିଛି ନାହିଁ । ସେମାନେ ଦୀନ ଭାବ ପ୍ରକାଶ କରି ବିନୟ ସହକାରେ ବିଷ୍ଣୁଦୂତମାନଙ୍କୁ କହିଲେ— "ଆପଣମାନେ ମହନୀୟ ! ଆପଣମାନଙ୍କ ଭଳି କାନ୍ତିବାନ୍ ଆଉ କିଏ ଅଛି । ଧର୍ମ-ଲୋକ ରାଜାଙ୍କର ଆଦେଶ ଟାଳି ଦେବାଭଳି କିଏ ଅଛନ୍ତି ଆଜି ପର୍ଯ୍ୟନ୍ତ ଆମ୍ଭେମାନେ ଜାଣି ନ ଥିଲୁ । ଆଜି ଆମ୍ଭେମାନେ ଏକ ନୂଆ କଥା ଦେଖିବାକୁ ପାଉଛୁ, ଆପଣ-ମାନେ ନିର୍ଭିକ ଚିତ୍ତରେ ଧର୍ମରାଜାଙ୍କର ଆଦେଶ ପ୍ରତି ଅବହେଳା ପ୍ରଦର୍ଶନ କରିଛନ୍ତି । ଆପଣମାନେ କାହାର ଦୂତ ? ଆପଣମାନଙ୍କର ପ୍ରଭୁଙ୍କ ନାମ କ'ଣ ? ଆପଣଙ୍କ ପ୍ରଭୁ କ'ଣ ଧର୍ମରାଜଙ୍କଠାରୁ ଅଧିକ ଶକ୍ତିଶାଳୀ ? ଆପଣମାନେ ବର୍ତ୍ତମାନ କେଉଁଆଡ଼େ ଗମନ କରୁଛନ୍ତି ? ଆପଣମାନଙ୍କ ପ୍ରତି କୌଣସି ଅସୁବିଧା ସୃଷ୍ଟି ନକରି ଆମେମାନେ ଏହି ପାପୀକୁ ନେଇ ଯାଉଥିଲୁ ; ହେଲେ ଆପଣମାନେ କାହିଁକି ବିନା କାରଣରେ ଆମର ପଥରୋଧ କଲେ ? ଆପଣମାନେ ଦେବତା, ଯକ୍ଷ, ଗନ୍ଧର୍ବ, ସିଦ୍ଧପୁରୁଷ ନା ଚାରଣ ? ଆପଣମାନେ ଦେଖିବାକୁ ଖୁବ୍ ସୁନ୍ଦର ଦେଖା ଯାଉଛନ୍ତି । ଆପଣମାନଙ୍କର ନେତ୍ରପନ୍ତି ପଦ୍ମ ପୁଷ୍ପଭଳି ସରସ ଓ ସୁନ୍ଦର ଭାବରେ ଉଦ୍ଭାସିତ ହେଉଅଛି । ଆପଣମାନଙ୍କର ଶରୀର ସୁନ୍ଦର ସୁବର୍ଣ୍ଣ ବର୍ଣ୍ଣରେ ତଥା ଚମତ୍କୃତ ପୀତାମ୍ବରୀ ପରିଧାନରେ ଉଦ୍ଭାସିତ ହେଉଅଛି । ମଥାରେ ସୁବର୍ଣ୍ଣ ମୁକୁଟ, କର୍ଣ୍ଣରେ ସୁବର୍ଣ୍ଣ କୁଣ୍ଡଳ ଓ ଗଳାରେ ପଦ୍ମ ପୁଷ୍ପର ମାଳା ଶୋଭା ପାଉଅଛି । ଆପଣମାନେ ସମସ୍ତେ ଚିର ଯୌବନ ସମ୍ପନ୍ନ, ଆପଣମାନଙ୍କର ଆଜାନୁଲମ୍ବିତ ପ୍ରଶସ୍ତ ଚାରିଗୋଟି ଲେଖାଏ ହସ୍ତ, ଚାରିଗୋଟି ହସ୍ତରେ ସମସ୍ତେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧନୁର୍ବାଣ, ଖଡ୍ଗ, ଢାଲ ଆଦି ଧାରଣ କରି ଅଛନ୍ତି । ଆପଣମାନେ ଏହି ଅନ୍ଧକାର ଗୃହ ମଧ୍ୟରେ ବିରାଜମାନ କରି ନିଜ ତେଜରେ ଏହି ଅନ୍ଧକାର ଗୃହକୁ ଆଲୋକିତ କରୁଛନ୍ତି ।

ଆପଣମାନଙ୍କ ଆଗମନରେ ଦଶଦିଗ ଦୀପ୍ତିମାନ ହୋଇ ଉଠୁଛି । ଆପଣମାନେ ଦୟାକରି ଆମ୍ଭକୁ ଆପଣଙ୍କର ପରିଚୟ ପ୍ରଦାନ କରନ୍ତୁ ଏବଂ କେଉଁ ଅଧିକାରରେ ଧର୍ମରାଜଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିଅଛନ୍ତି ? ଦୟାପୂର୍ବକ ଏସବୁ କଥା ଗୋପନ ନ କରି ଆମ୍ଭମାନଙ୍କ ପାଖରେ ପ୍ରକାଶ କରନ୍ତୁ ।

ଯମଦୂତଙ୍କ ମୁଖରୁ ଏତେଗୁଡ଼ିଏ ପ୍ରଶ୍ନ ଏକାଥରକେ ଶୁଣି ଭଗବାନ ବିଷ୍ଣୁଙ୍କର ପ୍ରିୟ ପାର୍ଷଦମାନେ ଉଚ୍ଚସ୍ୱରରେ ହସି ହସି କହିଲେ – "ଆମେ ତୁମ ପ୍ରଶ୍ନଗୁଡ଼ିକର ଉତ୍ତର ନିଶ୍ଚୟ ଦେବୁ ; ହେଲେ ପ୍ରଥମେ ତୁମେ କୁହ, ଏହି ଲୋକକୁ ନେବାପାଇଁ ତୁମେ କିଏ ?"

ଯମଦୂତମାନେ ଆଶ୍ଚର୍ଯ୍ୟ ହୋଇ କହିଲେ,—"ଶୁଣନ୍ତୁ ! ଆମ୍ଭେମାନେ ଚିରଦିନ ଏହି କାର୍ଯ୍ୟ କରିଥାଉ, ପାପୀମାନଙ୍କୁ ଧର୍ମରାଜଙ୍କ ଆଦେଶରେ ନେଇଯିବାହିଁ ଆମ୍ଭର କର୍ତ୍ତବ୍ୟ ।"

ବିଷ୍ଣୁଭକ୍ତମାନେ କହିଲେ —"ଆଚ୍ଛା ! ତୁମର ସ୍ୱାମୀ ଯାହାକୁ ଇଚ୍ଛା କରିବେ ତୁମେମାନେ ତାକୁ ନେଇଯିବ ? ନା କୌଣସି ନିୟମ ଅନୁସାରେ ତୁମେ ଲୋକଙ୍କୁ ନିଅ ?"

ଯମଦୂତ କହିଲେ —"ଯାହାର ମୃତ୍ୟୁ ସମୟ ଉପସ୍ଥିତ ହୁଏ ତାହାକୁ ନେଇଯିବା ପାଇଁ ଆମ ପ୍ରଭୁ ଆମକୁ ଆଦେଶ ପ୍ରଦାନ କରନ୍ତି । ସେ ପାପୀମାନଙ୍କୁ ଦଣ୍ଡବିଧାନ କରିବା ନିମନ୍ତେ ଆମଦ୍ୱାରା ନିଅନ୍ତି । ଆମର ପ୍ରଭୁ ଧର୍ମରୁ ତିଳେମାତ୍ର ବିଚ୍ୟୁତ ନୁହଁନ୍ତି । ସେଥିପାଇଁ ତାଙ୍କର ନାମ 'ଧର୍ମରାଜ' । ଆମ୍ଭେମାନେ ଏହି ଧର୍ମରାଜଙ୍କର ଆଜ୍ଞା ପାଳନକାରୀ ଦୂତ । ଆମେମାନେ ଏହି ବ୍ୟକ୍ତିକୁ ନେବାପାଇଁ ଆସିଅଛୁ, ଆମ୍ଭେ ଅପରାଧୀ ନୋହୁଁ । ଆପଣମାନେ କୌଣସି କଥା ନବୁଝି ଆମର ଦଫାରଫା କରି ଆମକୁ ଶେଷ କରି ସାରିଲେଣି ।

ଏକଥା ଶୁଣି ଅଧିକାର ସାବ୍ୟସ୍ତ ସ୍ୱରରେ ବିଷ୍ଣୁଦୂତ କହିଲେ, "ତୁମେମାନେ ଯଦି ଧର୍ମରାଜଙ୍କର ଦୂତ ; ତେବେ କୁହ ଧର୍ମ କାହାକୁ କହନ୍ତି ?"

ଯମଦୂତମାନେ ପୁନର୍ବାର ଏକ ନୂତନ ପରୀକ୍ଷାରେ ଉପନୀତ ହେଲେ । ପ୍ରଶ୍ନ ଶୁଣି ନିଜର ଯୋଗ୍ୟତା ଦେଖାଇବାକୁ ଯାଇ ସେମାନେ କହିଲେ —"ବେଦରେ ବର୍ଣ୍ଣିତ ବିହିତ କର୍ମ ଧର୍ମ ନାମରେ ବିବେଚିତ ଏବଂ ଯେଉଁ କର୍ମ କରିବାକୁ ବେଦରେ ନିଷେଧ କରାଯାଇଅଛି ତାହାକୁ ଅଧର୍ମ ବୋଲି କୁହାଯାଏ ।"

ବିଷ୍ଣୁଦୂତ ପଚାରିଲେ—"ତାହାହେଲେ ବେଦ କ'ଣ ? କୁହ ।" ଯମଦୂତ କହିଲେ— "ଭଗବାନ ଶ୍ରୀମନ୍ନାରାୟଣଙ୍କ ମୁଖରୁ ଯାହା ସ୍ୱତଃ ନିଃସୃତ ଏହାହିଁ ବେଦ । ବେଦ ଭଗବାନଙ୍କର ସ୍ୱରୂପ, ବେଦ ଭଗବାନଙ୍କଠାରୁ ଭିନ୍ନ ନୁହେଁ । ସେ ସ୍ୱୟଂ

ସାକ୍ଷାତ 'ଶ୍ରୀମନ୍ନାରାୟଣ' ସେହିଁ ବେଦ । ଏହି ସମସ୍ତ ପ୍ରାଣୀସମାଜ ଭଗବାନଙ୍କଠାରେ ଅବସ୍ଥିତ ଓ ସମସ୍ତଙ୍କ ହୃଦୟରେ ଶ୍ରୀହରି ଜୀବରୂପରେ ବିଦ୍ୟମାନ ।"

ବିଷ୍ଣୁ ଦୂତ କହିଲେ—"ତେବେ ପ୍ରାଣୀ ସମାଜ ବିଭିନ୍ନ ଆକାର ପ୍ରକାରରେ କାହିଁକି ରହିଛନ୍ତି ?"

ଯମଦୂତ କହିଲେ—"ଦେଖନ୍ତୁ ମହାନୁଭବ ! ଭଗବାନଙ୍କ ସ୍ୱରୂପରେ ସ୍ଥିତ ଏହି ସତ୍ତ୍ୱ, ରଜ, ତମଗୁଣ ସମ୍ପନ୍ନ ପ୍ରାଣୀମାନଙ୍କୁ ପ୍ରଭୁ ନିଜର ବେଦରୂପକ ଜ୍ଞାନଦ୍ୱାରା ଗୁଣ, କର୍ମ, ନାମ, ରୂପ ଅନୁସାରେ, ଯାହାର ଯେଉଁ କର୍ମ ସେହି ପ୍ରକାରରେ ଯଥାଯୋଗ୍ୟ ବିଭାଜନ କରି ଅଛନ୍ତି । ଏଥିରେ ସ୍ୱୟଂ ଭଗବାନ କୌଣସି ପକ୍ଷପାତ ନୀତି ଗ୍ରହଣ କରିନାହାଁନ୍ତି ବା ଅନ୍ୟାୟ କରି ନାହାଁନ୍ତି ।"

ବିଷ୍ଣୁଦୂତ କହିଲେ—"ଆଚ୍ଛା ! ଏଇ ଜୀବ ଶୁଭାଶୁଭ କର୍ମ କରିଅଛି ଏଇ ଜୀବ ଅଶୁଭ କର୍ମ କରିଛି ତଥା ଜୀବମାନଙ୍କ ମଧ୍ୟରୁ କିଏ ଦଣ୍ଡ ପାଇବା ଯୋଗ୍ୟ, କିଏ ପୁରସ୍କାର ପାଇବାପାଇଁ ଯୋଗ୍ୟ, କାହାକୁ ସ୍ୱର୍ଗକୁ ପଠାଯିବ ଓ କାହାକୁ ନରକକୁ ପଠାଯିବ, ଏହା କିପରି ବିବେଚନା କରାଯାଏ ?"

ଯମଦୂତମାନେ ଉତ୍ତର ଦେଲେ—"ମହାରାଜ ! ଏସବୁ ବିବେଚନା କରିବା ନିମନ୍ତେ ବହୁ ସାକ୍ଷୀ ରହିଅଛନ୍ତି । ଜୀବମାନଙ୍କର ଶୁଭାଶୁଭ ନିର୍ଣ୍ଣୟ କରିବା ନିମନ୍ତେ ଭଗବାନ ବହୁ ଗୁପ୍ତଚର ନିଯୁକ୍ତ କରି ଅଛନ୍ତି ଏପରିକି, ଏହି ଗୁପ୍ତଚରମାନଙ୍କ ଅଜ୍ଞାତରେ ଜୀବ କୌଣସି କାର୍ଯ୍ୟ କରି ପାରେନାହିଁ ।"

ବିଷ୍ଣୁଦୂତ କହିଲେ—"ତେବେ ଏହି ଗୁପ୍ତଚରମାନେ କିଏ ? ସେମାନଙ୍କର ନାମ ପ୍ରକାଶ କର ।"

ଯମଦୂତମାନେ କହିଲେ—"ସର୍ବପ୍ରଥମେ ସମସ୍ତ ଜୀବମାନଙ୍କର ଶୁଭାଶୁଭ କର୍ମର ସାକ୍ଷୀ ହେଉଛନ୍ତି ଭଗବାନ ସୂର୍ଯ୍ୟନାରାୟଣ । କୌଣସି ପ୍ରାଣୀ ଶୁଭ କର୍ମ ଅନୁଷ୍ଠାନ କଲେ ସେ ସୂର୍ଯ୍ୟଙ୍କୁ ଅର୍ଘ୍ୟ ପ୍ରଦାନ ପୂର୍ବକ ପ୍ରାର୍ଥନା କରି କହେ—ହେ ବିବସ୍ୱାନ ! ହେ ବ୍ରହ୍ମନ୍ ! ହେ ପ୍ରକାଶବାନ୍ ! ହେ ବିଷ୍ଣୁତେଜ ସମ୍ପନ୍ନ ଭଗବାନ୍ ! ହେ ଜଗତ ସବିତା ! ହେ ପରମ ପବିତ୍ର ! ହେ ପ୍ରାଣୀମାନଙ୍କର ସମସ୍ତ କର୍ମର ସାକ୍ଷୀ ଦେବତା ! ଆପଣଙ୍କୁ ମୋର ନମସ୍କାର, ଆପଣ ମୋର ଶୁଭକର୍ମର ସାକ୍ଷୀ ଅଟନ୍ତି । ଯେତେବେଳେ ପ୍ରାଣୀ ମୃତ୍ୟୁଲାଭ କରେ ସେ ସମୟରେ ସୂର୍ଯ୍ୟଦେବ ସାକ୍ଷୀ ପ୍ରଦାନ କରି କହନ୍ତି, "ଏଇ ବ୍ୟକ୍ତି ଅମୁକ କର୍ମରେ ଲିପ୍ତ ଥିଲା ।" ଦେବତା ଅଗ୍ନି ମଧ୍ୟ ପ୍ରାଣୀ-ମାନଙ୍କର ସମସ୍ତ କର୍ମର ସାକ୍ଷୀ ସ୍ୱରୂପ । ଅଗ୍ନି, ଅନ୍ତରରେ ଜଠରାଗ୍ନି ସ୍ୱରୂପ ଓ ବାହ୍ୟରେ ପ୍ରତ୍ୟକ୍ଷ ଅଗ୍ନି ରୂପରେ ଅବସ୍ଥିତ । ଅଗ୍ନିଙ୍କ ଅଜ୍ଞାତରେ ପ୍ରାଣୀ କୌଣସି

କର୍ମ କରିପାରେ ନାହିଁ । ଆକାଶ ମଧ୍ୟ ଭଗବାନଙ୍କର ଗୁପ୍ତଚର ଭାବରେ କାର୍ଯ୍ୟ କରନ୍ତି । କୌଣସି ପ୍ରାଣୀ ପାପ ପୁଣ୍ୟ କଲେ ଆକାଶ ମଣ୍ଡଳ ମଧ୍ୟରେ କରେ, ଆକାଶ ବାହାରେ ସେ କୌଣସି କର୍ମ କରିବାକୁ ସମର୍ଥ ନୁହେଁ । ବାୟୁ ମଧ୍ୟ ପ୍ରାଣୀମାନଙ୍କର କର୍ମର ସ୍ମରଣ ରଖନ୍ତି । ବାୟୁଙ୍କ ବ୍ୟତୀତ କୌଣସି ପ୍ରାଣୀ ଜୀବନଧାରଣ କରିବାକୁ ସକ୍ଷମ ନୁହେଁ । ସମସ୍ତ ଇନ୍ଦ୍ରିୟ ଅଭିମାନୀ ଦେବତାଗଣ ମଧ୍ୟ ପ୍ରାଣୀମାନଙ୍କ କର୍ମର ସାକ୍ଷୀ ସ୍ୱରୂପ ଅଟନ୍ତି । ଚନ୍ଦ୍ର, ସନ୍ଧ୍ୟା, ରାତ୍ରି, ଦିବସ, ଦଶଦିଗ, ପୃଥିବୀ, ସମୟ (କାଳ) ତଥା ଧର୍ମ ସମସ୍ତେ ଜୀବର ଶୁଭାଶୁଭ କର୍ମର ସାକ୍ଷୀ ଅଟନ୍ତି । ଧର୍ମରାଜ ଏ ସମସ୍ତଙ୍କୁ ପଚାରନ୍ତି । ଯେଉଁ ପ୍ରାଣୀ ଦଣ୍ଡ ପାଇବା ପାଇଁ ବିବେଚିତ ହୁଏ, ତାକୁ ଆମ ଦ୍ୱାରା ଆଣି ସେ ଦଣ୍ଡ ପ୍ରଦାନ କରନ୍ତି, ଯେଉଁ ପ୍ରାଣୀକୁ ସ୍ୱର୍ଗକୁ ପଠାଇବା ନିମନ୍ତେ ଯୋଗ୍ୟଜ୍ଞାନ କରାଯାଏ ତାକୁ ଶାନ୍ତି ଭାବରେ ସତ୍କାର କରାଯାଇ ସ୍ୱର୍ଗକୁ ପଠାଇ ଦିଆଯାଏ । ପ୍ରାଣୀମାନେ ନିଜ କର୍ମ ଅନୁସାରେ ସ୍ୱର୍ଗ ଓ ନରକର ସୁଖ ଭୋଗ କରନ୍ତି ।''

ବିଷ୍ଣୁଭକ୍ତ କହିଲେ—''ତୁମର ପ୍ରଭୁ କ'ଣ ସମସ୍ତଙ୍କୁ ଦଣ୍ଡ ପ୍ରଦାନ କରନ୍ତି, ଯଦି କେହି ପ୍ରାଣୀ କୌଣସି କର୍ମରେ ଲିପ୍ତ ନ ଥାଏ ?''

ଯମଦୂତ କହିଲେ—''ମହାରାଜ ! ଏହା କିପରି ସମ୍ଭବ ? ଯେଉଁମାନେ ଶରୀର ଧାରଣ କରିଅଛନ୍ତି, ସେମାନେ ପ୍ରାଣୀ ଭାବରେ ବିବେଚିତ । ପ୍ରାଣୀ ମାତ୍ରକେ କିଛିନା କିଛି କର୍ମ କରିଥାଆନ୍ତି । କାରଣ ସେମାନେ ସଶରୀରୀ, ଶରୀର ତିନଗୁଣରେ ଆବଦ୍ଧ । ଯେଉଁ ପ୍ରାଣୀ ଏହି ଲୋକରେ ଯେଉଁ ଭାବରେ ଶୁଭ-ଅଶୁଭ, ଧର୍ମ-ଅଧର୍ମ, ପାପ-ପୁଣ୍ୟ କର୍ମ କରିଥାଏ, ସେହି ପ୍ରକାରରେ ସୁଖ ଦୁଃଖ ଭୋଗିଥାଏ ।

ବିଷ୍ଣୁଦୂତ କହିଲେ—''ତାହାହେଲେ ଭାଇ, କିପରି ଜାଣିବା ଯେ ଏହି ଜନ୍ମରେ ପାପ କରିଛି ତାକୁ ଆଗ ଜନ୍ମରେ ପାପ ଭୋଗିବାକୁ ହେବ ? କାରଣ ଭୂତ ଭବିଷ୍ୟ କର୍ମ ତ ଅଦୃଶ୍ୟ ।''

ଏହା ଶୁଣି ଯମଦୂତ କହିଲେ— 'ହଁ ମହାରାଜ ! ଭୂତ ଓ ଭବିଷ୍ୟକର୍ମ ଅଦୃଶ୍ୟ ଏକଥା ଯୁକ୍ତିଯୁକ୍ତ, କିନ୍ତୁ ବର୍ତ୍ତମାନ ଯାହା ପରିଲକ୍ଷିତ ସେଥିରୁ ଏହାର ସତ୍ୟାସତ୍ୟ ସହଜରେ ଜାଣିହୁଏ । ମୁଁ ବର୍ତ୍ତମାନ ତିନି ପ୍ରକାର ଲୋକମାନଙ୍କ ସମ୍ପର୍କରେ କହୁଅଛି, ସେମାନେ ହେଲେ, ଉତ୍ତମ, ମଧ୍ୟମ, ଅଧମ; ସୁଖୀ, ଦୁଃଖୀ, ସାଧାରଣ; ପୁଣ୍ୟାତ୍ମା ପାପାତ୍ମା, ମଧ୍ୟମ ଓ ସାତ୍ତ୍ୱିକ, ରାଜସିକ, ତାମସିକ । ବର୍ତ୍ତମାନ ଯେଉଁ ପ୍ରାଣୀ ସୁଖୀ ଓ ପୁଣ୍ୟ କର୍ମରେ ଲିପ୍ତ ଅଛି, ଅନୁମାନ କରାଯାଏ ଯେ, ସେହି ପ୍ରାଣୀ ପୂର୍ବ ଜନ୍ମରେ ଶୁଭ କର୍ମ ସମ୍ପାଦନ କରିଥିବା ହେତୁ ତାହାର ଫଳ ସ୍ୱରୂପ ଏ ଜନ୍ମରେ ସେ ଏହି ଶୁଭ ଓ ପୁଣ୍ୟାଦି କର୍ମରେ ଲିପ୍ତ ହୋଇଅଛି । ଏ ଜନ୍ମରେ ସେ ଶୁଭ କର୍ମ କଲେ ଆଗାମୀ ଜନ୍ମରେ ସେ ଶୁଭଲୋକ ପ୍ରାପ୍ତି ହେବ । ସେହିପରି ଅଧର୍ମ କର୍ମରେ ଏହିପରି ନ୍ୟାୟ ପ୍ରଯୁଜ୍ୟ । ତିନି ଜନ୍ମର ପ୍ରତ୍ୟକ୍ଷ ଫଳ ବର୍ତ୍ତମାନ ଜନ୍ମରୁ ଜାଣିହୁଏ ।''

ବିଷ୍ଣୁଦୂତ କହିଲେ –"କିନ୍ତୁ ଅନୁମାନ ଯେ ସର୍ବଦା ସତ୍ୟ ଏହା ଭାବିବା ଠିକ୍ ନୁହେଁ । ଅନୁମାନ କେବେକେବେ ମଧ୍ୟ ମିଥ୍ୟାରେ ପରିଣତ ହୋଇଯାଏ । ଯମରାଜ ଅନୁମାନ ଦ୍ୱାରା ଦଣ୍ଡ ପ୍ରଦାନ କରନ୍ତି ନା ଅନ୍ୟ କେଉଁ ଉପାୟରେ ପାପପୁଣ୍ୟ ନିର୍ଦ୍ଧାରଣ କରିବା ନିମନ୍ତେ ତାଙ୍କ ପାଖରେ ଉପାଦାନ ରହିଛି ?"

ଏ କଥା ଶୁଣି ଯମଦୂତ କହିଲେ –"ନା ମହାରାଜ ! ଏ କଥା-ଠିକ୍ ନୁହେଁ । ଭଗବାନ ଯମ ଅନୁମାନ କରି ପ୍ରାଣୀଙ୍କୁ ଦଣ୍ଡ ପ୍ରଦାନ କରନ୍ତି ନାହିଁ । ସେ ସର୍ବଦା ପ୍ରାଣୀମାନଙ୍କର ହୃଦୟରେ ବିରାଜମାନ କରି ସମସ୍ତଙ୍କର କର୍ମ ପ୍ରତ୍ୟକ୍ଷ ଭାବରେ ଦେଖନ୍ତି । ସେହି ଅଜନ୍ମା ଭଗବାନ ଧର୍ମରାଜ ମନ ମଧ୍ୟରେ ସମସ୍ତ ପ୍ରାଣୀଙ୍କର ସମସ୍ତ କଥା ବିଚାର କରିଥାଆନ୍ତି । ଯମରାଜଙ୍କୁ କୌଣସି କଥା ଅଜ୍ଞାତ ନୁହେଁ, ସେ ପ୍ରାଣୀର ବର୍ତ୍ତମାନ, ଭୂତ, ଭବିଷ୍ୟ ସମସ୍ତ କର୍ମ ଜାଣିପାରନ୍ତି, କିନ୍ତୁ ପ୍ରାଣୀ ବର୍ତ୍ତମାନ ଜନ୍ମ ବ୍ୟତୀତ ଭୂତ ଭବିଷ୍ୟତ ଜନ୍ମ ସମ୍ପର୍କରେ ଜ୍ଞାନ ନ ଥାଏ ।

ବିଷ୍ଣୁଦୂତ ପଚାରିଲେ –"ପ୍ରାଣୀର ଭୂତ ଭବିଷ୍ୟତ ଜନ୍ମ ସମ୍ପର୍କରେ କାହିଁକି ଜ୍ଞାନ ନ ଥାଏ । ସେ ନିଜେ ଭୋଗ କରିଥିବା ଜନ୍ମ ଓ କର୍ମକୁ କିପରି ଭୁଲିଯାଏ ?"

ଏହାପରେ ଯମଦୂତ କହିଲେ –"ହେ ନିଷ୍ପାପ ! ଏହି କଥାକୁ ଆପଣ ଏପରି ବୁଝିପାରନ୍ତି । ଯେପରି କୌଣସି ବ୍ୟକ୍ତି ଶୟନ କରି ସ୍ୱପ୍ନରେ ବହୁତ ଶୁଭ ଅଶୁଭ କର୍ମ କରିଥାଏ । ଏହି ସ୍ୱପ୍ନ ସମୟରେ ଯେଉଁ ଶକ୍ତି ଶରୀରରେ କାର୍ଯ୍ୟ କରୁଥାଏ, ସେହି ସ୍ୱପ୍ନ ଶରୀରକୁ ଜୀବ ସତ୍ୟବୋଲି ଭାବିଥାଏ ଓ ନିଦ ଭାଙ୍ଗିବା ପରେ ଏହି ସ୍ୱପ୍ନ ଶରୀର ଓ ସ୍ୱପ୍ନରେ ଦର୍ଶନଲାଭ କରିଥିବା ପଦାର୍ଥ ମିଥ୍ୟାରେ ପରିଣତ ହୋଇଯାଏ । ସେହିପରି ଜନ୍ମ ପରେ ଜୀବର ପୂର୍ବଜନ୍ମର ସ୍ମୃତି ନଷ୍ଟ ହୋଇ ବର୍ତ୍ତମାନ ଶରୀର ବ୍ୟତୀତ ଭୂତ ଓ ଭବିଷ୍ୟ ଜନ୍ମ ସମ୍ପର୍କରେ କୌଣସି କଥା ସ୍ମରଣ ରହେନାହିଁ ।

ବିଷ୍ଣୁଦୂତ ପଚାରିଲେ—"ଏଇ ଜୀବ ଗୋଟିଏ ଶରୀରରୁ ଅନ୍ୟ ଗୋଟିଏ ଶରୀରକୁ କିପରି ପ୍ରବେଶ କରେ ?"

ଯମଦୂତ କହିଲେ—"ଦେଖନ୍ତୁ ଭଗବାନ ! ପାଞ୍ଚଗୋଟି କର୍ମେନ୍ଦ୍ରିୟ, ପାଞ୍ଚ-ଗୋଟି ଜ୍ଞାନେନ୍ଦ୍ରିୟ ଏବଂ ପାଞ୍ଚଗୋଟି ଏମାନଙ୍କର ବିଷୟ, ଏହିପରି ପନ୍ଦର, ମନ ଷୋହଳ ଓ ସ୍ୱୟଂ ଜୀବ ମିଶି ସତର । ଏମାନେ ସମସ୍ତେ ମିଶି ସମସ୍ତ ବିଷୟକୁ ଉପଭୋଗ କରନ୍ତି । ତିନିଗୁଣ ସହିତ ଏହି ଷୋହଳ କଳା ପରିପୂର୍ଣ୍ଣ ଲିଙ୍ଗ ଶରୀର ଗୋଟିଏ ଦେହରୁ ତାହାର ଅନ୍ୟ ଦେହରେ ପ୍ରବେଶ କରେ । ଜୀବାତ୍ମା ଅଭିମାନ ଯୋଗୁଁ କାମକ୍ରୋଧର ବଶୀଭୂତ ହୁଏ । ଏହି ଅଜ୍ଞାନ ଜୀବ ଅଭିଳାଷ ନ ଥାଇ ମଧ୍ୟ ଲିଙ୍ଗ ଶରୀର ଦ୍ୱାରା କର୍ମରେ ପ୍ରାରବ୍ଧ କର୍ମ ଅନୁଯାୟୀ ପ୍ରବୃତ୍ତ ହୁଏ ।

ବିଷ୍ଣୁଦୂତ କହିଲେ "ଠିକ୍ କଥା । ପ୍ରାଣୀ ନିଜେ କର୍ମକରେ ଓ ନିଜ କର୍ମରେ ବାନ୍ଧିହୁଏ ।"

ଯମଦୂତ ହସି କହିଲେ—"ହଁ ମହାରାଜ ! ଏଇତ ଜୀବର ଅଜ୍ଞାନତା । ଯେପରି ରେଶମ ପୋକ ନିଜ ମୁହଁରୁ ସୂତା ବାହାର କରି ସେଥିରେ ନିଜର ଶରୀରପଟେ ଗୁଡ଼ାଇ କରି ରଖି ନିଜେ ସେହି ସୂତାରେ ବାନ୍ଧି ହୋଇଯାଏ । ତାକୁ ବାହାରି ଆସିବା ପାଇଁ ଆଉ ବାଟ ନ ଥାଏ । ରେଶମ ସୂତା ତିଆରି କରିବା ଲୋକ ତାକୁ ଟେକିନେଇ ଗରମ ପାଣିରେ ପକାଏ । ପୋକ ମରିଗଲେ ସେ ରେଶମକୁ ବାହାର କରିନିଏ । ସେହିପରି ପ୍ରାଣୀ ନିଜ ଅଶୁଭ କର୍ମ ଦ୍ୱାରା ପୁରା ବନ୍ଧ ହୋଇ ବାରମ୍ବାର ଜନ୍ମ ଓ ମୃତ୍ୟୁ ଲଭିଥାଏ । ସଂସାର ଚକ୍ରକୁ ସେ ନିଜେ ନିର୍ମାଣ କରେ । ମହାରାଜ ! ଏହି ଜୀବ ପ୍ରାରବ୍ଧ କର୍ମ ଅନୁସାରେ ପ୍ରକୃତିଦ୍ୱାରା ବଶୀଭୂତ ହୋଇ କର୍ମକରେ ।"

ବିଷ୍ଣୁଦୂତ କହିଲେ—"ତାହାହେଲେ ଏଇ ଜୀବର କେଉଁ ଦୋଷ ପାଇଁ ତୁମେ-ମାନେ ତାକୁ ନେଇଯାଉଅଛ ?"

ଯମଦୂତ ତରତର ହୋଇ କହିଲେ—"ମହାରାଜ ! ଏ ଲୋକ ଖୁବ୍ ବଡ଼ ପାପ କରିଅଛି । ପ୍ରଥମେ ଏ ଭଲଲୋକ ଥିଲା । କୁଳୀନ ବ୍ରାହ୍ମଣ ଥିଲା । ଗୋଟିଏ ବେଶ୍ୟାର ଫାନ୍ଦରେ ପଡ଼ି ନିଜର ଶୀଲ ସଦାଚାର ସବୁ ନଷ୍ଟ କରି ପକାଇଛି । ହତ୍ୟା, ଧନ ଲୁଣ୍ଠନଠାରୁ ଆରମ୍ଭ କରି ବହୁ ପ୍ରକାର ପାପ ଏ ସବୁ କରିଛି । ଫଳରେ ଆମେ ବର୍ତ୍ତମାନ ଆମର ପ୍ରଭୁଙ୍କ ଆଦେଶରେ ଏହାଙ୍କୁ ନରକକୁ ନେଇଯିବୁ, ଯେଉଁଠାରେ ତାର ପାପ କର୍ମ ପାଇଁ ତାକୁ ବହୁ ପ୍ରକାର ଦୁଃଖ, ଯନ୍ତ୍ରଣା ଓ ଦଣ୍ଡ ପ୍ରଦାନ କରାଯିବ ଓ ଏହି ଦଣ୍ଡ ପ୍ରଦାନ ଫଳରେ ସେ ପାପରୁ ମୁକ୍ତିଲାଭ କରିବ ।

ଆପଣ ଏହାକୁ ଜାଣିନାହାଁନ୍ତି । ସେଇଥି ପାଇଁ ଆପଣ ଏହାପ୍ରତି ଏତେ ଦୟା ପ୍ରଦର୍ଶନ କରୁଛନ୍ତି । ଏହାର ଜୀବନ ପାପପୂର୍ଣ୍ଣ ଅଟେ । ଏ ଲୋକ ବହୁତ ଦିନ ପର୍ଯ୍ୟନ୍ତ ବେଶ୍ୟା ସହି ପାନ, ଭୋଜନ ସଙ୍ଗମ ଆଦି କାର୍ଯ୍ୟରେ ଲିପ୍ତ ଥିଲା । ଏତେ ପାପ କରି ମଧ୍ୟ ଶାସ୍ତ୍ର ବିଧି ଅନୁସାରେ ତାର ପାପର କୌଣସି ପ୍ରାୟଶ୍ଚିତ୍ତ କରିନାହିଁ । ପାପକରି ତାର ପ୍ରାୟଶ୍ଚିତ୍ତ କରିନଥିବା'ହେତୁ ଆମେ ତାକୁ ଯମ ସଦନକୁ ନେଇଯିବୁ, ଯେଉଁଠାରେ କି ଦଣ୍ଡପାଣି ଯମରାଜ ସ୍ୱୟଂ ବାସକରନ୍ତି । ସେଠାରେ ଦଣ୍ଡ ଭୋଗିବା ପରେ ଯଦି ତାର ପାପର ପ୍ରାୟଶ୍ଚିତ୍ତ ହୋଇଯିବ, ତେବେ ତାକୁ ଆମେ ନରକରୁ ବିଦାୟ ଦେବୁ ।"

ଶ୍ରୀ ଶୁକଦେବ କହିଲେ -"ରାଜନ୍ ! ଯମଦୂତଙ୍କଠାରୁ ନିଜ ପ୍ରଶ୍ନର ଉତ୍ତର ଏହିଭଳି ଭାବରେ ପାଇ ଭଗବାନଙ୍କରପ୍ରିୟ ପାର୍ଷଦମାନେ ଅତ୍ୟନ୍ତ ସନ୍ତୋଷ ଭାବ ପ୍ରକାଶ କରି ସେମାନଙ୍କୁ ବୁଝାଇ କହିଲେ—"ଦେଖ ଭାଇ, ତୁମେ ଠିକ୍ କଥା

କହୁଛ; ମାତ୍ର ବଡ଼ ଭୁଲଟିଏ କରୁଅଛ । ଆମେମାନେ ମାନୁଛୁ ଯେ ଏ ପାପ କରିଛି କିନ୍ତୁ ପାପର ପ୍ରାୟଶ୍ଚିତ୍ତ ହୋଇଗଲେତ ଆଉ ପାପର ଫଳ ଭୋଗ କରିବାକୁ ପଡ଼େ ନାହିଁ ! ଏ ଜୀବାତ୍ମା ପାପ କରି ତାର ପ୍ରାୟଶ୍ଚିତ୍ତ ମଧ୍ୟ କରିସାରିଛି ।" ଯମଦୂତ କହିଲେ -"ନା' ମହାରାଜ ! ଏ ଲୋକ କୌଣସି ପ୍ରକାର ପ୍ରାୟଶ୍ଚିତ୍ତ କରିନାହିଁ । ଚାନ୍ଦ୍ରାୟଣ, ପରାଗ ବ୍ରତ ବା ଅନ୍ୟ କୌଣସି ବ୍ରତ ଉପବାସ ମଧ୍ୟ କରିନାହିଁ ! ଆପଣ କିପରି କହୁଛନ୍ତି ଯେ, ଏ ପାପର ପ୍ରାୟଶ୍ଚିତ୍ତ କରିଛି ?"

ବିଷ୍ଣୁଦୂତ ଗମ୍ଭୀର ଭାବରେ କହିଲେ - "ଏଇଠି ହେଉଛି ତୁମମାନଙ୍କର ଭୁଲ । ତୁମେ ପ୍ରାୟଶ୍ଚିତ୍ତ ତତ୍ତ୍ୱ ବୁଝିପାରି ନାହଁ । ଏହା ତୁମମାନଙ୍କର ବୁଝିବା ଦରକାର ।"

ଯମଦୂତ କହିଲେ -"ହଁ ମହାରାଜ ! ଏହା ଆମକୁ ବୁଝାଇ କରି କହନ୍ତୁ ।"

ଶୁକ କହିଲେ -"ରାଜନ ! ଯମଦୂତଙ୍କର ଏହି ଜିଜ୍ଞାସା ଫଳରେ ବିଷ୍ଣୁଦୂତ ସେମାନଙ୍କୁ ଭଗବାନଙ୍କ ନାମର ମହତ୍ତ୍ୱ ବୁଝାଇବା ନିମନ୍ତେ ଉଦ୍ୟତ ହେଲେ ।"

—ଛପ୍ପୟ—

ବିଷ୍ଣୁ ପାର୍ଷଦ କହେଂ—ଧର୍ମ କୋ ମର୍ମ ବତାଓ ।
ଦଣ୍ଡ ଜୋଗ ଜହି ନାହିଁ ଜାଇ ତେଂ ବ୍ୟର୍ଥ ସତାଓ ।।

ବୋଲେ ଜମକେ ଦୂତ—ଧର୍ମ ଜୋ ବେଦ ବଖାନ୍ୟେ ।
ତେହି ଅଧର୍ମ ବିପରୀତ ବେଦ ହରି ରୂପହିଁ ମାନ୍ୟେ ।।

ହିଂସକ ପାପୀ ସୁରାପୀ, କୁଁ ଯମପୁର ଲୈ ଜାୟଁଗେ ।
ନରକ ଅଗ୍ନି ମେ ଡାରିକେଂ, ଜାକୁଁ ବିମଲ ବନାୟଁଗେ ।।



# ଭଗବାନଙ୍କ ନାମ ଦ୍ୱାରା ସକଳ ପାପର ପ୍ରାୟଶ୍ଚିତ

ନ ନିଷ୍କୃତୈ ରୁଦିତୈ ର୍ବ୍ରହ୍ମବାଦିଭି—
ସ୍ତଥା ବିଶୁଦ୍ଧ୍ୟତ୍ୟଘବାନ ବ୍ରତାଦିଭିଃ ।
ଯଥା ହରେର୍ନାମ ପଦୈ ରୁଦାହୃତୈ—
ସ୍ତଦୁତ୍ତମ ଶଲ୍ଲୋକ ଗୁଣୋପଲମ୍ଭକମ୍ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଦ ॥ ୨ୟ ଅଧ୍ୟାୟ ॥ ୧୧ ଶ୍ଳୋକ ]

ଛପ୍‌ପୟ

ହରିପାର୍ଷଦ ପୁନି କହେଂ—ଦୂତ ! ତୁମ କଛୁନହିଁ ଜନୋଂ ॥
ବ୍ୟର୍ଥ ବଜାଓ ଗାଲ ବିଜ୍ଞ ଅପନେକୁଁ ମାନୋଂ ॥
"ନାରାୟଣ' ଯହ କହେଂ ଅନ୍ତମହଁ ମୁଖତେଂ ଜାନେଂ ।
ତୌ ହମ ତାକୁଁ ଫେରି ପରମ ପାବନ ନର ମାନେଂ ॥
ଚୋର, ଜାର, ହିଂସକ, କୁଟିଲ, ପାପୀ, ଗୁରୁହଂ ହୋୟ ଅତି ।
ନାମ ଉଚ୍ଚରନ ତେଂ ତୁରତ ହୋହି ସିଦ୍ଧ ପାୱେଂ ସୁଗତି ॥

ବିଷ୍ଣୁଦୂତ ଯମଦୂତଙ୍କୁ କହିଲେ - ଦୂତଗଣ ! ବ୍ରହ୍ମବାଦୀ ଋଷିଗଣ ପାପ ପ୍ରାୟଶ୍ଚିତ ନିମନ୍ତେ ସ୍ମୃତି ଶାସ୍ତ୍ରରେ ଯେଉଁସବୁ କଥା ଉଲ୍ଲେଖ କରିଅଛନ୍ତି ସେଥିରେ ପାପୀ ପୁରୁଷ ସମ୍ପୂର୍ଣ୍ଣ ଉଦ୍ଧାର ଲାଭ କରେନାହିଁ, କିନ୍ତୁ ଭଗବାନଙ୍କ ନାମ, ରୂପ ଉଚ୍ଚାରଣ ଦ୍ୱାରା ସମ୍ପୂର୍ଣ୍ଣ ରୂପେ ଉଦ୍ଧାର ପାଏ । କାରଣ ଉତ୍ତମ ଶ୍ଳୋକହିଁ ଭଗବାନଙ୍କ ନାମ ଓ ଗୁଣର ଜ୍ଞାନ ପ୍ରଦାନକାରୀ ।

ହୀରା ଗୋଟିଏ ପଥର, ସାଧାରଣ ପଥର ମଧ୍ୟ ପଥର । ମୂର୍ଖମାନଙ୍କ ଦୃଷ୍ଟିରେ ଏଇ ଦୁଇଟିରେ ବିଶେଷ କିଛି ତାରତମ୍ୟ ନାହିଁ । ସେମାନଙ୍କ ମତରେ ଗୋଟିଏ ଉଜ୍ଜ୍ୱଳ

ଓ ଅନ୍ୟଟି ସାମାନ୍ୟ ଉଜ୍ଜ୍ୱଳ, ଉଭୟେ ଏକ ପଥର । ଏହାର ମହତ୍ତ୍ୱ ବଣିଆ ହିଁ ଜାଣିବାକୁ ସମର୍ଥ । ଏହିପରି ସାଧାରଣ ଲୋକମାନେ ବୁଝନ୍ତି । ସେହିପରି ଭଗବାନ ମଧ୍ୟ ନାମ ଧାରଣକାରୀ ଅଟନ୍ତି । ଅସୁରମାନଙ୍କ ମଧ୍ୟରେ କୌଣସି ଭେଦାଭେଦ ନାହିଁ, ସମସ୍ତେ ଏକ ଜାତୀୟ । ଯେଉଁମାନେ ଭଗବାନଙ୍କର ଅତ୍ୟନ୍ତ ପ୍ରିୟଭକ୍ତ, ସର୍ବଦା ନିକଟବର୍ତ୍ତୀ ଓ ତାଙ୍କର ପାର୍ଷଦ ଭାବରେ ବିବେଚିତ, ସେମାନେହିଁ କେବଳ ନାମର ମହତ୍ତ୍ୱକୁ ଉପଲବ୍ଧି କରିପାରନ୍ତି । ସେମାନେ ବୁଝନ୍ତି ନାମ କ'ଣ ଓ ଭଗବାନଙ୍କ ନାମରେ କେତେ ଶକ୍ତି ନିହିତଅଛି ।"

ଶ୍ରୀଶୁକଦେବ କହିଲେ--"ରାଜନ ! ବିଷ୍ଣୁଦୂତମାନଙ୍କ ମୁଖରୁ ଧର୍ମକଥା ଶ୍ରବଣ କରିବା ପରେ ମଧ୍ୟ ଯମଦୂତମାନେ ଅଜାମିଳକୁ ନରକକୁ ନେଇଯିବା ଅଭିଳାଷକୁ ଲକ୍ଷ୍ୟକରି ବିଷ୍ଣୁଦୂତ ହସିଉଠିଲେ ଓ ହସି ହସି କହିଲେ-- ଆରେ ! ତୁମେମାନେ ସବୁଠାରୁ ଅଜ୍ଞ, ତୁମେମାନେ ତ ନିଜକୁ ଧର୍ମରାଜାଙ୍କର ସେବକ ବୋଲି କହୁଛ, ହେଲେ, ଆମକୁ ତୁମେମାନେ କୌଣସି ଅଧର୍ମ ଲୋକର ସେବକ ବୋଲି କହୁଛ । ଯଦି ତୁମର ସ୍ୱାମୀ ଧର୍ମାତ୍ମା ହୋଇଥାଆନ୍ତେ ତେବେ ଏଭଳି ଆଦେଶ କେବେ ପ୍ରଦାନ କରିନଥାନ୍ତେ । ବଡ଼ ଦୁଃଖର ବିଷୟ ଧର୍ମାତ୍ମା ଭାବରେ ପରିଚିତ ଓ ଯାହାଙ୍କର ନାମ 'ଧର୍ମରାଜ' ଭାବରେ ପ୍ରସିଦ୍ଧିଲାଭ କରିଛି ତାଙ୍କ ସଭାରେ ଦଣ୍ଡ ପାଇବାପାଇଁ ଯୋଗ୍ୟ ବିବେଚିତ ହୋଇ ନ ଥିବା ତଥା ନିଷ୍ପାପୀମାନେ ଅକାରଣରେ ଦଣ୍ଡ ଭୋଗିଥାନ୍ତି, ଏଣୁ ପ୍ରଜାମାନେ କାହାଠାରେ ଶରଣ ନେବେ ? ପ୍ରଜାମାନେ ଏହାଙ୍କୁ ସଦା ନିଜର ପିତା ମାତା, ସ୍ୱାମୀ, ସର୍ବସ୍ୱ ତଥା ସମଦର୍ଶୀ ବୋଲି ଜ୍ଞାନ କରନ୍ତି । ଏ ଯଦି ଅନ୍ୟାୟ ପଥରେ ଚାଲିବେ ତାହାହେଲେ ଧର୍ମ ରକ୍ଷାହୋଇ ପାରିବ ନାହିଁ । ଏ ଅନ୍ୟାୟ କଲେ ତାଙ୍କୁ ଅନୁକରଣ କରି ସାଧାରଣ ଲୋକେ ମଧ୍ୟ ଅନ୍ୟାୟ କରିବସିବେ । ବଡ଼ ବା ସମ୍ମାନନୀୟ ବ୍ୟକ୍ତି ଯେଉଁ କାର୍ଯ୍ୟରେ ଲିପ୍ତ ହୁଅନ୍ତି ତାଙ୍କଠାରୁ ଦେଖି ସର୍ବସାଧାରଣ ସେଇକଥା କରି ବସନ୍ତି । ଅନ୍ୟମାନେ ଏହାକୁ ପ୍ରାମାଣିକ ଭାବରେ ମଧ୍ୟ ଗ୍ରହଣ କରନ୍ତି । ଏ ବଡ଼ ଅନ୍ୟାୟ ତଥା ବିଶ୍ୱାସଘାତକତା କାର୍ଯ୍ୟ ଅଟେ ।"

ଯମଦୂତ କହିଲେ--"ମହାରାଜ ! ଏହା କିପରି ବିଶ୍ୱାସଘାତକତା କାର୍ଯ୍ୟ ?"

ବିଷ୍ଣୁଦୂତ କହିଲେ- "ଭାଇ ! ଏହା ନିଶ୍ଚିତ ଭାବରେ ବିଶ୍ୱାସଘାତକତା । କାରଣ ଯେଉଁ ଲୋକ ଅନ୍ୟର ଶରଣ ଗ୍ରହଣ କରେ ଓ ସେହି ଲୋକକୁ ବିଶ୍ୱାସ କରି ତାର ଅଧୀନତା ସ୍ୱୀକାର କରେ । ଶରଣ ଗ୍ରହଣ କରିଥିବା ବ୍ୟକ୍ତି ବେକରେ ଛୁରୀ ଚାଳନା କରିବା ବିଶ୍ୱାସ ଘାତକତା ନୁହେଁ ତ ଆଉ କ'ଣ ? ବାଣୁଆ ଜାଲ ପକାଇ ବଂଶୀବାଦନ ପୂର୍ବକ ହରିଣୀକୁ ଫାନ୍ଦରେ ପକାଇ ନେଇଯାଏ ଓ ପରେ ତାକୁ ମାରିଦିଏ । କୌଣସି ଲୋକକୁ ବିଶ୍ୱାସ କରି ତା କୋଳରେ ମୁଣ୍ଡରଖି ଶୋଇଲେ ଯଦି

ସେହି ବ୍ୟକ୍ତି ଅନ୍ୟାୟ ଭାବରେ ମଥା ରଖିଥିବା ବ୍ୟକ୍ତିର ମଥାକୁ କାଟିଦିଏ, ଏହା ବିଶ୍ୱାସଘାତକତା ନୁହେଁ ତ ଆଉ କ'ଣ ? ଭାଇ ! ସାଧୁ ସ୍ୱଭାବ ପୁରୁଷ ତାର ଶରଣାଗତ ଅପକାରୀ ବ୍ୟକ୍ତିର ମଧ୍ୟ କ୍ଷତି ବା ଅନିଷ୍ଟସାଧନ କରେନାହିଁ । ଯିଏ ତା' ଉପରେ ବିଶ୍ୱାସଜ୍ଞାପନ କରେ ସେ ତା ପ୍ରତି ନ୍ୟାୟବୁଦ୍ଧି ପ୍ରଦର୍ଶନ କରେ । ଯିଏ ଜଡ଼ ସ୍ୱଭାବ, ବ୍ୟାଧ ଓ ପଶୁ ବୁଦ୍ଧି ସମ୍ପନ୍ନ ସେ କେବଳ ବିପରୀତ ବ୍ୟବହାର କରିବସେ । ଏପରିକି ହିଂସ୍ର ପଶୁ ମଧ୍ୟ ତାର ଶରଣାଗତ ସହ ବିଶ୍ୱାସଘାତକତା କରେନାହିଁ । ଏ ସମ୍ବନ୍ଧରେ ଗୋଟିଏ କାହାଣୀ କହୁଛି ଶୁଣ—

ଏକଦା ଜଣେ ବାଟୋଇ ଘୋର ଜଙ୍ଗଲ ପଥଦେଇ ଯାଉଥିବା ସମୟରେ ଗୋଟିଏ ସିଂହକୁ ଭେଟିଲା । ସିଂହ ହିଂସ୍ରପଶୁ କାଳେ ତାକୁ ଖାଇଯିବ ଏହି ଭୟରେ ସେ ଦୌଡ଼ିବାକୁ ଲାଗିଲା । ବାଟୋଇ ଦୌଡ଼ୁଥାଏ, ତା ପଛେପଛେ ସିଂହ ତା ମାଂସ ଖାଇବାପାଇଁ ଦୌଡ଼ୁଥାଏ । କିଛି ବାଟ ଗଲାପରେ ହାଲିଆହୋଇ କୌଣସି ଉପାୟରେ ବାଟୋଇ ଗୋଟିଏ ଗଛଉପରକୁ ଚଢ଼ିଗଲା । ସେ ଗଛରେ ଗୋଟିଏ ଭାଲୁ ବସିଥିଲା । ପୁନରାୟ ଭୟପାଇ ବାଟୋଇଟି ବିନୀତ ଭାବରେ ଭାଲୁକୁ କହିଲା--ଦେଖନ୍ତୁ ! ମୁଁ ଆପଣଙ୍କର ଶରଣାଗତ, ଆପଣଙ୍କ ପାଖକୁ ଆସିଛି, ଆପଣ ମୋତେ ରକ୍ଷା କରନ୍ତୁ ! ଭାଲୁ ଅଭୟବାଣୀ ପ୍ରଦାନ କରି ବାଟୋଇକୁ କହିଲା—"ଠିକ୍ ଅଛି ! ତୁମେ କୌଣସି ପ୍ରକାରେ ଭୟ ନ କରି ଏଇଠାରେ ନିର୍ଭୟରେ ରହ । ସିଂହ ତୁମର କିଛି କ୍ଷତି କରିପାରିବ ନାହିଁ ।" ଭାଲୁଠାରୁ ଅଭୟ ପାଇ ବାଟୋଇ ତା ଉପରେ ବିଶ୍ୱାସରଖି ନିଶ୍ଚିନ୍ତ ହୋଇରହିଲା । ସିଂହ ସେହି ଗଛ ମୂଳରେ ଥାଇ ଭାଲୁକୁ କହିଲା —"ଦେଖ ଭାଇ ! ତୁମେ ଓ ମୁଁ ବଣର ହିଂସ୍ରଜୀବ, ଭାଇଭାଇ ; ଏ ଲୋକ ଜନପଦରେ ରହିଲାବାଲା । ମଣିଷ ଆମଠାରୁ ଭିନ୍ନଜାତି ତଥା ସେ ଆମର ଆହାର । ମୋତେ ଖୁବ୍ ଭୋକ ହେଉଛି । ତୁମେ ତାକୁ ତଳକୁ ପେଲିଦିଅ । ମୁଁ ତାକୁ ଖାଇ ମୋର ଭୋକ ଶାନ୍ତ କରିଦିଏ । ତୁମର ଏଥିରେ ବଡ଼ ମଙ୍ଗଳ ହେବ ।"

ଭାଲୁ କହିଲା—"ହେ ବଣର ରାଜା ! ତୁମେ ଅନ୍ୟାୟ କରିପାର, ହେଲେ ମୁଁ ଆଦୌ ଅନ୍ୟାୟ କରିପାରିବ ନାହିଁ । ଶରଣାଗତକୁ ପରିତ୍ୟାଗ କରିବା ଉଚିତ୍ କର୍ତ୍ତବ୍ୟ ନୁହେଁ ଯିଏ ବିଶ୍ୱାସ ଜ୍ଞାପନ କରି ମୋ ପାଖରେ ଆତ୍ମସମର୍ପଣ କରିଛି, ତା ସହ ମୁଁ ବିଶ୍ୱାସଘାତକତା କରିପାରିବନାହିଁ ! ମୁଁ ଏହି ଶରଣାଗତର ରକ୍ଷା ନିମନ୍ତେ ପ୍ରାଣପାତ ଚେଷ୍ଟା କରିବ ।"

ଭାଲୁର ଏହି ନୀତିଯୁକ୍ତ କଥା ଶୁଣି ଭୋକିଲା ସିଂହ କିଛି ଉତ୍ତର ନ ଦେଇ ସେଇ ଗଛ ମୂଳରେ ବସିରହିଲା । କେତେବେଳେ ତ ହେଲେ ବାଟୋଇ ଗଛରୁ ତଳକୁ ଓହ୍ଲାଇବ । କିଛି ସମୟପରେ ଭାଲୁକୁ ନିଦ ଆସିଲା । ସେ ଶୋଇପଡ଼ିଲା । ଏହି

ସମୟରେ ସିଂହ ବାଙ୍ଘୋଇକୁ ଧୀରେ ଧୀରେ କହିଲା-- "ଆରେ ! ତୁ କାହା ମାୟା-ଜାଲରେ ପଡ଼ି ରହିଛୁ ! ସେ ମୋଠାରୁ ଅଧିକ ହିଂସ୍ର ଜୀବ । ମୁଁ ଏଠୁ ଗ୍ଲଲଗଲେ ତୋତେ ମାରିକରି ଖାଇବ । ମୁଁ ଥିବାପର୍ଯ୍ୟନ୍ତ ତୋର ସେ କିଛି କ୍ଷତି ନ କରି ଚୁପ୍‌ଗ୍ଲପ ରହିଥିବ । ସେ ତ ଶୋଇଛି, ଏଣୁ ତୁ ତାକୁ ତଳକୁ ଖସାଇ ଦେ, ମୁଁ ତାକୁ ଖାଇଦେଇ ଗ୍ଲଲିଯିବି, ତୋତେ ଆଉ ଖାଇବା ଲାଳସା ରଖିବି ନାହିଁ ।"

ସିଂହ କଥା ଶୁଣି ସେହି ମୂର୍ଖ, ଅଜ୍ଞ, କୃତଘ୍ନ ପୁରୁଷ ଭାଲୁସହି ବିଶ୍ୱାସ-ଘାତକତା କରିବାକୁ ପଛଘୁଞ୍ଚା ଦେଲାନାହିଁ । ଶୋଇଥିବା ଭାଲୁକୁ ବାଙ୍ଘୋଇ ତଳକୁ ପେଲିଦେଲା, କିନ୍ତୁ ଭାଲୁର ତ ଗଛ ଉପରେ ଶୋଇବାର ଅଭ୍ୟାସ ଅଛି । ସେ ଖସି-ପଡ଼ିବା ସମୟରେ ଡାଳ ଖଣ୍ଡିଏ ଧରି ରକ୍ଷା ପାଇଗଲା । ତଳକୁ ଖସି ପଡ଼ିଲା ନାହିଁ । ବର୍ତ୍ତମାନ ସିଂହକୁ ସୁବିଧା ମିଳିଗଲା । ସେ ଥଟ୍ଟା କରି ଭାଲୁକୁ କହିଲା—"ଦେଖ ଭାଇ ! ଏ ଲୋକର ବୁଦ୍ଧି, ତୁ ତାର କେତେ ଉପକାର କରି ନ ଥିଲୁ, ଆଉ ସେ ତୋ ସହିତ କେମିତି ବିଶ୍ୱାସଘାତକତା କଲା । ବର୍ତ୍ତମାନ ସେ ପାପର ଦଣ୍ଡ ଭୋଗୁ, ଦେ ତାକୁ ତଳକୁ ଖସେଇ ଦେ, ମୁଁ ତାକୁ ଖାଇ ଆରାମରେ ଗ୍ଲଲିଯାଏ ।"

ଭାଲୁ କହିଲା—"ହେ ପଶୁରାଜ ! ମୁଁ ଧର୍ମ ତ୍ୟାଗ କରି ଏପରି ଅନ୍ୟାୟ କାର୍ଯ୍ୟ କରିବି ବୋଲି ଆଶା ରଖନାହିଁ । ମୂର୍ଖତାବଶତଃ ଏ ଲୋକ ଅନ୍ୟାୟ କରି ବସିଲା, ହେଲେ ମୁଁ ମୂର୍ଖ ସ୍ୱଭାବ ପ୍ରକାଶ କରିପାରିବି ନାହିଁ । ଯେଉଁ ଲୋକ ମିତ୍ରତା ସ୍ଥାପନକରି ମୋ ଉପରେ ବିଶ୍ୱାସ ରଖି ମୋଠାରେ ଆତ୍ମସମର୍ପଣ କରିଛି, ମୁଁ କେବେ ତା ପ୍ରତି ଅନ୍ୟାୟ ଆଚରଣ କରି ପାରିବିନାହିଁ । ଭାଲୁଠାରୁ ଏହି ନ୍ୟାୟୋଚିତ କଥା ଶ୍ରବଣ କରି ସିଂହ ଫେରିଗଲା ଓ ବାଙ୍ଘୋଇ ଜୀବନ ପାଇ କୁଶଳରେ ଘରେ ପହଞ୍ଚିଲା ।"

ତେଣୁ ଭାଇ ଏହି ଲୋକକୁ ନେବାପାଇଁ ଯଦି ଧର୍ମରାଜ ଆଦେଶ ପ୍ରଦାନ କରିଛନ୍ତି ସେ ଅଧର୍ମ କରୁଅଛନ୍ତି ଓ ପ୍ରାଣୀମାନଙ୍କ ସହ ବିଶ୍ୱାସଘାତକତା ମଧ୍ୟ କରୁଛନ୍ତି ।

ଯମଦୂତମାନେ କହିଲେ—"ମହାରାଜ ! ଆପଣ ଏଇ ଲୋକକୁ ନିଷ୍ପାପୀ ବୋଲି କହୁଛନ୍ତି । ଏ ଲୋକ ମହାପାତକୀ । ପାପ କରି ଶାସ୍ତ୍ରୋକ୍ତ ପ୍ରାୟଶ୍ଚିତ କରିଥିଲେ ସେ ଶୁଦ୍ଧ ହେଲା ବୋଲି ଜ୍ଞାନ କରି ତାକୁ ଆମେ ନେବା ପାଇଁ ଚେଷ୍ଟା କରି ନ ଥାନ୍ତୁ । ଏ ଲୋକ ପାପ କରି ପ୍ରାୟଶ୍ଚିତ ମଧ୍ୟ କରିନାହିଁ । ଏଣୁ ଏହାକୁ ନେଇ ଯିବାରେ ଆମେ କୌଣସି ଅନ୍ୟାୟ କରୁନାହୁଁ ବୋଲି ଭାବୁଛୁ ।"

ବିଷ୍ଣୁଦୂତମାନେ ନିଜ କଥାରେ ଖୁବ୍ ଜୋରଦେଇ କହିଲେ —"ଆମେ ସେଇ କଥା କହୁଛୁ, ତୁମେମାନେ ଆଦୌ ବୁଝିପାରୁନାହଁ । ଯିଏ ପାପକରି ପ୍ରାୟଶ୍ଚିତ ନ କରେ ସେ ପାପୀହୋଇ ରହିବ ଏକଥା ଆମେ ସ୍ୱୀକାର କରୁଛୁ, ହେଲେ ଏ ଲୋକ ପାପୀ ନୁହେଁ, ଏ ଲୋକ ତାର ସମସ୍ତ ପାପର ପ୍ରାୟଶ୍ଚିତ କରିସାରିଛି ।"

ଯମଦୂତ ଆଶ୍ଚର୍ଯ୍ୟ ହୋଇ କହିଲେ –"ମହାରାଜ ! ଏ କେତେବେଳେ ପାପର ପ୍ରାୟଶ୍ଚିତ୍ତ କଲେ !"

ବିଷ୍ଣୁଦୂତମାନେ କହିଲେ – "ଦେଖଭାଇ ଏ ଲୋକ ଭଗବାନଙ୍କର ପରମ ପବିତ୍ର ଚତୁରାକ୍ଷର ନାମ 'ନାରାୟଣ' ପ୍ରାଣତ୍ୟାଗ ସମୟରେ, ଶୁଦ୍ଧ ଓ ସ୍ପଷ୍ଟରୂପେ ଉଚ୍ଚାରଣ କରିଥିଲା । ଏଥିରେ ପ୍ରାୟଶ୍ଚିତ୍ତ ହେଲାନାହିଁ କିପରି ?"

ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇ ଯମଦୂତମାନେ ବିଷ୍ଣୁଦୂତମାନଙ୍କର ମୁହଁକୁ ଚାହିଁ ବିସ୍ମୟ ସହକାରେ କହିଲେ,–"ଭଗବାନଙ୍କ ନାମ ଉଚ୍ଚାରଣ ଦ୍ୱାରା କେଉଁ କେଉଁ ପାପର ପ୍ରାୟଶ୍ଚିତ୍ତ ହୋଇଥାଏ ?"

ଏହାପରେ ଗୁରୁଗମ୍ଭୀର ସ୍ୱରରେ ବିଷ୍ଣୁଦୂତମାନେ କହିଲେ "ଦେଖଭାଇ ! ଯେଉଁ ବ୍ୟକ୍ତି ମରିବା ସମୟରେ ଅବଶ ହୋଇ ଏକାଗ୍ରତା ସହ ଭଗବାନଙ୍କର ପରମ ପବିତ୍ର ନାମ ଉଚ୍ଚାରଣ କରିଥାଏ, ସେ ସମସ୍ତ ଚୋରି କରିଥିବା ପାପରୁ ମୁକ୍ତ ହୁଏ । ସୁରାପାନ ଜନିତ ମହାପାପ, ମାତୃପିତୃ, ଗୋ-ହତ୍ୟା ଜନିତ ମହାପାତକ ମଧ୍ୟ ଏହି ନାମ ଶୁଣି ଦୂରେଇଯାଏ । ଗୁରୁ ସ୍ତ୍ରୀ ଗମନ ପରି ମହାପାତକର ପ୍ରାୟଶ୍ଚିତ୍ତ ହୋଇ-ଥାଏ । ଆଉ ଅଧିକ କ'ଣ କହିବି, ଏଲୋକ ସମସ୍ତ ପାପକରି ମଧ୍ୟ ଭଗବାନଙ୍କ ନାମ ଉଚ୍ଚାରଣ କରି ପାପରୁ ମୁକ୍ତ ହୋଇଯାଇଅଛି ।

ଯମଦୂତ କହିଲେ—"ମହାରାଜ ! ଏହା କିପରି ସମ୍ଭବ ! ନାମର ମାହାତ୍ମ୍ୟ ଅଛି, ଆମେ ମାନୁଅଛୁ । କିନ୍ତୁ ଜ୍ଞାନ ଓ ସଂକଳ୍ପ ପୂର୍ବକ ବ୍ୟକ୍ତି ନାମ ଉଚ୍ଚାରଣ କରିଥିଲେ ଫଳପ୍ରାପ୍ତି ହୋଇଥାନ୍ତା । ଏ ଭଳି ଅବଶ ଭାବରେ ନାମ ଉଚ୍ଚାରଣ କରିବାରେ ଲାଭ କ'ଣ ? ଶବକୁ ବୋହି ନେବା ଲୋକେ ମଧ୍ୟ "ରାମନାମ ସତ୍ୟ ହେ" ବୋଲି ରଡ଼ିକରିଥାନ୍ତି ।"

ଏକଥା ଶୁଣି ବିଷ୍ଣୁଦୂତମାନେ, ଭୟାନକ ଆକୃତିମୟ ନରକର ଦୂତମାନଙ୍କୁ ଧମକଦେଇ କହିଲେ –"ତୁମେମାନେ ବଡ଼ ଚଣ୍ଡାଳ ! ନାମର ମହତ୍ତ୍ୱ ଉପରେ କମ୍ ଗୁରୁତ୍ୱ ଦେଇ ନାମକୁ ବନ୍ଧନ ସହ ସାମିଲ କରିବାକୁ ଚାହଁ । ଏହା ନାମର ମହତ୍ତ୍ୱ ନୁହେଁ । ନାମ ଅପରାଧର ମହତ୍ତ୍ୱ । ନାମରେ ଅପରାଧ କେତେବେଳେ ହୁଏ ? ଏହା ସଦା ବିଶୁଦ୍ଧ, ଏହା ନିମନ୍ତେ କୌଣସି ବିଧିନାହିଁ, ନିଷେଧ ନାହିଁ, ନିୟମ ନାହିଁ, ପାତ୍ରାପାତ୍ର ବିଚାର ନାହିଁ । ମରିବା ସମୟରେ କେମିତି ହେଲେ ନାମ ଉଚ୍ଚାରଣ ମୁଖରୁ ବାହାରି ପଡ଼ିଲେ, ସବୁ ପାପ ନଷ୍ଟ ହୋଇଯାଏ, ଯେପରି ଅଗ୍ନିର ଅଗ୍ନିକଣା ଲକ୍ଷେକୋଟି ପଦାର୍ଥକୁ ନିମିଷକେ ଜାଳି ନଷ୍ଟ କରିଦିଏ । ବିଧିପୂର୍ବକ ଯାବତ ମହକାରେ ନିଆଯାଇଥିବା ନାମ ଉତ୍ତମ ବୁଦ୍ଧି ଅଟେ । ସୁନାର ସୁଗନ୍ଧ ଅଛି କିନ୍ତୁ ଯାହାଠାରେ

ଏତେ ପବିତ୍ରତା ସେ ଭଗବାନଙ୍କ ନାମ ନେଇ ପାରେନାହିଁ ; ଏହା କିପରି ହେବ । ସାଧାରଣ ଜୀବମାନଙ୍କର ନିସ୍ତାରର ଉପାୟ କଣ ? ନାମର ସର୍ବସୁଗମ ସର୍ବୋପଯୋଗୀ ସାଧନ କେଉଁଠି ପୁଣି ଏ ବିଧିବିଧାନର ଅଧୀନ ହୋଇଗଲା । ଯେପରି ଯାଗଯଜ୍ଞ ଆଦି ଅବିଧି ଭାବରେ କରାଗଲେ, ତାହା ନିରର୍ଥକ ଓ ଏହି ବିଧିହୀନ ଯଜ୍ଞର କର୍ତ୍ତା ଶୀଘ୍ର ପରମାର୍ଥଙ୍କଠାରେ ବିନଷ୍ଟ ହୁଏ । ଏହିକଥା ଭଗବାନଙ୍କ ନାମ କୀର୍ତ୍ତନରେ ନାହିଁ । ଏଣୁ ବୁଦ୍ଧିବଦ୍ଧାରା ସାବଧାନତା ସହକାରେ, ଆଳସ୍ୟରେ, ଜ୍ଞାନରେ, ଅଜ୍ଞାନଭାବରେ କିପରି ହେଲେ ନିଆଯାଇପାରେ; ଜ୍ଞାନୀ, ଅଜ୍ଞାନୀ, ପଣ୍ଡିତ, ମୂର୍ଖ, ଚଣ୍ଡାଳ, ଶୁଦ୍ଧ, ଅଶୁଦ୍ଧ ଧର୍ମାତ୍ମା, ପରମାତ୍ମା, ଯିଏ ହେଉ କାହିଁକି ନ ନେବ । ବ୍ରହ୍ମାବର୍ତ୍ତିଠାରୁ ସେ ମଧ୍ୟ କୀକଟ ମଗଧ ଆଦି ନିଷେଧଦେଶ ମାନଙ୍କରେ ନେଇଥିଲେ । ଏଣୁ କେଉଁଠାରେ କାହିଁକି ନିଆଯାଇ ପାରିବ ନାହିଁ । ନିରର୍ଥକ ବ୍ୟର୍ଥ ଯେ ହେଉନା କାହିଁକି, ଏହା ଶାସ୍ତ୍ରର ନିୟମ, ପୁରାଣ ଏହାର ପ୍ରଚାର ବିଶିଷ୍ଟ ଭାବରେ କରୁଅଛି । ଯେ କୌଣସି ପୁରାଣକୁ ଉଠାଇ ଦେଖ ଏଥିରେ ଭଗବାନଙ୍କ ନାମ କୀର୍ତ୍ତନ ବିଷୟରେ ଉଦାର ବିଚାର ମିଳି ପାରିବ । ଏଥିରେ ସଙ୍କୁଚିତତା, ସଙ୍କୀର୍ଣ୍ଣତା, ସାମ୍ପ୍ରଦାୟିକତାର ଗନ୍ଧ ବି ନାହିଁ । ଭଗବାନଙ୍କ ନାମ ନେବାରେ ନିୟମ ନାହିଁ, ଦେଶକାଳ ପାତ୍ର ଆଦିର ଅପେକ୍ଷା କରାଯାଏ ନାହିଁ । କେବଳ ଜିହ୍ୱାରେ ନାମ ଉଚ୍ଚାରଣ କରିବା ଦରକାର । ପୁଣି ନାମ ସବୁକିଛି କରିପାରେ, ରୋଗକୁ ବୈଦ୍ୟଠାରୁ ରକ୍ଷା କରିବାର ବିଶ୍ୱାସ କରାଯାଏ । ଯଦି ଏହି ବଟିକାକୁ ଔଷଧ ଭାବରେ ଗ୍ରହଣ କରାଯାଇ ପାରେ ଓ ଏହାକୁ ଖାଇବାକୁ ଇଚ୍ଛାକର – ତେବେ ଏହି ବଟିକାରେ କି କି ଔଷଧ ଅଛି, ଏହା କେଉଁଠାରେ ମିଳେ, ଏଥିରେ କି ପ୍ରକାର ଗୁଣଅଛି, ଏହାର ସତ୍ୟତା କିପରି ବାହାରିବ ଏସବୁ ଦେଖି ଆମେ ବଟିକା ଖାଇବା, ଏହି ବିଚାର କରୁଥିବା ଲୋକକୁ ରୋଗ ଆଦୌ ଧରେ ନାହିଁ । ଆରେ ! ତୁମେମାନେ ଆଖି ବନ୍ଦକରି ଗଳା ଭିତରେ ବଟିକାକୁ ପକାଇ ଦିଅ । ପେଟରେ ପଶି ସେ ତାର ନିଜର ଗୁଣ ପ୍ରକାଶ କରିବ । ତୁମମାନଙ୍କୁ ଏଥିପାଇଁ ଚେଷ୍ଟା ବି କରିବାକୁ ପଡ଼ିବ ନାହିଁ । ତୁମର କର୍ତ୍ତବ୍ୟ ଏତିକି ଯେ, ସବୁବେଳେ ବୈଦ୍ୟ କହିଥିବା ଅନୁସାରେ ବଟିକାକୁ ଗଳା ଭିତରକୁ ପକାଇଦିଅ । ବାକିତକ କାମ ବଟିକା ନିଜେ କରିନେବ । ଭଗବାନଙ୍କ ନାମରେ ଅନନ୍ତ ଶକ୍ତି ପୁରି ରହିଛି । ମରିବା ସମୟରେ କୌଣସି ସୌଭାଗ୍ୟଶାଳୀ ବ୍ୟକ୍ତି ମୁଖରୁ ରାମନାମ ବାହାରି ପଡ଼ିଲେ ତେବେ ତାର ସବୁପାପ ସେହିକ୍ଷଣରେ ବିଲୀନ ହୋଇଯାଏ । ଏ ଲୋକ ଏହିପରି କରିଅଛି । ମରିବା ସମୟରେ ବିଶୁଦ୍ଧ "ନାରାୟଣ" ଆର୍ତ୍ତିଭାବରେ କାନ୍ଦି କାନ୍ଦି ଖୁବ୍ ବଡ଼ପାଟିରେ ଉଚ୍ଚାରଣ କରିଥିଲା । ପୁଣି ଏ କିପରି ପାପୀ ହୋଇ ରହିଲା ? ପୁଣି ତୁମେ ଏହାକୁ ଧରି ନେବାର ସାହସ କିପରି କଲ ? ଏଣୁ କୌଣସି କଥା ବିଚାରକୁ ନନେଇ ତୁମକୁ ଏ ବିଷୟରେ ଆମେ ଧମକାଉଅଛୁ । ଯଦି ପୁଣି ତା ଉପରେ ହାତ ଲଗାଇବ

ତାହାହେଲେ ମାର ମାର ତୁମର ଜୀବନ ନେଇଯିବୁ, ତୁମର ଯମଦୂତ ପଣିଆ ଛୁଡ଼ିଯିବ ।"

ଶୁକଦେବ କହିଲେ – "ଭଗବାନ ଦୂତମାନଙ୍କ ମୁହଁରୁ ଶେଷରେ ଭଗବାନ ନାମ ଉଚ୍ଚାରଣର ମାହାତ୍ମ୍ୟ ଶୁଣି ଯମଦୂତ ଅବାକ୍ ହୋଇ ପଡ଼ିଲେ । ଏମାନେ ଡ଼ରରେ ଥର ଥର ବିଷ୍ଣୁଦୂତମାନଙ୍କ ଆଡ଼କୁ କେବଳ ଚାହିଁ ରହିଲେ ।

—ଛପ୍ପୟ—

ପ୍ରାୟଶ୍ଚିତ ମନୁ ଆଦି ପାପକେ ବିବିଧ ବତାଓେଁ ।
ତିନତେଁ ଛୁଟେଁ ପାପ କିନ୍ତୁ ଜଡ଼ତେଁ ନହିଁ ଜାଓେଁ ।।
ରହେଁ ବାସନା ବନୀ ଫେରହୁ ପାପ କରଙ୍ଗେ ।
ପୁନ ପୁନ କରକେଂ ପାପ ନରକମହିଁ ମନୁଜ ପରଙ୍ଗେ ।।
ପ୍ରାୟଶ୍ଚିତ୍ତ ସବ ପାପକୋ, ପୁରୁଷୋତ୍ତମ କୋ ନାମ ହୈ ।
ତୁମ ଉଚ୍ଚାରନ ଭର କରୋ, ଫେର ନାମକୋ କାମ ହୈ ।।



# ହରିନାମ ଦ୍ୱାରା ମହାପାପ ନିବୃତ୍ତି

ନୈକାନ୍ତିକଂ ତଦ୍ଧି କୃତେଽପି ନିଷ୍କୃତେ
ମନଃପୁନର୍ଧାବତି ଚେଦ ସତ୍‌ପଥେ ।
ତତ୍କର୍ମ ନିର୍ହାର ମଭିପ୍‌ସତାଂ ହରେ—
ର୍ଗୁଣାନୁବାଦଃ ଖଲୁ ସତ୍ତ୍ୱଭାବନଃ ॥

[ ଶ୍ରୀ ଭା—୬ଷ୍ଠ ସ୍କନ୍ଦ ॥ ୨ୟ ଅଧ୍ୟାୟ ॥ ୧୨ ଶ୍ଳୋକ ]

## ଛପ୍‌ପୟ

ଲେଓ୍ୱେଂ ଜାକୋ ନାମ ସ୍ୱାଦ ଗୁଣ ତାକେ ଆବେଂ ।
ପୁଣ୍ୟ କୀର୍ତ୍ତି ଭଗବାନ ନାମ ଗୁଣ ଜ୍ଞାନ କରାଓ୍ୱେଂ ॥
ହରିଗୁନ୍ ମନମହିଁ ଢେସେ ଫେର କସ ପାପ ରହିଙ୍ଗେ
ବନ୍ଦୁତକ ହୋଓ୍ୱେଂ ହରନ ସିଂହକୁଁ ଦେଖି ଭାଗିଙ୍ଗେ ॥
ଇତ ଉତ ଭଟକେ ଜୀବ ଚେଷ୍ଟାଂ କରେ ବ୍ୟର୍ଥକେ କାମ ଭୁ ।
ସବ ପ୍ରପଞ୍ଚକୁଁ ଛାଡ଼ିକେ କସ ନ ଲେଇ ହରିନାମ ଭୁ ॥

ମଣିଷ ପାପ କାହିଁକି କରେ ? ବାସନାରେ ବଶୀଭୂତ ହୋଇ ସେ ପାପକରେ । ମନ ଭିତରେ ଥିବା ବିଷୟ ବାସନା ମଞ୍ଜି ସ୍ୱରୂପ ଓ ପାପ ଏହାର ଫଳ । ବିଷ ଗଛଟିଏ ଅଛି । ତାର ଫଳକୁ ଯିଏ ଖାଇବ ସେ ମରିବ । ଏକଥା ଶୁଣି ଜମିର ମାଲିକ ଏହି ବିଷ ଫଳଗୁଡ଼ିକ ତୋଳି ପୋଡ଼ି ପକାଇଲେ । ଫଳ ସିନା ନଷ୍ଟ ହୋଇଗଲା, ହେଲେ ଗଛ ଓ ତାର ମୂଳପିଣ୍ଡ ନଷ୍ଟ ହେଲାନାହିଁ । ପୁନର୍ବାର ବର୍ଷା ହେବାରୁ ଗଛରେ ଫୁଲହୋଇ ପୁଣି ଥରେ ଫଳ ଧରିଲା । ଯେଉଁ ପର୍ଯ୍ୟନ୍ତ ବୃକ୍ଷକୁ ମୂଳରୁ ନଷ୍ଟକରି ଦିଆ ନ ଯାଇଛି ପ୍ରତିବର୍ଷ ଫଳକୁ ନଷ୍ଟ କରିବାକୁ ପଡ଼ୁଥିବ । ଫଳ ତ ନିଶ୍ଚୟ ଧରିବ । ଏହିଭଳି ଭାବରେ ପାପର ପ୍ରାୟଶ୍ଚିତ କଥା ବିଚାର କରଯାଏ । ଆପଣ ଲକ୍ଷେ ପ୍ରାୟଶ୍ଚିତ କରନ୍ତୁ ।

ପ୍ରାୟଶ୍ଚିତ ଦ୍ୱାରା ପାପର ଫଳ ସ୍ୱରୂପ ନରକ ଭୋଗିବାକୁ ପଡ଼େନାହିଁ, କିନ୍ତୁ ବାସନା ଯେ ନଷ୍ଟହୁଏ ତାହା ନୁହେଁ । ବାସନା ଜନ୍ମୁଥିବା ଯାଏ ଭଗବାନଙ୍କ ଗୁଣାନୁବାଦର ଆଶ୍ରୟ ଗ୍ରହଣ କରିବା ପାଇଁ ତଥା ଭଗବାନଙ୍କ କଥା ଓ ତାଙ୍କର ସୁମଧୁର ନାମର ପ୍ରେମପୂର୍ବକ କୀର୍ତ୍ତନ କରିବା ଉଚିତ୍ ।

ଶୁକଦେବ କହିଲେ--"ରାଜା ! ଭଗବାନ୍ ବିଷ୍ଣୁଙ୍କ ଦୂତମାନଙ୍କ ମୁହଁରୁ 'ନାରାୟଣ' ନାମର ଏତେବଡ଼ ମାହାତ୍ମ୍ୟ ଶୁଣି ଯମଦୂତମାନେ କିଛି ଭାବି ପାରିଲେ ନାହିଁ ।" ସେମାନଙ୍କ ମୁହଁରୁ କୌଣସି ଉତ୍ତର ମଧ୍ୟ ଆସିଲା ନାହିଁ । ଏମାନେ କେବଳ ବିନୀତ ଭାବରେ ଭଗବାନଙ୍କ ଦୂତମାନଙ୍କୁ ପଚାରିଲେ—"ତେବେ ମହାରାଜ ! ଆମ ପାଇଁ କି ଆଦେଶ ପ୍ରଦାନ କରୁଛନ୍ତି ?"

ବିଷ୍ଣୁଦୂତ କହିଲେ —"ଆଦେଶ କ'ଣ କରିବୁ, ଏହି ମହାତ୍ମାଙ୍କୁ ନିଅନାହିଁ । ଯେତେବେଳେ ଏ ସମସ୍ତ ପାପର ପ୍ରାୟଶ୍ଚିତ କରିସାରିଛି, ମରିବା ସମୟରେ ଏହା ମୁହଁରୁ ଭଗବାନ୍ନାମ ବାହାରି ସାରିଛି ସେ ଆଉ ପାପୀ ହୋଇ ରହିଲା କିପରି ?"

ହାତଯୋଡ଼ି ଯମଦୂତ ପଚାରିଲେ—"ମହାରାଜ ! ଆପଣମାନଙ୍କର ଆଜ୍ଞା ଶିରୋଧାର୍ଯ୍ୟ, କିନ୍ତୁ ଆମ ମନରେ ଏକ ସନ୍ଦେହ ଦେଖା ଦେଇଛି, ଆଦେଶ ପ୍ରଦାନ-କଲେ ତାହା ପଚାରିବୁ ?"

ବିଷ୍ଣୁଦୂତ କହିଲେ—"ଠିକ୍ ଅଛି, ପଚାରିପାର । ଭଗବାନଙ୍କ ସମ୍ପର୍କରେ ପଚାର, ଅନ୍ୟକଥା ଆଦୌ ପଚାରି ପାରିବ ନାହିଁ ।"

ଯମଦୂତ କହିଲେ "ନା ମହାରାଜ ! ଅନ୍ୟକଥା କିଛି ପଚାରୁନାହୁଁ, ଆମର ପଚାରିବାର କଥାହେଲା ଭଗବାନଙ୍କ ମାହାତ୍ମ୍ୟ ସମ୍ପର୍କରେ ଯାହା ଆପଣ କହିଲେ ଆମେ ଗ୍ରହଣ କରୁଛୁ; କିନ୍ତୁ ଏ ଲୋକ ଭଗବାନଙ୍କ ନାମ ନେଇନାହିଁ; ଭଗବାନଙ୍କୁ ମଧ୍ୟ ଡାକିନାହିଁ, ତେବେ ପ୍ରାୟଶ୍ଚିତ କିପରି ହେଲା ? ଭଗବାନଙ୍କ ରୂପ ଧ୍ୟାନ କରିଥିଲେ ବିଷୟ ବାସନାଠାରୁ ଦୂରେଇ ଦେଇ, ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ନାରାୟଣଙ୍କୁ ଡାକିଥିଲେ ଠିକ୍ ହୋଇଥାଆନ୍ତା । ଏ ଲୋକ ସେ କଥା ନ କରି ତା ପୁଅକୁ ଡାକିଥିଲା, କିନ୍ତୁ ଆପଣ କହୁଛନ୍ତି ଯେ ସେ ଭଗବାନଙ୍କ ନାମକୀର୍ତ୍ତନ କରିଛି ବୋଲି । ଏସବୁ କଥାତ ଆମେ କିଛି ବୁଝି ପାରୁନାହୁଁ ।"

ବିଷ୍ଣୁଦୂତ କହିଲେ —"ଆରେ, ତୁମେମାନେ ସବୁ ମୂଢ଼ ତଥା ଜଡ଼ ବୁଦ୍ଧି ସମ୍ପନ୍ନ ଲୋକ । ଭାଇମାନେ ! ବିଧିବିଧାନ ସହକାରେ ଡାକିଥିଲେତ ଖୁବ୍ ଉତ୍ତମ ହୋଇ ଥାଆନ୍ତା, କିନ୍ତୁ ଭଗବାନଙ୍କ ନାମ ହେଉଛି ଅମୋଘ । ମରିବା ସମୟରେ ଏହାର ମୁଖରୁ ଭଗବାନଙ୍କ ନାମ ବାହାରିଥିଲା, ଏହି କଥା ପ୍ରତି ତୁମେ କାହିଁକି ଧ୍ୟାନ ଦେଉ

ନାହିଁ । ମରିବା ସମୟରେ ମୁଖରୁ ନାମ ବାହାରିବା ଏତେ ସହଜ କଥା ନୁହେଁ । ଗୁଡ଼କୁ ଆଖି ବୁଜିକରି ଖାଅ, ଅନ୍ଧାରରେ ଖାଅ, ଆଲୁଅରେ ଖାଅ, ଘର ଭିତରେ ଖାଅ, ଘର ବାହାରେ ଖାଅ, ଗାଧୋଇ କରି ଖାଅ, ଅଗାଧୁଆ ଖାଅ, ମିଠା ଲାଗିବ । ସେହିପରି ଭଗବାନଙ୍କ ନାମକୁ ମନରେ ନିଅ, ଅମନରେ ନିଅ, ଇଙ୍ଗିତରେ ନିଅ, ହସରେ ନିଅ, ଗାନ ଭଜନରେ ନିଅ, ଅବହେଳା ପ୍ରଦର୍ଶନ କରି ନିଅ, ଯେପରି ନିଅ ତାହା ପାପକୁ ନାଶ କରିବା ନିମନ୍ତେ ସମର୍ଥ ଅଟେ । ଏଣୁ ତୁମେମାନେ ଏଥିରେ ଆଦୌ ସନ୍ଦେହ ରଖିବା ଉଚିତ ନୁହେଁ । ନାମ ଯେଉଁ ପ୍ରକାରେ ନେଲେ ମଧ୍ୟ ତାହାହିଁ ଭଗବାନଙ୍କ ନାମ ତଥା ଚିର ଶାଶ୍ୱତ ।"

ଏହା ଶୁଣି ଶନକ ପଚାରିଲେ "ସୂତ ! ସଙ୍କେତ ବା ଇଙ୍ଗିତରେ ଭଗବାନ ନାମ କିପରି ନିଆଯାଏ ?"

ସୂତ କହିଲେ "ମହାରାଜ ! ସଙ୍କେତ ଦ୍ୱାରା ନାମ ଏହିପରି ନିଆଯାଏ । ସୀତାରାମଙ୍କର ପ୍ରସାଦ ଆପଣ ପାଉଛନ୍ତି; କିନ୍ତୁ ତା ପୂର୍ବରୁ ଆପଣଙ୍କର ସୀତାରାମ ପ୍ରସାଦ ପାଇ ସାରିଛନ୍ତି । ଆପଣ ତାଙ୍କ ନାମଧରି ପ୍ରସାଦ ପାଇବା ଅର୍ଥ ସଙ୍କେତ ଦ୍ୱାରା ନାମ ନେବା । ଯେପରି ଗୋଟିଏ ଡାକୁଦଳ ଥିଲେ—ସେମାନେ ଯେତେବେଳେ କାହା ପାଖରେ ଧନ ଥିବାର ଜାଣିପାରନ୍ତି, ତାଙ୍କ ମଧ୍ୟରୁ ପ୍ରଥମ ଜଣକ "ନାରାୟଣ—ନାରାୟଣ" ବୋଲି ପାଟିକରେ ଅର୍ଥାତ୍ ଏହି ଲୋକ ପାଖରେ ନଗଦ ନାରାୟଣ ରହିଛି । ଦ୍ୱିତୀୟ ଜଣକ କହେ"ବାସୁଦେବ - ବାସୁଦେବ" ଅର୍ଥାତ୍ ବାଉଁଶର ଠେଙ୍ଗା ଧରି ତା' ପିଠିକରି । ତୃତୀୟ ଜଣକ କହେ, "ଦାମୋଦର - ଦାମୋଦର" ଅର୍ଥାତ୍ ତା' ଅଣ୍ଟାରେ ଦଉଡ଼ି ବାନ୍ଧି ପକାଅ । ଚତୁର୍ଥ ଜଣକ କହେ, "ହରି - ହରି" ଅର୍ଥାତ ଧନ ହରଣ କରିନିଅ ବା ଲୁଟିନିଅ ।

ମନ ଭିତରେ ଭଗବାନଙ୍କ ସ୍ମୃତି ଧରି କରି ରଖିବା ଓ ବାହାରେ ତାଙ୍କୁ ମୁହଁରେ ଉଚ୍ଚାରଣ ନ କରିବା ଏକପ୍ରକାର ସଙ୍କେତ । ଏ ସମ୍ପର୍କରେ ଏକ ଦୃଷ୍ଟାନ୍ତ ଶୁଣନ୍ତୁ । ଗୋଟିଏ ବୁଢୀ ଥିଲା । ତାର କେତୋଟି ପୁଅ ଥିଲେ । ବୁଢ଼ୀଟି ଭାରି ଭଲ ଲୋକ, ହେଲେ ତାଠାରେ ଗୋଟିଏ ଦୋଷଥିଲା, ସେ ଭଗବାନଙ୍କ ନାମ ମୁହଁରେ କେବେ ଉଚ୍ଚାରଣ କରେ ନାହିଁ । ଏପରିକି ଯେଉଁ ଲୋକର ନାମ ଭଗବାନଙ୍କ ନାମରେ ନାମିତ, ବୁଢୀ ମଧ୍ୟ ସେ ଲୋକର ନାମ ତୁଣ୍ଡରେ ଧରେ ନାହିଁ । ଯଦି କାହାର ନାମ ହରିପ୍ରସାଦ ହୋଇଥାଏ, ତେବେ ସେ ତାକୁ ଡ଼ାକେ "ବୁଢ଼ା" । କାହାର ନାମ ଭଗବାନ ଦାସ ହୋଇଥିଲେ ତାକୁ ଡ଼ାକେ "ନନ୍ଦ", ଆଉ କାହାର ନାମ କୃଷ୍ଣଚନ୍ଦ୍ର ହୋଇଥିଲେ ତାକୁ ଡ଼ାକେ "ଚନ୍ଦ୍ର" । ଏଣୁ ବୁଢ଼ୀର ପୁଅମାନେ ଏଥିପାଇଁ ବଡ଼ ଦୁଃଖ କରୁଥିଲେ । ସେମାନେ ଭାବିଲେ ମା' ବୁଢ଼ୀ ମରିଗଲେ ନିଶ୍ଚୟ ନରକପୁରକୁ ଯିବ, କାରଣ ଭୁଲରେ

ସୁଦ୍ଧା ଭଗବାନଙ୍କ ନାମ ନେଉ ନାହିଁ । ପୁଅମାନେ ଚିନ୍ତାକଲେ ମା ମୁହଁରୁ କେମିତି ହେଲେ ଯଦି ଭଗବାନଙ୍କ ନାମ ବାହାରି ପଡ଼ନ୍ତା, ତେବେ ସେ ନରକରୁ ରକ୍ଷାପାଇ ପାରନ୍ତା । ଏକଥା ଭାବି ସେମାନେ ଦିନେ ମା ବୁଢ଼ୀକୁ ଭୁଲାଇକରି ଜଙ୍ଗଲକୁ ନେଇଗଲେ । ବଣରେ ଗୋଟିଏ ହରିଣ ଡେଇଁ ଡେଇଁ ଯାଉଥିବାର ଦେଖି, ପୁଅମାନେ ମା'କୁ ପଚାରିଲେ ମା ! ଏଇଟା କି ଜୀବ ଯାଉଛି ? ବୁଢ଼ୀ ଭାବିଲା ହରିଣ କହିଦେଲେତ 'ହରି'ଙ୍କର ନା ମୁହଁରୁ ବାହାରି ପଡ଼ିବ । ଏଣୁ ବୁଢ଼ୀ ଖୁବ୍ ସାବଧାନ ହୋଇ କହିଲା ଆରେ ପୁଏ ! ଏଇଟା ହେଉଛି 'କୁଦାମରି ପଶୁ' । ବଣରେ ଏ କୁଦାମାରି ବୁଲେ । ଏଣୁ ଏହାକୁ 'କୁଦାମରା ପଶୁ' ବୋଲି କହନ୍ତି ।

ପୁଅମାନେ ଭାବିଲେ ବୁଢ଼ୀ ବହୁତ ଚାଲାକ । ପୁଣି ଆଗକୁ ଚାଲିଲେ । ଯାଉଁ ଯାଉଁ ବାଟରେ ଦେଖିଲେ, ଗୋଟିଏ ଯୋଚା ହଳ ଥୁଆ ହୋଇଛି । ବୁଢ଼ୀର ପୁଅମାନଙ୍କ ଭିତରୁ ଜଣେ ପଚାରିଲା "ମା ! ଏଇଟା କ'ଣ ଥୁଆହୋଇଛି ।"

ବୁଢ଼ୀ ତ ହଳକୁ 'ହଳ' ବୋଲି କହିପାରେ ନାହିଁ 'ହର' କହେ । 'ହର' କହିଦେଲେ ହରଙ୍କର ନାମ ହୋଇଯିବ, ଏଣୁ ବୁଢ଼ୀ କହିଲା, ଏହା ବସୁମାତାର ପେଟ ଫଟାଏ । ଏଣୁ ଏହାକୁ 'ବସୁମାତା ପେଟଫଟା' ବୋଲି କହନ୍ତି ।

ପୁଅମାନେ ଭାବିଲେ ମା ବୁଢ଼ୀ ଫାନ୍ଦରେ ପଡ଼ିବ ନାହିଁ କି ଭଗବାନଙ୍କ ନାମ ଉଚ୍ଚାରଣ କରିବନାହିଁ । ପୁଅମାନଙ୍କ ଭିତରୁ ଜଣେ କହିଲା; ଏ ବୁଢ଼ୀକୁ ନେଇ ଚାଲ ଗୋଟିଏ କୂଅରେ ପକାଇ ଦେବା । କାରଣ ଲୋକକୁ ହଠାତ୍ ବିପତ୍ତି ପଡ଼ିଲେ ତା ମୁହଁରୁ ଭଗବାନଙ୍କ ନାମ ବାହାରିଥାଏ । ଏଣୁ ମା'କୁ ନେଇ ଗୋଟିଏ କୂଅରେ ପକାଇ ଦେଲେ । ସେ ନିଶ୍ଚୟ ଭଗବାନଙ୍କ ନାମଧରି ଡ଼ାକିବ, ଆଉ କୁଆଡ଼େ ଯିବ । ଏକଥା ସବୁ ଭାଇମାନଙ୍କ ମନକୁ ପାଇଲା । କିଛିବାଟ ଗଲାପରେ ଜଙ୍ଗଲ ମଧ୍ୟରେ ଗୋଟିଏ କୂଅ ପଡ଼ିଲା । ପୁଅମାନେ କିଛି ନକହି ହଠାତ୍ ବୁଢ଼ୀକୁ କୂଅ ଭିତରକୁ ପେଲିଦେଲେ । ବୁଢ଼ୀ କୂଅରେ ପଡ଼ିଯିବା ସମୟରେ ଆନନ୍ଦରେ କହୁଥାଏ, ବାଃ, ବାଃ, ବାଃ, । ସ୍ୱୟଂ ଭଗବାନ ବୁଢ଼ୀର ନିଷ୍ଠା ଦେଖି ବୁଢ଼ୀ ଉପରେ ପ୍ରସନ୍ନ ହୋଇ ଚତୁର୍ଭୁଜ ରୂପରେ କୂଅ ଭିତରେ ଉଭାହୋଇ ବୁଢ଼ୀକୁ ଦର୍ଶନ ଦେଲେ । ବୁଢ଼ୀର କୌଣସି କ୍ଷତି ହେଲାନାହିଁ ।

ଆଉ ମଧ୍ୟ ଏପରି ଏକ ଦୃଷ୍ଟାନ୍ତ ଅଛି । ଜଣେ ରାଜାଥିଲେ । ସେ ଭାରି ଭଲ ଲୋକ । କିନ୍ତୁ କେବେ ହେଲେ ଭଗବାନଙ୍କ ନାମ ନିଅନ୍ତି ନାହିଁ । ଏହି କାରଣ ପାଇଁ ତାଙ୍କର ପତିବ୍ରତା ରାଣୀଙ୍କ ମନରେ ବଡ଼ ଦୁଃଖ । ସେ ରାଣୀ ବହୁତ ପ୍ରକାର ଉପାୟ କଲେ ରାଜା ଜୀବନରେ ଥରେ ମାତ୍ର ଭଗବାନଙ୍କ ନାମ ଉଚ୍ଚାରଣ କରନ୍ତୁ ବୋଲି । ହେଲେ ତାଙ୍କର ଉପାୟ ଫଳବତୀ ହେଲା ନାହିଁ କି ରାଜାଙ୍କ ମୁହଁରୁ ଥରେହେଲେ ଭଗବାନଙ୍କ

ନାମ ଭୁଲରେ ସୁଦ୍ଧା ବାହାରିଲା ନାହିଁ । ଦିନେ ରାଜା ଶୋଇଛନ୍ତି, ହଠାତ୍ ଆପେ ଆପେ ରାଜାଙ୍କ ମୁହଁରୁ "ରାମ" ବୋଲି ବାହାରି ପଡ଼ିଲା । ରାଣୀ ଏକଥା ଶୁଣି ବହୁତ ଖୁସୀ ହୋଇଗଲେ ଓ ସକାଳୁ ଉଠି ନଅର ଭିତରେ ଏକ ବଡ଼ ଧରଣର ଉତ୍ସବର ଆୟୋଜନ କଲେ । ରାଜା ରାଣୀଙ୍କୁ ପଚାରିଲେ, ଆଜି କାହିଁକି ଓ କି କାରଣ ନିମନ୍ତେ ଏହି ଉତ୍ସବ ଆୟୋଜନ ହେଉଛି ? ଅତ୍ୟନ୍ତ ଖୁସି ହୋଇ ରାଣୀ କହିଲେ, କାଲି ରାତିରେ ଶୋଇଥିବା ବେଳେ ଆପଣଙ୍କ ମୁହଁରୁ 'ରାମ' ନାମ ବାହାରି ଥିବା ହେତୁ ମୁଁ ଏହି ଉତ୍ସବର ଆୟୋଜନ କରିଛି । ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ,— "କ'ଣ ହେଲା, ମୋ ମୁହଁରୁ 'ରାମ' ନାମ ବାହାରିଛି" । 'ରାମ' କହିବା ମାତ୍ରକେ ରାଜାଙ୍କ ପିଣ୍ଡରୁ ପ୍ରାଣ ବାହାରିଗଲା । ଏ ମଧ୍ୟ ଗୋଟିଏ ପ୍ରକାର ନାମ ନିଷ୍ଠାର ମହିମା, କିନ୍ତୁ ନାମ ମାହାତ୍ମ୍ୟ ମଧ୍ୟରେ ଏହି ନିଷ୍ଠା ଉତ୍ତମ ନୁହେଁ । ଯେ କୌଣସି ଭାବରେ ହେଉନା କାହିଁକି ଭଗବାନଙ୍କ ଉତ୍ତମନାମ ଉଚ୍ଚାରଣ କରିବା ହେଉଛି ଉତ୍ତମ ନିଷ୍ଠା । ସଙ୍କେତ ଦ୍ୱାରା ଭଗବାନଙ୍କ ନାମ ନେଲେ ମଧ୍ୟ କିଛି କ୍ଷତି ନାହିଁ । କାହାକୁ ଡ଼ାକୁଛ ଯଦି ତେବେ ଭଗବାନଙ୍କ ନାମରେ ଡ଼ାକ ।"

ଏହାପରେ ଶୌନକ କହିଲେ "ସୂତ ! ପରିହାସରେ କିପରି ଭଗବାନଙ୍କ ନାମ ନିଆଯାଏ, ଏକଥା ଟିକିଏ ବୁଝାଇ କରି କହନ୍ତୁ ।"

ଏହା ଶୁଣି ସୂତ ହସି ହସି କହିଲେ "ମହାରାଜ ! ଏକଥା ବଡ଼ ମନୋହର ଅଟେ । ଏହାର ସୁନ୍ଦର ଦୃଷ୍ଟାନ୍ତ ଦେଇ ମୁଁ ଆପଣଙ୍କୁ ବୁଝାଇବି । ଆପଣ ଧ୍ୟାନ ସହକାରେ ଶୁଣନ୍ତୁ ।"

—ଛପ୍ପୟ—

କୈସେ ହୁ ହରିନାମ ଲେତ ଫଲ ନିଶ୍ଚୟ ଦେଓ୍ୱୈ ।
ଜ୍ୟୌଁ ମନତେ ଲେଇ, ଭଲେ ବେନ କେ ଲେଓ୍ୱୈ ॥
ହରିକୋ ଲୈକେଂ ନାମ ମାଗଁ ମେ ଆଓ୍ୱେ ଜାଓ୍ୱୈ ।
କୃଷ୍ଣ କୃଷ୍ଣ ସଂକେତ କରେ ସବ ବସ୍ତୁ ମଁଗାଓ୍ୱୈ ॥
ମୋଦକ ଘୀ ବୁରେ । ସନେଶ୍, ଦିନ ମେଂ ଖାଓ ରାତ ମେଂ ।
ସବ ଥଲ ମୀଠୋ ଲ(?)ଗୈଗୋ, ଘର ଖାଓ ୟା ପାଁତ ମେ ॥



# ହଂସ ବିନୋଦରେ ଭଗବାନ୍ନାମ ଶ୍ରେୟସ୍କର

ସାଙ୍କେତ୍ୟଂ ପାରିହାସ୍ୟଂ ବା ସ୍ତୋଭଂ ହେଳନମେବ ବା
ବୈକୁଣ୍ଠ ନାମଗ୍ରହଣ ମଶେଷାଘହରଂ ବିଦୁଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୨ୟ ଅଧ୍ୟାୟ ॥ ୧୪ଶ ଶ୍ଳୋକ ]

**ଛପ୍ପୟ**

ଭକ୍ତ ନ କରେଁ ବିନୋଦ ବିଷୟ ସମ୍ବନ୍ଧ ଜୋର କେଂ ।
ରହେଂ ଉଦାସୀ ସଦା ଜଗତ ସମ୍ବନ୍ଧ ତୋରକେଂ ॥
ଲୈ ଲୈ ହରିକେ ନାମ ପ୍ରେମଗଢ଼ଂ ହଁସଂହଁସାଵେଂ ।
ରାମଭକ୍ତ କରି ହଁସୀ କୃଷ୍ଣକୁଁ ଚୋର ବତାଵେଂ ॥
କୃଷ୍ଣଭକ୍ତ ହଁସୀ ରାମକୁଁ ବାନର ଭାଲୁପତି କହତ ।
ବନେ ବୈରାଗୀ ରାମ ତୋ, ବନ ବନ ମେଂ ରୋଵତ ଫିରତ ॥

ହସି ହସି ଭଗବାନଙ୍କ ନାମ ନେଉଥିବା ପୁରୁଷ ସଂସାର ମଧ୍ୟରେ ଧନ୍ୟ ଅଟେ । ମଣିଷ ଯାହା ଖାଏ, ତାହା ତାକୁ ସଂଗ୍ରହ କରିବାକୁ ପଡ଼େ । ମଣିଷ କର୍ମରତ ପୁରୁଷ । ସେ ରାତି ଦିନ କର୍ମରେ ଲାଗିଥାଏ । ଏଣୁ ହାସବିନୋଦ ସମୟରେ ସେ ଘୃଣିତ କଥା କହୁଥାଏ । ମା', ଭଉଣୀ, ଝିଅ, ସମ୍ବନ୍ଧ ଲଗାଇ ଗାଳିଦିଏ । ଆଖି, ନାକ, କାନ, ମୁଖ ହୃଦୟକୁ ଲକ୍ଷ୍ୟକରି ସେ ଖରାପ ଇଙ୍ଗିତ କରେ; ଯାହାକୁ ଯାହା ନ କହିବା କଥା କହୁଥାଏ । ସେଥିରେ ମଣିଷକୁ ଆନନ୍ଦ ମିଳେ । ଏହିପରି ଖରାପ ଭାବରେ ବିନୋଦରେ ମାତିରହି ସେ ବାୟୁମଣ୍ଡଳକୁ ଦୂଷିତ କରେ । ସାଧୁସନ୍ଥମାନେ ହାସ ବିନୋଦ ସମୟରେ କେବଳ ଭଗବାନଙ୍କ କଥା ଆଲୋଚନା ଓ ଭଗବାନଙ୍କ ଗୁଣର କୀର୍ତ୍ତନ କରନ୍ତି ।

ଶୌନକ ପଚାରିଲେ—ହେ ସୂତ ମହାଶୟ ! କୁହନ୍ତୁ, ପରିହାସ, ହାସ, ଅବସର ସମୟରେ ଭଗବାନଙ୍କ ନାମ କିପରି ନିଆଯାଏ ?

ସୂତ କହିଲେ "ମହାରାଜ ! ଆପଣ କେବେ କେବେ ଦେଖିଥିବେ, ବହୁ ସାଧୁ ସନ୍ଥ ଏପରି ହୁଅନ୍ତି ଯେ, ତାଙ୍କୁ 'ରାଧେଶ୍ୟାମ' ବୋଲି କହିଲେ ଚିଡ଼ି ଉଠନ୍ତି ଓ ମାରିବାକୁ ଗୋଡ଼ାନ୍ତି । ସେମାନଙ୍କୁ ଦେଖିଲେ ପିଲାଏ "ରାଧେଶ୍ୟାମ-ରାଧେଶ୍ୟାମ" କହି ଚିଡ଼ାନ୍ତି, ସେହି ସନ୍ଥ ପିଲାମାନଙ୍କୁ ଆଖି ଦେଖାଇ ଧମକ ଚମକ ଦେଇ ମାରିବାକୁ ଗୋଡ଼ାନ୍ତି ଏବଂ କହନ୍ତି "ସୀତାରାମ କୁହ ସୀତାରାମ" । ପିଲାମାନେ ତାଙ୍କୁ ଚିଡ଼ାଇବା ପାଇଁ ପୁଣି କହନ୍ତି, ବାବାଜୀ ! ରାଧେଶ୍ୟାମ । ସେ କହନ୍ତି—'ନାଇଁ ବାବା ସୀତାରାମ, ପିଲାମାନେ କହନ୍ତି - ବାବାଜୀ ! ତୁମେ "ରାଧେଶ୍ୟାମ, ରାଧେଶ୍ୟାମ" ବୋଲିକୁହ ।

ପ୍ରକୃତରେ ରାଧେଶ୍ୟାମ ପାଇଁ ସେ ବାବାଜୀ ଚିଡ଼ନ୍ତି ନାହିଁ । ଏମାନେ ଭଗବାନଙ୍କର କୌଣସି ନା କୌଣସି ନାମ ନେବାପାଇଁ ଚାହାଁନ୍ତି । ଏଇ ପିଲାମାନଙ୍କ ଦ୍ୱାରା ସେ ଭଗବାନଙ୍କ ନାମ ନିଅନ୍ତି । ସାଧୁସନ୍ଥମାନେ ପରସ୍ପର ମଧ୍ୟରେ ମଧ୍ୟ ଏହିପରି ହାସ ବିନୋଦ କରନ୍ତି । ଏହି ବିଷୟରେ ଶୁଣନ୍ତୁ । ମୁଁ ଆପଣଙ୍କୁ ଏକ ବିନୋଦପୂର୍ଣ୍ଣ ପ୍ରାଚୀନ କାହାଣୀ ଶୁଣାଉଛି । ଏହାକୁ ଆପଣ ମନଧ୍ୟାନ ଦେଇ ଶୁଣନ୍ତୁ ।

ଦୁଇଜଣ ବୈଷ୍ଣବ ଥିଲେ । ଜଣେ ରାମ ଭକ୍ତ ଓ ଆଉ ଜଣେ କୃଷ୍ଣଭକ୍ତ । ସେମାନେଭଗବାନଙ୍କର ପରମ ଉପାସକ । ଭଗବାନଙ୍କ ସାନିଧ୍ୟ ଲାଭ କରିବା ପାଇଁ ବାହାରି ପଡ଼ିଲେ । ଗଲାବେଳେ ଏକମନରେ ଦୁହେଁ ଯାକ ସାଥୀହୋଇ ହସି ଖେଳି ଆନନ୍ଦରେ କଥାବାର୍ତ୍ତା ହୋଇ ବଡ଼ ସହଜରେ ପଥ ଅତିକ୍ରମ କରୁଥାଆନ୍ତି । ସେମାନେ ପରସ୍ପରକୁ ଖୁବ୍ ଭଲ ପାଉଥାଆନ୍ତି ।

ସୂତ କହିଲେ—"ଶୁଣନ୍ତୁ ! ଏପରି ବହୁତଲୋକ ଅଛନ୍ତି, ସବୁବେଳେ ଗୁମ୍ମାରି ବସନ୍ତି । ଏମାନଙ୍କ ମୁହଁକୁ ଚାହିଁଲେ ଭୟ ଲାଗେ । ଏମାନେ ହସନ୍ତିନାହିଁ କି କାହାକୁ କିଛି କହନ୍ତି ନାହିଁ । ସିଂହ ପରି କେବଳ ଗର୍ଜନ କରନ୍ତି, ସାପ ଭଳି ଫଁ ଫଁ ହୁଅନ୍ତି । କାମ ନ ଥିଲେ ଏହିଭଳି ଶୁଷ୍କ ପ୍ରକୃତି ପୁରୁଷ ପାଖକୁ କେହି କେବେ ଯାଆନ୍ତି ନାହିଁ । ଆଉ କେତେକ ସରସ ପ୍ରକୃତିର ପୁରୁଷ ଅଛନ୍ତି, ଯେଉଁମାନଙ୍କର ମୁଖମଣ୍ଡଳ ସବୁ ବେଳେ ଫୁଲ ଭଳିଆ ଚହଟୁଥାଏ । ଏମାନେ କଥା କହିଲେ ହସି କରି କହନ୍ତି । କଥା କଥାକେ ସେମାନଙ୍କ ମୁହଁରୁ ହସର ଜୁଆର ଭାଙ୍ଗିପଡ଼େ । ଏମାନେ ସବୁବେଳେ ସୁନ୍ଦର ଆନନ୍ଦ ପୂର୍ଣ୍ଣ ଭଦ୍ର ଭାଷାରେ କଥାବାର୍ତ୍ତା କରନ୍ତି । ଶୁଣିବା ଲୋକର ହୃଦୟ ଆନନ୍ଦରେ ପୂର୍ଣ୍ଣ ହୋଇଯାଏ । ଇଚ୍ଛା ହୁଏ ଏପରି ଲୋକଙ୍କ ମୁହଁରୁ ସବୁବେଳେ କିଛି ଶୁଣିବା ପାଇଁ । ପିଲାମାନେ ମଧ୍ୟ ଏମାନଙ୍କ ସହ କଥାବାର୍ତ୍ତା କଲେ ଆନନ୍ଦିତ ହୁଅନ୍ତି ଓ ତାଙ୍କୁ ନିଜର ସମସାମୟିକ ବୋଲି ମନେକରନ୍ତି । ଯୁବକମାନେ ମଧ୍ୟ ଏମାନଙ୍କ ପାଖରେ ନିଃସଙ୍କୋଚ ଭାବ ପ୍ରକାଶ କରି ନିଜର ଘର, ସ୍ତ୍ରୀ, ପିଲାଙ୍କୁଆମାନଙ୍କ କଥା ପ୍ରକାଶ କରନ୍ତି । ବୃଦ୍ଧଲୋକେ ଏଭଳି ଲୋକମାନଙ୍କୁ ସଙ୍ଗରେପାଇ ନିଜକୁ ଧନ୍ୟ ମନେ

କରନ୍ତି । ଏଭଳି ପୁରୁଷ ସମସ୍ତଙ୍କର ପ୍ରିୟ । ଏହି ପୁରୁଷ ମନରେ କେବେହେଲେ ବିଷାଦଭାବ ଜାତହୁଏ ନାହିଁ । ଏଭଳି ଲୋକ ସର୍ବଦା ସୁଖୀ ରହେ ତଥା ସଂସାରରେ ପ୍ରତିଷ୍ଠାଲାଭ କରେ । ଏହି ପ୍ରକୃତିର ଲୋକ ଭଗବତ ଭକ୍ତ ହୋଇପାରିଲେ ଆଉ କହିବାକୁ କ'ଣ ଅଛି ? ଦୁଇଜଣଯାକ ବୈଷ୍ଣବ ଏହିପରି ଭାବର ଲୋକଥିଲେ । କଥା କଥାକେ ଆନନ୍ଦ କରି ସୁଖରେ ନିଜର ସମୟ କଟାଉଥିଲେ । ଦୁହେଁ ପରସ୍ପର ପ୍ରତି ଥଟ୍ଟା ପରିହାସ କରି ସମୟ ବିତାଉଥିଲେ । ରାମଭକ୍ତ ଉଠିଲେ ବସିଲେ କଥାକଥାକେ କହେ—"ଜୟ ଜୟ ସୀତାରାମ" । ଅନ୍ୟ ଜଣକ କହେ—"ଜୟ ଶ୍ରୀକୃଷ୍ଣ, ଜୟ ଗୋପାଳ ଲାଲ କୀ ଜୟ" । ରାମଭକ୍ତ କହେ—"ଆରେ ଭାଇ ! ତୁମେ ଏପରି କେଉଁ ଗ୍ୱେରର ନାମ ସବୁବେଳେ ଘଡ଼ିକଘଡ଼ି ନେଉଛ ?" କୃଷ୍ଣଭକ୍ତ କହେ—"ମାଙ୍କଡ଼କୁ ସ୍ୱପନରେ ମଧ୍ୟ ଦେଖିଲେ ଅଶୁଭ, ପୁରାଦିନ ଅଶୁଭରେ ବିତିବ, ତୁମେ ତ ଉଠିଲେ ବସିଲେ ସବୁବେଳେ ବାନରସ୍ୱାମୀ ବାନରନାଥଙ୍କ ନାମ ନେଉଛ ।" ଏପରି ଭାବରେ ସେମାନେ ନିଜ ନିଜ ମଧ୍ୟରେ ଥଟ୍ଟା ପରିହାସ ହୁଅନ୍ତି ।

ଦୁଇଜଣଯାକ ବୃନ୍ଦାବନରେ ଥାଆନ୍ତି । ରାମଭକ୍ତ କହିଲେ—"ଆରେ ଭାଇ ! ଏଇ ଜଙ୍ଗଲରେ କାହିଁକି ରହୁଛ ? ଏଠାରେ କୌଣସି ଶୀତଳଚ୍ଛାୟା ପ୍ରଦାନକାରୀ ଗଛନାହିଁ । ଗଛ ଭିତରେ କରିଲ, ବବୁଲ, ଛୌକର, ହଂସ ଆଦି କଣ୍ଟାଗଛଅଛି । ଏସ୍ଥାନ ସବୁଆଡ଼େ ଆବଡ଼ା ଖାବଡ଼ା । ଅତଏବ ଆମର ଅବାଧକୁଳ ମଣ୍ଡନ ମହାରାଜାଧିରାଜଙ୍କର ରାଜଧାନୀ ଶ୍ରୀ ଅଯୋଧ୍ୟାପୁରୀକୁ ଦର୍ଶନ କରି ଆସ । ତୁମେ ସେ ସ୍ଥାନ ଥରେ ମାତ୍ର ଦର୍ଶନ କରି ଆସିଲେ ଏଇ ଶୁଖିଲା ଜଙ୍ଗଲକୁ ଭୁଲିଯିବ । ଆହାଃ ! ସେଠାରେ ପତିତପାବନୀ ଭଗବତୀ ସରଯୂଙ୍କର ଯେଉଁ ସୁନ୍ଦର ନିର୍ମଳନୀର ସେକଥା କ'ଣ କହିବି । ସେଠାକାର୍ ଲୋକମାନେ ମଧ୍ୟ ବହୁତ ସଭ୍ୟ ଓ ଶିକ୍ଷିତ । ସେଠାରେ କେବଳ ରାଜ ରାଜେଶ୍ୱରଙ୍କର ରାଜଧାନୀ । ଗାଈ ଚରାଉଥିବା ଗୋପାଳ ତଥା ସେମାନଙ୍କର ଗୋଶାଳା ନାହିଁ । ଏ ଯାଗାରେ କୋଠାବାଡ଼ି କିଛି ନାହିଁ ଖାଲି ଯୁଆଡ଼େ ଚାହିଁଲେ ଗୁଳର କୁଡ଼ିଆ ଘର । ଆଜି ଆମେ ଏଇ ଜଙ୍ଗଲରୁ ଚାଲି ସେ ସ୍ଥାନକୁ ପଳାଇଯିବା । ଧରି ଡାଳ ଆଉ ଏଠି ରହିବାନାହିଁ ।"

ଏକଥା ଶୁଣି କୃଷ୍ଣ ଭକ୍ତ କହିଲେ—"ତୁମ ରାଜରାଜେଶ୍ୱରଙ୍କ ପାଖକୁ ଏମିତି ଲୋକମାନେ ଯାଆନ୍ତି, ଯେଉଁମାନଙ୍କର କିଛି ମାଗିବା ପାଇଁ ଇଚ୍ଛା ଥାଏ ଓ ନ୍ୟାୟ ଦରକାର ଥାଏ । ହେଲେ ମଧ୍ୟ ଅଯୋଧ୍ୟାପୁରୀ ଦେଖିବାକୁ ମୋର ଇଚ୍ଛା ଅଛି କାରଣ ସେଇଟା ଆମର ଗୋପାଳଙ୍କର ଶ୍ୱଶୁର ଘର ଓ ମୋର ଅଜାଘର ।

ରାମଭକ୍ତ ବିରକ୍ତ ହୋଇ କହିଲେ—"ଯା ଯା ବଦମାସ । ଏହି ଅଞ୍ଚଳର ରାଜାମାନେ ସେଠାରେ ବିବାହ ହେବା ଦୂରର କଥା, ସେଇ ରାଜମହଲ ଭିତରେ ତାଙ୍କୁ କେହି ପ୍ରବେଶ ମଧ୍ୟ କରାଇ ଦିଅନ୍ତି ନାହିଁ ।

ଏହାପରେ ହସି ହସି କୃଷ୍ଣ ଭକ୍ତ କହିଲେ - "ଆରେ ! ତୁମେ ଶାସ୍ତ୍ରୀୟ କଥାକୁ ମିଛ ବୋଲି ଭାବୁଛ, ହେଲେ ଭାଇ ମୁଁ ଜାଣିନାହିଁ ଯେ ଆମର ଗୋପାଙ୍କର ରାଧା-ରାଣୀଙ୍କ ବ୍ୟତୀତ ଆଉ କାହା କନ୍ୟାସହ ସମ୍ପର୍କ ଥିଲା ବୋଲି । ମୁଁ କାଲୁ ଥରେ ଭାଗବତରୁ ଏହିକଥା ଶୁଣିଥିଲି ଯେ, ଶ୍ୟାମସୁନ୍ଦର ଦ୍ୱାରକାଧୀଶଙ୍କ ବେଶ ହୋଇ କୋଶଳ ରାଜାଙ୍କର କନ୍ୟାକୁ ବିବାହ କରିଥିଲେ । ଯଦି ଭାଇ ମିଛ ଭାବୁଛ ତେବେ ପଣ୍ଡିତମାନଙ୍କୁ ପଚାରି ବୁଝିପାର ।"

ରାମଭକ୍ତ କହିଲେ—ଆଚ୍ଛା ଭାଇ ଠିକ୍ ଅଛୁ ! ତୁମର ଯେମିତ ଭାବନା ବା ଜ୍ଞାନ ସେଥିରେ ଚାଲ ।

ଦୁଇଜଣଯାକ ହସି ଖେଳି ଚାଲିଛନ୍ତି । ନଗର ବାହାରେ ଯେଉଁଠି କର ଆଦାୟ ହୁଏ ସେଠାରେ ଯାଇ ପହଞ୍ଚି ଦେଖିଲେ, ସେଠାରେ ଗୋଟିଏ ବଡ଼ ତରାଜୁ ଟଙ୍ଗା ହୋଇଛି । ରାମଭକ୍ତ କହିଲେ—"ଆମର ସୀତାରାମ-ମହାରାଜ ବହୁତ ଓଜନ ।" କୃଷ୍ଣଭକ୍ତ କହିଲେ - "ଆରେ ଯା ଯା ! ତୁମର ମହାରାଜ ରାତଦିନ ରାଜ-କାର୍ଯ୍ୟରେ ଘାରି ହେଉଛନ୍ତି ସେ କପରି ଓଜନ ହେବେ । ଆମର ଗୋପାଳ ଭାରି ହେବେ, କାରଣ ତାଙ୍କର କିଛି ଚନ୍ତାଦକ ନାହିଁ । ସେ ଆନନ୍ଦରେ ଗାଈ ଚରାଉଛନ୍ତି, ଦୁଧ ପିଉଛନ୍ତି, ଗୀତ ଗାଇ ବଂଶୀ ବଜାଉଛନ୍ତି, କୁସ୍ତିକସରତ କରୁଛନ୍ତି, ଲଢ଼େଇ କରୁଛନ୍ତି ଓ ସର୍ବଦା ଉଦଣ୍ଡ ଭାବରେ ରହିଛନ୍ତି ।" "ଚନ୍ତା ସମାନା ନ ଶରୀର ପୋଷଣମ ।" ଏହାପରେ ରାମଭକ୍ତ କହିଲେ - "ଛାଡ଼ ଭାଇ କ କଥା କହୁଛ, ଚୋର ମଧ୍ୟ ଭାରି ଓଜନଦାର ଭାବରେ ବିବେଚିତ । ଚୋରୀ ମାଲ ପାଇ କିଏ କେତେ ମୋଟା ତାଗେଡ଼ା ହୋଇଯାଆନ୍ତି । ରାଜାଧିରାଜ ମୋଟା ଅଟନ୍ତି ଯିଏକି, ପୁରୁଷାର୍ଥ କରି ଭୋଜନ କରନ୍ତି । ଏହାପରେ କୃଷ୍ଣଭକ୍ତ ଆଗକୁ ଆସି କହିଲେ—ଆମର ବ୍ରଜ-ମଣ୍ଡଳରେ ଥାଇ ତୁମେ ଗୋପାଳଙ୍କୁ ଦୁର୍ବଳ ବୋଲି ଭାବୁଛ, ଆସ ଓଜନ କରିନଅ । ଏହାପରେ କୃଷ୍ଣଭକ୍ତ ଗୋପାଳ କହି ତେଉଁ ତରାଜୁର ଗୋଟିଏ ପଲାରେ ଯାଇ ବସିପଡ଼ିଲେ । ରାମଭକ୍ତ ମଧ୍ୟ "ଜୟ ସୀତାରାମ" କହି ତରାଜୁର ଆଉ ଗୋଟିଏ ପଲାରେ ବସିପଡ଼ିଲେ । ଦେଖୁ ଦେଖୁ କୃଷ୍ଣଭକ୍ତ ବସିଥିବା ପଲାଟି ଉପରକୁ ଉଠିଗଲା । ରାମଭକ୍ତ ବସିଥିବା ପଲାଟି ଏତେ ଓଜନ ହେଲା ଯେ ଭୂଇଁରୁ ବି ଉଠିଲା ନାହିଁ । ରାମଭକ୍ତ ଏହା ଦେଖି ତାଳମାରି କହିଲେ, ଦେଖିଲ ମାଙ୍କନ ଚୋରର ବଳ । ଯିଏ ବଡ଼ ସେ ସବୁବେଳେ ବଡ଼ । ମୁଁ ଆଗରୁ କହିଥିଲି, ରାଜା, ରାଜା — ଦୂତ, ଦୂତ । କାହିଁ ବଣରେ ବୁଲି ଗାଈ ଚରାଉଥିବା ଲୋକ, ଆଉ କାହିଁ ଛତ୍ର ଚାମର ସହିତ ସୁବର୍ଣ୍ଣ ସିଂହାସନ ଉପରେ ବସି ରାଜ୍ୟ ଶାସନ କରୁଥିବା ଲୋକ । ଏମାନଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ।

ଏକଥା ଶୁଣି କୃଷ୍ଣ ଭକ୍ତର ମୁହଁ ଫିକା ପଡ଼ିଗଲା । ସେ ବଡ଼ ଗମ୍ଭୀର ହୋଇ ଗଲେ । ଅନ୍ୟ ଗୋଟିଏ ସ୍ଥାନକୁ ଯାଇ ମୁହଁ ତଳକୁ କରି ଠିଆହୋଇ ରହିଲେ । ଏହି ସମୟରେ ହାତରେ ବାଡ଼ି ଖଣ୍ଡିଏ ଧରି ଶ୍ୟାମସୁନ୍ଦର ଦେଖାଦେଇ ଭକ୍ତଙ୍କୁ କହିଲେ— "କ'ଣ ଭାଇ, ମନ ଦୁଃଖରେ କାହିଁକି ଠିଆ ହୋଇଛ ?"

ପ୍ରେମ ସହକାରେ ରାଗିକରି ଭଗବାନଙ୍କୁ ଭକ୍ତକହିଲେ-"ଯାଅ, ମୋ ସହିତ କଥାବାର୍ତ୍ତା କରନାହିଁ । ତୁମେ ଆଜି ମୋ ଦୁନିଆକୁ ବୁଡ଼ାଇଦେଇଛ । ଏପରି ହାଲୁକା ହୋଇଗଲ, ଯେତେବେଳେ ତୃଣାବର୍ତ୍ତ ଉଠାଇନେଇ ଯାଇଥିଲା ସେତେବେଳେ ପଥର ଭଳିଆ ଓଜନଦାର ହୋଇ ଯାଇଥିଲ । କେତେବଡ଼ ଗୋବର୍ଦ୍ଧନକୁ ସାମାନ୍ୟ ଆଙ୍ଗୁଠିରେ ଧରି ରଖିଥିଲ ଆଉ ଏବେ ମୋପାଇଁ ଫୁଲଠାରୁ ବି ଅଧିକ ସୁକୁମାର ହୋଇଗଲ" ।

ଗୋପାଳ ଅତ୍ୟନ୍ତ ପ୍ରେମଭାବରେ କହିଲେ—"ପ୍ରଥମେ ଟିକିଏ ମୋକଥା ଶୁଣ । ସୀତା ଓ ରାମ ଦୁହେଁ ବର ଓ କନ୍ୟା । ମୁଁ ଏକୁଟିଆ ବାଳକ, କୁହ ଦେଖି ସେହି ଦୁଇଜଣଙ୍କ ସହ ମୁଁ ଏକା କିପରି ସମାନ ହୋଇ ପାରିବି ! ଟିକିଏ ଭଲ ଭାବରେ ବୁଝ, ମୋତେ ଯଦି ତୁମେ ମୋର କନ୍ୟା ସହ ଡାକିଥାଆନ୍ତ ତେବେ ମୋର ପରାକ୍ରମ ଦେଖିଥାଆନ୍ତ । ମିଥିଳାର ଦୁର୍ବଳ, ପତଳା ତଥା ଅତ୍ୟନ୍ତ ସୁକୁମାରୀ ପାଦରେ ବୁଲି ବୁଲି କରୁଥିବା, ଦୁଧ ଦହି ଖାଉଥିବା ଓ ଦହିରୁ ମାଖନ ବାହାର କରୁଥିବା ଗଉଡୁଣୀଠାରୁ କେବେହେଲେ ଓଜନଦାର ହୋଇ ପାରିବ ନାହିଁ । ଭୁଲ ତୁମର ନା ମୋର ?"

ଏକଥାଶୁଣି କୃଷ୍ଣଭକ୍ତ ଜୟ ଜୟ ରାଧେଶ୍ୟାମ କହି ଦୌଡ଼ି ଯାଇ ପୁଣି ତରାଜୁ ପଲାରେ ବସିପଡ଼ିଲା ଓ ବଡ଼ ପାଟିକରି ରାମଭକ୍ତକୁ କହିଲା-"ଏବେ ଆସ ଓ ପରୀକ୍ଷା କରିଦେଖ ।"

ରାମଭକ୍ତ ହସିକରି କହିଲା-"ଭାଇ ! ଗଣ୍ଡଗୋଳ ଆଉ କରନାହିଁ । ତୁମକୁ କିଏ ଶିଖାଇ ଦେଇଛି, ବାଜି କେବଳ ଥରେ ପକାଯାଏ । ଏକାଥରକରେ ଜୟ ପରାଜୟ ନିର୍ଣ୍ଣୟ କରାଯାଏ । ଯାହା ହୋଇସିବାର କଥା ହୋଇ ଗଲାଣି । ଆଉ ପୁନରାବୃତ୍ତି କରିବାପାଇଁ ତୁମର ଦାବି ନାହିଁ—ଏହା କହି ରାମଭକ୍ତ ଆଗକୁ ଚାଲିଲେ । ନିଜର ଗଡ଼ୁ କମଣ୍ଡଳୁ ଉଠାଇ ତା ପଛେ ପଛେ କୃଷ୍ଣଭକ୍ତ ଚାଲିଲେ ।

ଦୁହେଁଯାକ ନଗର ପାର ହୋଇ ନାନା ପ୍ରକାର ଦୁବ ଘାସ ପରିପୂର୍ଣ୍ଣ ଯମୁନା କୂଳରେ ପହଞ୍ଚିଲେ । ମରକତ ମଣି ସଦୃଶ ଏହି କଅଁଳଦୁବ ତରଣୀ ତନୁଜାର କୂଳରେ ନୀଳବର୍ଣ୍ଣର ଜଳ ବହୁଦୂରରୁ ଅତ୍ୟନ୍ତଦୀପ୍ତିମନ୍ତ ହୋଇ

ଶୋଭା ପାଉଥିଲା । ଏହି ସୁନ୍ଦର ଘାସକୁ ଦେଖି ରାମଭକ୍ତ କହିଲେ — "ଆହା ! କେଡ଼େ ସୁନ୍ଦର ଘାସ । ଏଇ ଘାସରେ ଆମର ରାଜାଧିରାଜ ଶ୍ରୀଚକ୍ରବର୍ତ୍ତୀ କୌଶଲ୍ୟା କିଶୋର ଅବଶ୍ୟ ବିହାର କରିବା କଥା । ଚକ୍ରବର୍ତ୍ତୀଙ୍କ ଘୋଡ଼ା ଏହି ଘାସକୁ ଖାଇଲେ ଅତ୍ୟନ୍ତ ଆନନ୍ଦିତ ହେବ ।"

କ୍ରୋଧାନ୍ୱିତ ହୋଇ କୃଷ୍ଣଭକ୍ତ କହିଲେ-"ଯାଅ, ଘୋଡ଼ା ଚରାଇଲାବାଲା । ଘୋଡ଼ା ଏଇ ଘାସରେ ପାଦ ପକାଇଲେ ଆମ ଗୋପାଳଙ୍କ ଗାଈ ତାର ମୁନିଆଁ ମୁନିଆଁ ଶିଙ୍ଗରେ ଘୋଡ଼ା ପେଟକୁ ଭୁଷିଦେବ । ଅନ୍ୟର ଘାସ ଉପରେ ଘୋଡ଼ା ଚରାଇବା ପାଇଁ କେବେ ହେଲେ ମନରେ ଚିନ୍ତା କରନାହିଁ ।"

ରାମଭକ୍ତ ରାଗିଯାଇ କହିଲେ-ଦେଖଭାଇ ! "ଟିକିଏ ମୁହଁସମ୍ଭାଳି କଥାବାର୍ତ୍ତା କର । ଏ ଘାସ ଅନ୍ୟକାହାର ବୋଲି ଭାବୁଛ ? ଆମର ଚକ୍ରବର୍ତ୍ତୀ ମହାରାଜ ଏହି ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ସ୍ୱାମୀ । ସାରା ସଂସାର ତାଙ୍କ ଅଧୀନରେ । ସେ ସମସ୍ତଙ୍କର ପ୍ରଭୁ । ସେ କେବଳ ଏହି ବଣର ନୁହଁନ୍ତି, ତିନଲୋକର ଈଶ୍ୱର । ସେ ଚାହିଁଲେ ଯେକୌଣସି ସ୍ଥାନରେ ତାଙ୍କର ଘୋଡ଼ା ଚରାଇ ପାରିବେ, ତାଙ୍କୁ ବାଧା ଦେବାପାଇଁ କାହାରି ଶକ୍ତିନାହିଁ ।"

କୃଷ୍ଣଭକ୍ତ କହିଲେ –"ଦେଖ ଭାଇ ! ତୁମେ ବହୁତ ବଡ଼ ବଡ଼ କଥା କହିବା ବନ୍ଦକର । ତୁମର ରାଜା ତିନଲୋକର ଅଧୀଶ୍ୱର ହୋଇ ପାରନ୍ତି କିନ୍ତୁ ଆମର ମଥୁରା ତିନଲୋକରୁ ଅଲଗା । ଏଠାକୁ କାହାର ଘୋଡ଼ା ଆସିଲେ ତାର ପେଟ ଫାଡ଼ି ହୋଇଯିବ । ଆଗକୁ ଟିକିଏ ଯାଇ ପାରିବ ନାହିଁ ।"

ରାମଭକ୍ତ ରାଗିଯାଇ କହିଲ—"ତୁମେ ଆମ୍ଭ ଘୋଡ଼ାକୁ ମାରିବା ପାଇଁ କିଏ ? ଏଠାରେ ଅବଧକୁଳ-ଭୂଷଣ ଦଶରଥନନ୍ଦନ ଚକ୍ରବର୍ତ୍ତୀ କୌଶଲ୍ୟାନନ୍ଦବର୍ଦ୍ଧନଙ୍କର ଘୋଡ଼ା ଚରିବେ । ତା' ଆଗକୁ ଗାଈ ଆସିଲେ ଭୟରେ ପଳାଇଯିବ; ଯେପରି ପବନ ଆସିଲେ ମେଘଖଣ୍ଡ ଭାସିଯାଏ ।"

ଏହାପରେ କୃଷ୍ଣଭକ୍ତ ରାଗିଯାଇ କହିଲେ— "ଆପଣ ଜଭରେ ତାଲି ପକାଇ ରଖନ୍ତୁ । ସେଥିରୁ ଘୋଡ଼ା ଫିଟିକରି ଯାଇ ପାରିବ ନାହିଁ । ଖାଇବା ତ ଦୂରରକଥା ଘାସ ମୁହଁ ଦେଖିପାରିବ ନାହିଁ ।"

ଏହାଶୁଣି ରାମଭକ୍ତ ରାଗିଯାଇ କହିଲେ—"ଦେଖ ! ଯାହା କହୁଛ, ତାହା କର । ଘୋଡ଼ା ନିଶ୍ଚୟ ଚରିବ ।"

କୃଷ୍ଣଭକ୍ତ – ଘୋଡ଼ା ଚରିପାରିବନାହିଁ, ଚରିପାରିବନାହିଁ !

ରାମଭକ୍ତ—ଚରିବ, ଚରିବ ନିଶ୍ଚୟ ଚରିବ । "ଅରେ ନୁହେଁ ହଜାର ଥର ଚରିବ, ତୁମେ ଯାହା ଚାହଁ ତାହା କର ।"

କୃଷ୍ଣଭକ୍ତ ରାମଭକ୍ତଙ୍କୁ ଚାପୁଡ଼ାଟାଏ ପକାଇଲା । ରାମଭକ୍ତ ଟିକିଏ ବଳବାନ ଥିଲା, ସେ ଏମିତି ଏକ ଧକ୍କା ପକାଇଲା ଯେ କୃଷ୍ଣଭକ୍ତ ତଳେ ଓ ରାମଭକ୍ତ ଉପରେ । ସେ ପଚାରିଲା, "ଏବେ କୁହ ଘୋଡ଼ା ଚରିବ ନା ଗାଈ ଚରିବ ?"

ତଳେ ପଡ଼ି କୃଷ୍ଣଭକ୍ତ ସବୁକିଛି ଭୁଲିଗଲା । କୌଣସି ଉପାୟ ନ ପାଇ ଚିତ୍କାର କରିବାକୁ ଲାଗିଲା—"ଗୋପାଳ ! ଆସି ଦେଖନ୍ତୁ, ସବୁ ଘାସ ଆମର ଅଧିକାର ହୋଇଗଲା । ଘୋଡ଼ା ଆଉ ଘାସ ଚରିବାକୁ ପାଇବ ନାହିଁ ।"

କୃଷ୍ଣଭକ୍ତ ନିଜ ପ୍ରଭୁଙ୍କୁ ଡାକିବାର ଦେଖି ରାମଭକ୍ତ ମଧ୍ୟ ଡାକିବାକୁ ଲାଗିଲା । "ଅବଧକୁଳମଣ୍ଡନ ରାଜାଧିରାଜ ଶ୍ରୀରଘୁକୁଳତିଳକ ! ସବୁ ଘାସ ଉପରେ ଗୋପାଳଙ୍କର ଅଧିକାର ହୋଇଗଲାଣି । ଆପଣ ଶୀଘ୍ର ଆସି ଦଖଲ କରି ନିଅନ୍ତୁ ।"

ଏତିକିବେଳେ ଗାଈ ଗୋଠଟାଏ ଆସିବାର ଦେଖାଗଲା । ସବଳ, ପୁଷ୍ଟ, ସୁନ୍ଦର ଗାଈ ବାଛୁରୀମାନଙ୍କ ସହିତ ମୁକୁର ମୁକୁଟଧାରୀ ଗୋପାଳ ଠେଙ୍ଗାଟିଏ ଧରି ଆସୁଛନ୍ତି । ସେ ଲଢ଼ାଇ କରୁଥିବା ବୈଷ୍ଣବମାନଙ୍କୁ ଦେଖି ଶାନ୍ତ ସରଳ ଭାବରେ କହିଲେ – "କାହିଁକି ତୁମେ ଲଢ଼ାଇ ଝଗଡ଼ା କରୁଛ ?"

କୃଷ୍ଣ ଭକ୍ତଙ୍କର ଆନନ୍ଦର ସୀମା ରହିଲାନାହିଁ । ସମ୍ମୁଖରେ ନିଜର ପ୍ରଭୁଙ୍କୁ ଦେଖି ଗର୍ଜନ କରିବାକୁ ଲାଗିଲା । ରାମଭକ୍ତ ଭୟରେ କୃଷ୍ଣଭକ୍ତଙ୍କୁ ଛାଡ଼ିଦେଇ ଅପରାଧୀ ଭାବରେ ଠିଆହୋଇ ରହିଲା ।

ଭଗବାନ ପଚାରିଲେ—"ଆରେ ! ତୁମେମାନେ ବୈଷ୍ଣବହୋଇ ଲଢ଼ାଇ ଝଗଡ଼ା କାହିଁକି କରୁଛ ?!"

ପାଖକୁ ଆସି କୃଷ୍ଣଭକ୍ତ କହିଲେ – "ଲଢ଼ାଇଝଗଡ଼ା ହେବାର କଥା ମହାରାଜ । ଏ କହିଲେ ଘାସରେ ଘୋଡ଼ା ଚରିବ, ଘୋଡ଼ା କେମିତି ଚରିବ ? ଘାସ ତ ଗାଈମାନଙ୍କ ପାଇଁ । ଏଠାକୁ ଘୋଡ଼ା ଆସିଲେ ତା'ର ଦଶା କ'ଣ ହେବ ।"

ଏକଥା ଶୁଣି ଭଗବାନ ଟିକିଏ ହସିଦେଇ କହିଲେ—"ଆରେ ଭାଇ ! ଲଢ଼ାଇ ଝଗଡ଼ା କରିବା କ'ଣ ଦରକାର । ଗାଈମାନଙ୍କ ନିମନ୍ତେ ଘାସ, ସେମାନେ ଚରିବେ । ଲଢ଼ାଇ ନକରି ଭଗବାନଙ୍କ ନାମ ନିଅ ।"

ଏଇ କଥାବାର୍ତ୍ତା ଭିତରେ ଗାଈମାନେ ଆଗକୁ ଚାଲିଲେ । ତାଙ୍କୁ ବାରଣ କରିବା ନିମନ୍ତେ ଗୋପାଳ ଆଗକୁ ଚାଲିଯାଇ କିଛି ସମୟପରେ ଅଦୃଶ୍ୟ ହୋଇଗଲେ ।

ଏହି ସମୟରେ ବୈଷ୍ଣବମାନେ ଦେଖିବାକୁ ପାଇଲେ, ଗୁଡ଼ାଏ ବଡ଼ ବଡ଼ ଧଳା ରଙ୍ଗର ଘୋଡ଼ା ଖୁବ୍ ଜୋରରେ ତାଙ୍କ ଆଡ଼କୁ ଦୌଡ଼ି ଦୌଡ଼ି ଆସୁଛନ୍ତି । ଆଗରେ ଆସୁଥିବା ଘୋଡ଼ା ଉପରେ କିରୀଟ ମୁକୁଟ ଧାରଣ କରି, ଧନୁର୍ବାଣ ସହ ଅବଧ କୁଳତିଳକ, କୌଶଲ୍ୟା-ଆନନ୍ଦବର୍ଦ୍ଧକ ରଘୁକୁଳ ଚୂଡ଼ାମଣି ଶ୍ରୀରାଘବ ବିରାଜମାନ । ପଛ ତିନୋଟି ଘୋଡ଼ାରେ ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ଅଙ୍ଗରକ୍ଷକ ଭାବରେ ଆସୁଛନ୍ତି । ମହାରାଜାଧିରାଜ ଚକ୍ରବର୍ତ୍ତୀ ଶ୍ରୀ ଅବଧେଶ ପଚାରିଲେ— "ଆରେ ଭାଇ ! କଥା କ'ଣ ?"

ରାମଭକ୍ତ ରାଗିକରି ଥିଲେ । ମୁହଁ ବଙ୍କେଇ ପାଖକୁ ଆସି କହିଲେ—କଥା ହେଉଛି ପଥର । ଆଉ କଥା କ'ଣ । ଯାହା ହେବାର ଥିଲା ହୋଇଗଲା । ଘାସ ଉପରେ ଗୋପାଳଙ୍କର ପୂରା ଅଧିକାର ହୋଇଗଲା । ଏବେ ଗାଈ ଚରିବେ । ଯିଏ ଆଗରେ ଆସିଲେ ସେ ପାଇଗଲେ ।

ଶ୍ରୀରାଘବ ଅତ୍ୟନ୍ତ ସ୍ନେହ ପ୍ରଦର୍ଶନ କରି କହିଲେ— "ଭାଇ ! ମୋ କଥା ଟିକିଏ ଶୁଣ ! ଦେଖ, ଗୋପାଳ ସବୁବେଳେ ବଣରେ ବୁଲନ୍ତି, ସେ ଭକ୍ତ ଡାକ ଶୁଣିବା ପାଇଁ ଶୀଘ୍ର ଦୌଡ଼ି ଆସିଲେ । ତୁମେ ମୋତେ ସମ୍ରାଟ ନାମରେ ଡ଼ାକିଲ । ଏଣୁ ଏହି କଥା ପ୍ରଥମେ ମନ୍ତ୍ରୀଙ୍କ ନିକଟକୁ ଗଲା, ତା'ପରେ ସାତସ୍ତର ଦେଇ ଅନ୍ତଃପୁରକୁ ଖବର ଗଲା । ସେଠାରୁ ଘୋଡ଼ାମାନଙ୍କୁ ପ୍ରସ୍ତୁତ କରିବା ନିମନ୍ତେ ଆଦେଶ ଦିଆଗଲା । ଘୋଡ଼ା ପ୍ରସ୍ତୁତ ହୋଇସାରିବା ପରେ ମୁଁ ରାଜସିକ ବସ୍ତ୍ର ପରିଧାନ କରି ଆସିଲି । ଏହି ସମୟ ମଧ୍ୟରେ ଗୋପାଳ ଅଧିକାର କରି ନେଇଗଲେ । ଆଉ ଲଢ଼େଇ କରିବା ଦରକାର ନାହିଁ । ଅଧାଭାଗରେ ଗାଈ ଚରିବେ, ଆଉ ଅଧିକରେ ଘୋଡ଼ା ଚରିବେ ।

ଦୁହେଁ ଆଗକୁ ଚାଲିଲେ । ଚାଲିଚାଲି ଅଯୋଧ୍ୟାର ଏକ ପାଖରେ ପହଞ୍ଚିଲେ । ଡଙ୍ଗାରେ ସେପାରିକୁ ଯିବାକୁ ହୁଏ । ଦୁହେଁ ଡଙ୍ଗାରେ ବସି ଆର ପାଖରେ ପହଞ୍ଚିଲେ । ସେପାରିରେ କିଛି ଛୋଟ ଛୋଟ ନାଳ ଥାଏ । ନାଳରେ କିଛି ପାଣି ଥାଏ । ଲୋକ-ମାନେ ପାଣିରେ ପଶି ସେଇ ନାଳକୁ ପାରି ହୋଇଯାଆନ୍ତି । ରାମଭକ୍ତ ମଧ୍ୟ ନାଳରେ ପଶି ପାର ହୋଇଗଲା । କେବଳ କୃଷ୍ଣଭକ୍ତ ନାଳ ଆରପାରିରେ ଠିଆ ହୋଇ ରହିଲା । ରାମଭକ୍ତ ହସିହସି କହିଲା "ତୁମେ ଏତେ ବଳୁଆ ହୋଇଛ, ପଶି କରି ନାଳଟାକୁ ପାରିହୋଇ ଆସିପାରୁନ ! କୃଷ୍ଣଭକ୍ତ କହିଲା— "କିଏ ଯଦି କାନ୍ଧରେ ବସାଇ ମୋତେ ନାଳ ପାରିକରି ଦିଅନ୍ତା, ମୁଁ ତାକୁ ଟଙ୍କେ କି ଦି' ଟଙ୍କା ଦେବାକୁ ରାଜିଅଛି । ରାମଭକ୍ତ କହିଲା - "ଏହା ହେଉଛି ମହାରାଜାଧିରାଜଙ୍କର ରାଜଧାନୀ, ଏଠାରେ ବଳବାନ ଲୋକର ଜାଣି ଦରକାର ପଡ଼େ । ଏଣୁ ତୁମେ ନିଜର ବଳ ଓ ସାହସ ଦେଖାଇ ନାଳପାଣିରେ ପଶି ଚାଲିଆସ ।"

କୃଷ୍ଣଭକ୍ତ କହିଲେ—ଆଉ କ'ଣ କରିବ ? ଏଠାକୁ ଆସି ମୁଁ ବଡ଼ ଅସୁବିଧାରେ ପଡ଼ିଯାଇଛି । ମୁଁ ନାଳ ପାଣିରେ ପଶି ଯିବା ପାଇଁ ଭୟ କରେ ନାହିଁ । ଯମୁନା ନଦୀ ଜଳପୂର୍ଣ୍ଣ ହୋଇଥିଲେ ମୁଁ ପଶି ସେପଟକୁ ଯିବାପାଇଁ ପ୍ରସ୍ତୁତ, କିନ୍ତୁ ମୁଁ ଶୁଣିଛି ଯେ ସରଯୂ ଜଳ ଶରୀର ସ୍ପର୍ଶ କଲେ ପୁଣ୍ୟଲୋକ ପ୍ରାପ୍ତ ହୁଏ । ମୁଁ ପୁଣ୍ୟଲୋକକୁ ଯିବାପାଇଁ ଚାହେଁନାହିଁ, ମୁଁ ଗୋଲକ ବୈକୁଣ୍ଠକୁ ଯିବାପାଇଁ ଚାହେଁ । ଏଣୁ ମୁଁ ସରଯୂ ଜଳ ସ୍ପର୍ଶ କରିବାପାଇଁ ଇଚ୍ଛା କରୁନାହିଁ ।

ଏକଥା ଶୁଣି ରାମଭକ୍ତ କୃଷ୍ଣଭକ୍ତ ପାଦତଳେ ପଡ଼ିଯାଇ କହିଲା ତୁମର ଏଭଳି ନିଷ୍ଠାପାଇଁ ତୁମେ ଧନ୍ୟ । ମୋର ଏପରି ନିଷ୍ଠା ହେଉ, ଭଗବାନ ମୋତେ ଆଶୀର୍ବାଦ କରନ୍ତୁ । ଏହିଭଳି ଭାବରେ ଦୁହେଁ ରାମ ଓ କୃଷ୍ଣଙ୍କୁ ନେଇ ହସୁଥିଲେ ହସପରିହାସ କରି ସମୟ ଅତିବାହିତ କରୁଥିଲେ ।

ସୂତ କହିଲେ "ଶୁଣନ୍ତୁ ! ଯେଉଁମାନେ ହାସ ପରିହାସରେ ଭଗବାନଙ୍କ ନାମ ନିଅନ୍ତି ସେମାନଙ୍କର ମଙ୍ଗଳ ସାଧିତ ହୁଏ । ଭଗବାନ ସେମାନଙ୍କ ଉପରେ ସର୍ବଦା ଦୟା କରନ୍ତି । ସେମାନଙ୍କୁ ଆପଣାର କରି ରଖନ୍ତି । ଯେଉଁମାନେ ଭଜନର ପଦ ଶେଷରେ 'ରାମ' ବା 'କୃଷ୍ଣ' ନାମ ଲଗାଇ ଭଜନ ଗାନ କରନ୍ତି, ଯେଉଁମାନେ ଅବହେଳାରେ କହନ୍ତି, ରାମ ରାମ କହିବାଦ୍ୱାରା କ'ଣ ଲାଭ ? କୃଷ୍ଣ କୃଷ୍ଣ ଉଚ୍ଚାରଣ କର । ଏପରି କହିବା ଲୋକ ମଧ୍ୟ ଉଦ୍ଧାର ପାଇଯାଏ ।

—ଛପ୍‌ପୟ—

**ରାଗ ଅଲାପନ ହେତୁ ରାମ କୋ ନାମ ଉଚାରେଂ ।**
**ଚିଢ଼େଂ କହି କହି ରାମ ଭକ୍ତକୁଁ ତାନେ ମାରେଁ ॥**
**ରାମ କହତ ଲଡ଼ି ଜାଇଁ ରାମ କହି ପ୍ରେମ ଜତାୟେଂ ।**
**ତେ ନର କବହୁଁ ଭୂଲି ନରକକୀ ଗୈଲ ନ ଜାୟେଂ ॥**
**ବିନ ଇଚ୍ଛାଉ ଛୁଇପୈ, ଚିନଗାରୀ ପାବକ ପରୈ ।**
**ଜରେ ରୁଇ ତୈସ୍ ଅବସି ହୀ, ନାମ ନାଶ ଅଘ ତସ କରୈ ॥**



## ହରି ଉଚ୍ଚାରଣ ମାତ୍ରକେ ପାପ ହରଣ

ପତିତଃ ସ୍ଖଳିତୋ ଭଗ୍ନଃ ସଂଦଷ୍ଟ ସ୍ତପ୍ତ ଆହତଃ ।
ହରିରିତ୍ୟବଶେନାହ ପୁମାନ୍ନାର୍ହତି ଯାତନାମ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୨ୟ ଅଧ୍ୟାୟ ॥ ୧୫ ଶ୍ଳୋକ ]

ଛପ୍‌ପୟ

ଗିରତ ପରତ ମଗ ଚଲତ ରପଟି କୀଚଡ଼ମହଁ ଜାଓଁ ।
ଅଙ୍ଗ ଭଙ୍ଗ ହ୍ୱୈ ଜାୟ ଜୀବ ହିଂସକ ହୁ ସତା ଓଁ ॥
କାଟେ କୋଈ-ଆଇ-ଦେହ ମହଁ ପୀଡ଼ା ହୋଓଁ ।
ଦୂର କୋ ହୋଓଁ ବେଗ ଚେତନାକୁଁ ନର ଖୋ ଓଁ ॥
କୈସେ ହୂଁ ନର ବିବଶ ହ୍ୱୈ, ହରି ଉଚାରନ କରଗେ ।
ନାମ ପ୍ରତିଷ୍ଠା କେ ନିମିତ, ଅଘ ତିନକେ ହରି ହରଂଗେ ॥

ଯାହାର ଅସ୍ତିତ୍ୱ ଅଛି ସେ ନିଜର ନାମ ଚାହେଁ । ଯେ ନିଜର ନାମ ଇଚ୍ଛାକରେ ନାହିଁ ତାର ଅସ୍ତିତ୍ୱ ନାହିଁ । ଜ୍ଞାନୀମାନଙ୍କ ଦୃଷ୍ଟିରେ ନାମ ରୂପ ମିଥ୍ୟା, ଏଣୁ ସେମାନେ କିଛି ଇଚ୍ଛା କରନ୍ତି ନାହିଁ । ଜ୍ଞାନୀମାନେ ମଧ୍ୟ ମୋକ୍ଷ ଇଚ୍ଛା କରନ୍ତି ନାହିଁ । ବାଦ୍ଧ ହୋଇଥିଲେ ସେମାନେ ମୋକ୍ଷ ଇଚ୍ଛା କରନ୍ତେ । ସେମାନଙ୍କ ଦୃଷ୍ଟିରେ 'ବ୍ରହ୍ମ' ବ୍ୟତୀତ ଅନ୍ୟ କୌଣସି ପଦାର୍ଥ ନାହିଁ । କିନ୍ତୁ ଭକ୍ତମାନଙ୍କ ଦୃଷ୍ଟିରେ ଦୁଇଟିଯାକ ବସ୍ତୁ ସତ ବୋଲି କହେଁତ । ଭଗବାନଙ୍କର ନାମ ଓ ରୂପ ଅଛି । ମୁହଁରୁ ଭଗବାନଙ୍କ ନାମ ଉଚ୍ଚାରଣ ହୁଏ, ହୃଦୟ ମଧ୍ୟରେ ତାଙ୍କର ଅନୁପମ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟପୂର୍ଣ୍ଣ ମନମୋହିନୀ ରୂପମାଧୁରୀ ବିରାଜିତ ହୋଇ ରହେ । ଯାହାକୁ ମନ ଇନ୍ଦ୍ରିୟଗଣ ତାଙ୍କ ନାମ ଚିନ୍ତା କରିବା-ପାଇଁ ମଗ୍ନ ରହିଛନ୍ତି, ଏସବୁ ବ୍ୟତୀତ ଭକ୍ତ ମୋକ୍ଷ ବା ବୈକୁଣ୍ଠ ଇଚ୍ଛା କରେ ନାହିଁ । ଏମାନଙ୍କର ପୁନର୍ଜନ୍ମ ପାଇଁ ଭୟ ନାହିଁ । ଜନ୍ମ ଓ ମୃତ୍ୟୁକୁ ଭୟ ନାହିଁ । ସେମାନଙ୍କ ମତରେ, ଆମେ ଲକ୍ଷେ ଥର ଜନ୍ମ ହେଉ । ମନୁଷ୍ୟ, ପଶୁପକ୍ଷୀ, କୀଟ, ପତଙ୍ଗ, ଶୂକର, କୁକ୍କୁର ଯେଉଁ ଯୋନିରେ ଜନ୍ମ ଲାଭ କଲେ ମଧ୍ୟ ସେମାନଙ୍କ ମନରେ ଅନୁଶୋଚନା

ନଥାଏ । କାରଣ କୃଷ୍ଣ ନାମରସ ପାନ କରିବାପାଇଁ ସୁଯୋଗ ମିଳେ । ତାର ପରିମାଣ ବେଶୀ । ମନ ନିଜ ଆୟତ୍ତରେ ରହିପାରେ, ଏଣୁ ସାଧନର ଆବଶ୍ୟକତା ପଡ଼େନାହିଁ, ଏଥିରେ ସମସ୍ତ ଖେଳର ପରିସମାପ୍ତି ଘଟେ । ଭଗବାନଙ୍କ ଆଡ଼କୁ ମନ ଯାଏ ନାହିଁ, କାମନା ଆଡ଼କୁ ମନ ଧାଇଁଯାଏ । ଅଜାଣତରେ ସେହି ନାମ ଉଚ୍ଚାରଣ ହୋଇଯାଏ । ନିଜ ଇଚ୍ଛାରେ ନୁହେଁ, ଅନିଚ୍ଛାରେ ହୋଇଥାଏ, ଜ୍ଞାତସାରରେ ନ ହୋଇ ଅଜ୍ଞାତ-ସାରରେ ହୋଇଯାଏ । ଅନ୍ଧାରରେ ସାପ ଶୋଇଛି, ଅଜ୍ଞାନତାବଶତଃ ତା' ଉପରେ ଗୋଡ଼ ପଡ଼ିଗଲେ ସେ ଦଂଶନ କରିଦିଏ ; କାରଣ ତାହା ସାପର ସ୍ୱଭାବ । ଠିକ୍ ସେହିପରି ପାପକୁ ହରଣ କରିବା ହରିନାମର ସ୍ୱଭାବ । ତେବେ ଏହାର ସେବନ କାହିଁକି ନ କରିବା । ତାହା ନିଜର ସ୍ୱଭାବକୁ ଛାଡ଼ିପାରେ ନାହିଁ, ସ୍ୱଭାବକୁ ଧରି ରଖେ ।

ଶୁକଦେବ କହିଲେ – "ରାଜା ! ଯମଦୂତଙ୍କୁ ଧମକ ଦେଇ ଭଗବାନ ନାରାୟଣ-ଙ୍କର ପ୍ରିୟଦୂତ କହିଲେ "ଆରେ, ତୁମେମାନେ ଏହି ନାରାୟଣ ପରାୟଣ ମହାତ୍ମା ପୁରୁଷକୁ ବାନ୍ଧି ନରକକୁ ନେଇ ଯିବାପାଇଁ ଇଚ୍ଛାକରୁଛ ? ଛି, ଛି, ବଡ଼ ଦୁଃଖର ବିଷୟ । ଯଦି ଧର୍ମରାଜଙ୍କ ଶାସନରେ ଏପରି ଅଧର୍ମ କାର୍ଯ୍ୟ ହେବ ତେବେ ସଂସାରରୁ ଧର୍ମ ଲୋପ ପାଇଯିବ ।"

ଏହାପରେ ଯମଦୂତ କହିଲେ—"ଆପଣ ଠିକ କଥା କହୁଛନ୍ତି ମହାତ୍ମନ ! ମାନୁଛୁ, ଏ ଲୋକ ଭୁଲରେ ପୁତ୍ର ନାମରେ ଭଗବାନଙ୍କ ନାମ ଉଚ୍ଚାରଣ କରିଅଛି । ଏହା ଆମେ ଗ୍ରହଣ କରୁଛୁ । କିନ୍ତୁ ଏ ଲୋକ ନିର୍ମଳହୃଦୟରେ ଭଗବାନଙ୍କ ନାମ ନେଇନାହିଁ । ବିବଶ ହୋଇ କଷ୍ଟ ଯନ୍ତ୍ରଣା ସହ୍ୟ କରି ନପାରି ଅଚେତ ଅବସ୍ଥାରେ ଭଗବାନଙ୍କ ନାମ ନେଇଅଛି । ମହାରାଜ ! ନିୟମ ଅଛି ଅଚେତନ ଅବସ୍ଥାରେ ଯେଉଁ ଲୋକ ଦସ୍ତଖତ କରି ନିଜର ଚଳନ୍ତି ସମ୍ପତ୍ତିକୁ ହସ୍ତାନ୍ତର କରିଥାଏ ତାହା ଦାନ ନିୟମର ବିରୋଧ ଭାବରେ ବିବେଚିତ ।"

ବିଷ୍ଣୁଦୂତ କହିଲେ—"ଭାଇ ! ଏ କଥା ଲୌକିକ ସମ୍ପତ୍ତି ସମ୍ବନ୍ଧରେ ଠିକ୍ ଭାବରେ ବିବେଚିତ, କିନ୍ତୁ ନାମ ସମ୍ପର୍କରେ ଏହା ଗ୍ରହଣୀୟ ନୁହେଁ । ନାମ ବିଷୟରେ ଏ କଥା କୁହାଯାଏ ଯେ ନାମ କୌଣସି କାରଣରୁ ମୁହଁରୁ କେବଳ ବାହାରିଥାଏ । ନିଜ ଆୟତ୍ତରେ ରହି କେହି ଭଗବାନଙ୍କ ନାମକୁ ଉଚ୍ଚାରଣ କରେ, ନଚେତ୍ ଅଣାୟତ୍ତ ହୋଇ ମନୁଷ୍ୟ ବିଷୟ ସାମଗ୍ରୀକୁ ଏକତ୍ରିତ କରି ଏଥିନିମନ୍ତେ ଯତ୍ନବାନ ହୋଇଥାଏ । ଅବଶ ଅବସ୍ଥାରେ ଯାହାର ମୁହଁରୁ ଭଗବାନଙ୍କ ନାମ ବାହାରି ପଡ଼େ ତାହାକୁ ବଡ଼ ଭାଗ୍ୟବାନ ବୋଲି ଜାଣିବାକୁ ହେବ । ଯଦି ପୁରାନାମ ବା ଅଧାନାମ ଉଚ୍ଚାରିତ ନ ହୋଇ ଶୁଦ୍ଧ ଅଶୁଦ୍ଧ ଭାବରେ ଉଚ୍ଚାରିତ ହୋଇଯାଏ ସେଥିରେ ମଧ୍ୟ ଅଶେଷ କଲ୍ୟାଣ ସାଧିତ ହୁଏ ।

ଥରେ ଜଣେ ଯବନ ଶୌଚକ୍ରିୟା କରୁଥିଲା । ଏହି ସମୟରେ ଜଙ୍ଗଲୀ ଶୂକର-ଭଗବାନ, ଭୟ ଦେଖାଇବା ଉଦ୍ଦେଶ୍ୟରେ ତା ଉପରେ କରୁଣା କରି ଦୌଡ଼ି ଦୌଡ଼ି ଆସି ପହଞ୍ଚିଲେ । ଯଦି ବାମନ ଅବତାରରେ ଭଗବାନ ଥାଆନ୍ତେ, ତାହାଲେ ଏପରି ଅବସ୍ଥାରେ ଆସିନଥାନ୍ତେ, କିନ୍ତୁ ଶୂକର ଭଗବାନଙ୍କ ପକ୍ଷରେ ଶୁଦ୍ଧ ଅଶୁଦ୍ଧର କୌଣସି ବିଚାର ନାହିଁ । ସେଇ ପାଖରେ ଗୋଟିଏ ଶ୍ରେଷ୍ଠ ହୁଡ଼ । ଶୂକର ଭଗବାନଙ୍କୁ ଦେଖି ଯବନ ଡରରେ ବିବଶ ହୋଇ ଆର୍ତ୍ତସ୍ୱରରେ ହରାମ, ହରାମ ବୋଲି ଡାକ ଛାଡ଼ିଲା ! ଯମଦୂତମାନେ ଭାବିଲେ, ଏହି ଲୋକ ହାରାମ, ହାରାମ ବୋଲି ଡାକୁଛି, ଏଣୁ ସେମାନେ ଡେରି ନ କରି ସେ ସ୍ଥାନ ଛାଡ଼ି ଚାଲିଗଲେ ଓ ଭଗବାନଙ୍କ ଦୂତମାନେ ଆସି ଯବନକୁ ସେଠାରୁ ନେଇ ଚାଲିଗଲେ । ଏହା କେବଳ ନାମର ପ୍ରଭାବ ।

ଏହା ଶୁଣି ଶୌନକ ପଚାରିଲେ—"ମହାଭାଗ ! ଶେଷ ଅବସ୍ଥାରେ ନାମର ସ୍ମରଣ ଏହିପରି ଭାବରେ ହୋଇଥାଏ । ଯାହାକୁ କି ପୂର୍ବରୁ ଜ୍ଞାନପୂର୍ବକ ସ୍ମରଣ କରାଯାଉ-ଥିଲା । ଅଜାମିଳ "ନାରାୟଣ, ନାରାୟଣ" ପ୍ରତ୍ୟେକ ଦିନ ସବୁବେଳେ ଉଚ୍ଚାରଣ କରୁଥିଲେ, କିନ୍ତୁ ସେ ପୁତ୍ର ନାମରେ ଉଚ୍ଚାରଣ କରୁଥିଲେ । ଏଣୁ ଶେଷ ଅବସ୍ଥାରେ ତାଙ୍କୁ ନାରାୟଣ ନାମ ଜ୍ଞାତ ହୋଇଥିଲା । ମରିବା ସମୟରେ ତାଙ୍କୁ ନାମ ସ୍ମରଣ ହୋଇ ନ ଥିଲା ।

ଏହାପରେ ସୂତ କହିଲେ—"ହଁ ଭଗବାନ ! ଏ କଥା ସତ ଯେ ମରିବା ସମୟରେ ଅଭ୍ୟାସ ଥିବା ଜିନିଷ ସ୍ମରଣ ହୋଇଯାଏ । ଏଥିପାଇଁ ସାଧୁ ସନ୍ଥମାନେ ସ୍ପଷ୍ଟ ଉପଦେଶ ଦିଅନ୍ତି ନାହିଁ । ରୁଚି ଅନୁସାରେ ସାଧକ ନାମ ସ୍ମରଣକରେ । ଜଣେ କବି ଥିଲେ । ସେ ସର୍ବଦା ତାଙ୍କ ସ୍ତ୍ରୀ'ଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ । ସ୍ତ୍ରୀ'ଙ୍କୁ ନ ଦେଖିଲେ କିଛି ଲେଖି ପାରୁନଥିଲେ । ତାଙ୍କ ମନ ବ୍ୟାକୁଳ ହୋଇ ଉଠୁଥିଲା । ସେ କବି ଥରେ ଜଣେ ସତ୍ସଙ୍ଗ ଗୋଷ୍ଠୀର ଲୋକ ସହ ସାଥୀ ହେଲେ । ଫଳରେ ସେ ପ୍ରତିଦିନ ତାଙ୍କ ସହ ଜଣେ ସାଧୁ ପୁରୁଷଙ୍କ ପାଖକୁ ଯାଆସ କଲେ କିନ୍ତୁ ସେ ସାଧୁ ପୁରୁଷଙ୍କ ପାଖରେ ବେଶି ସମୟ ନ ବସି କେବଳ କିଛିକ୍ଷଣ ରହି ପଳାଇଆସନ୍ତି । ସାଧୁପୁରୁଷଙ୍କର କବିଙ୍କ ପ୍ରତି କୃପାଦୃଷ୍ଟି ପଡ଼ିଲା । ସେ କବିଙ୍କୁ କହିଲେ —'ଭାଇ, ତୁମେ ତ ସବୁଦିନ ଆସି ପଳାଇଯାଉଛ, ସତ୍ସଙ୍ଗ ଗୋଷ୍ଠୀରେ ହେଲେ ଭାଗନିଅ ।'

କବି କହିଲେ—'ମହାରାଜ ! ଆପଣଙ୍କ ଦେବଦୁର୍ଲଭ ଦର୍ଶନ ସବୁଠାରୁ ବଡ଼ ମନ୍ତ୍ରସଙ୍ଗ କାର୍ଯ୍ୟ ବୋଲି ମୁଁ ଭାବୁଛି । ମୁଁ କିନ୍ତୁ ମୋ ସ୍ତ୍ରୀ'କୁ ବହୁତ ଭଲପାଉଥିବା ହେତୁ ସଙ୍କୋଚରେ ଏଠାରୁ ଚାଲିଯାଉଛି । ତା ପାଇଁ ମୋ ହୃଦୟ ସର୍ବଦା ବ୍ୟାକୁଳ । ମୁଁ ତାକୁ ଦଣ୍ଡେ ହେଲେ ଛାଡ଼ି ରହିପାରିବିନାହିଁ ।'

ସାଧୁପୁରୁଷ ହସି ହସି ପଚାରିଲେ "ଆଚ୍ଛା ତୁମ ସ୍ତ୍ରୀର କେଶ କି ପ୍ରକାରର ?

ସାଧୁଙ୍କ ମୁହଁରୁ ଏକଥା ଶୁଣି କବିଙ୍କର ହୃଦୟ ଉଲ୍ଲସିତ ହୋଇଗଲା । ସେ ସ୍ତ୍ରୀ'ର କେଶ ବର୍ଣ୍ଣନା କରି କହିଲେ—"କ'ଣ କହିବି ମହାରାଜ ! ତା'ର କେଶ ରେଶମର ସୂତା ପରି ମସୃଣ ଓ ସୁନ୍ଦର ଏବଂ ବଡ଼ କୋମଳ ମଧ୍ୟ, ସ୍ପର୍ଶ କଲେ ଖୁବ୍ ଆରାମ ଲାଗେ ।"

ସାଧୁ କହିଲେ –ଠିକ୍ ଅଛି, ଆସନ୍ତା କାଲି ତୁମେ ତୁମ ସ୍ତ୍ରୀ'ର କେଶ ଉପରେ ଗୋଟିଏ କବିତା ରଚନା କରିଆସ ଓ ଏବେ ଘରକୁ ଯାଅ । କବି ସାଧୁଙ୍କ ପାଖରୁ ବିଦାୟ ନେଇ ତନ୍ମୟ ହୋଇ ଉଠିଲେ ଓ ଗୋଟିଏ ଗଛ ମୂଳରେ ବସି ସ୍ତ୍ରୀ'ର କେଶ ଉପରେ କବିତା ଲେଖିବା ଆରମ୍ଭ କଲେ । କବିତା ଶେଷ କରି ପରଦିନ ସକାଳୁଆସି ସାଧୁଙ୍କୁ ସେହି କବିତା ଦେଖାଇଲେ । ସାଧୁଙ୍କ ପକ୍ଷରେ ସ୍ତ୍ରୀ' ଲୋକର କେଶ ପ୍ରତି ବା କାହିଁକି ପ୍ରେମ ରହିବ; କିନ୍ତୁ କବିଙ୍କୁ ଠିକ୍ ବାଟରେ ପରିଚାଳିତ କରିବା ପାଇଁ ସାଧୁଙ୍କର ଥିଲା ଅସଲ ଉଦ୍ଦେଶ୍ୟ । ସାଧୁ କହିଲେ—"ବାଃ ବାଃ ଭାଇ ! ତୁମେ ତ ସୁନ୍ଦର କବିତା ରଚନା କରିପାରୁଛ । ହେଉ ମୋତେ ଟିକିଏ ତୁମ କବିତା ପଢ଼ି କରି ଶୁଣାଇଦିଅ ।"

ସୂତ କହିଲେ—"ମହାରାଜ ! ଅନ୍ୟଠାରୁ ନିଜର ପ୍ରଶଂସା ଶୁଣିଲେ ସମସ୍ତଙ୍କୁ ଭଲ ଲାଗେ କିନ୍ତୁ ଜଣେ ଯୋଗ୍ୟ ବ୍ୟକ୍ତିଙ୍କଠାରୁ ନିଜର ପ୍ରଶଂସା ଶ୍ରବଣ କରି କବି ଆନନ୍ଦ ବିଭୋର ହେବା ସ୍ୱାଭାବିକ । ଏହି ନ୍ୟାୟରେ କବି ବଡ଼ ଆନନ୍ଦିତ ହୋଇଯାଇଥିଲେ । ସାଧୁପୁରୁଷ ପ୍ରତ୍ୟେକଦିନ ସ୍ତ୍ରୀ'ର କୌଣସି ଅଙ୍ଗପ୍ରତ୍ୟଙ୍ଗ ଉପରେ କବିତା ରଚନା କରିବାପାଇଁ କବିଙ୍କୁ କହୁଥିଲେ ଏବଂ କବି ସେହି ଆଶ୍ରମରେ ବସି ନିଜ ସ୍ତ୍ରୀ'ର ଅଙ୍ଗ-ପ୍ରତ୍ୟଙ୍ଗ ଉପରେ କବିତା ରଚନା କରି ଦେଉଥିଲେ । କବି ଆଉ ଘରକୁ ଯିବାପାଇଁ ଇଚ୍ଛା କଲେନାହିଁ । ତାଙ୍କର ଉଦ୍ଦେଶ୍ୟ ରହିଲା କିପରି ସେ ସୁନ୍ଦର କବିତା ଶୀଘ୍ର ଲେଖି ସାଧୁଙ୍କୁ ଦେଖାଇ ପାରିବେ । ଦିନେ ସାଧୁ କବିଙ୍କୁ କହିଲେ—"ତୁମେ ଦୁଇ ଦିନ ଭିତରେ ତୁମ ସ୍ତ୍ରୀ'ର ନଖ ସୌନ୍ଦର୍ଯ୍ୟ ଉପରେ ଗୋଟିଏ ସୁନ୍ଦର କବିତା ରଚନା କରି ଦେଖାଅ ।" କବି ସାଧୁଙ୍କର ଆଦେଶ ଶିରୋଧାର୍ଯ୍ୟ କରି ସମ୍ମତି ପ୍ରଦାନ କଲେ । ଦୁଇ ଦିନ ପର୍ଯ୍ୟନ୍ତ ସେ ସ୍ତ୍ରୀ'ର ଅଙ୍ଗପ୍ରତ୍ୟଙ୍ଗର ଧ୍ୟାନରେ ରହିଲେ । କବିଙ୍କର ଧ୍ୟାନମଗ୍ନତା ଲକ୍ଷ୍ୟ କରି ସାଧୁ କହିଲେ—"ଆରେ ! ବହୁତ ଡେରି ହେଲାଣି ତୁମେ ଘରକୁ କାହିଁକି ଯାଉନାହଁ ?" କବି କହିଲେ—"ପ୍ରଭୁ ! ମୋତେ ଧ୍ୟାନ କରିବା ପାଇଁ ସମୟ ଦିଅନ୍ତୁ ଏଥିରେ ବଡ଼ ଆନନ୍ଦ ଲାଗୁଛି । ମୋ ସ୍ତ୍ରୀ'ର ରୂପକୁ ଚିନ୍ତା କରିବା ଦ୍ୱାରା ମୁଁ ଯେତେ ସୁଖ ଓ ଆନନ୍ଦ ପାଉଛି ତାକୁ ପ୍ରତ୍ୟକ୍ଷ ଦର୍ଶନ କଲେ ସେତେ ସୁଖ ଓ ଆନନ୍ଦ ମୋ ମନରେ ଆସୁ ନ ଥିଲା । ତାର ରୂପ ଚିନ୍ତା କରିବା ନିମନ୍ତେ ମୋତେ ସମୟ ଦିଅନ୍ତୁ । ଯେତେବେଳେ ସାଧୁ ଦେଖିଲେ ସ୍ତ୍ରୀ'ର ଅଙ୍ଗ ଚିନ୍ତାରେ ତାର ଏକାଗ୍ରତା ଆସିଯାଇଛି ସେ କହିଲେ—"ଆରେ ଭାଇ ! ହାଡ଼ ମାଂସର ଶରୀରକୁ କାହିଁକି ଧ୍ୟାନ କରୁଛୁ ?

ଭଗବାନଙ୍କର ଦିବ୍ୟ ରୂପକୁ ହୃଦୟ ଭିତରେ ଧ୍ୟାନ କର । ଯାହା ତୁଳନାରେ ତୋର ସ୍ତ୍ରୀର ରୂପ କ୍ଷଣ ଭଙ୍ଗୁର, ତୁଚ୍ଛ ଓ ଅଳୀକ ଅଟେ । ସାଧୁଙ୍କର ପ୍ରଭାବ କବିଙ୍କ ଉପରେ ଏପରି ଭାବରେ ପଡ଼ିଲା ଯେ ସେ ଜଣେ ମହାନ୍ ପରମାର୍ଥ କବି ଓ ମହାତ୍ମାରେ ପରିଣତ ହୋଇଗଲେ ।

ଏଣୁ ଭଗବାନ ! ଅଜାଣତରେ ଧ୍ୟାନ କରିବା ଦ୍ୱାରା ମଧ୍ୟ ଧ୍ୟାନର ଅଭ୍ୟାସ ହୋଇଯାଏ । ଅଜାଣତରେ ନାମ ସ୍ମରଣ କରିବା ମଧ୍ୟ ନାମର ଅଭ୍ୟାସ ହୋଇଯାଏ । ଆପଣଙ୍କର ଆଜ୍ଞା ହେଲେ ନାମ ସମ୍ପର୍କରେ ଦୃଷ୍ଟାନ୍ତ ଦେଇ କଥାଟିଏ ଶୁଣାଇବି ।''

ଶୌନକ କହିଲେ—''ସୂତ ! ଆପଣ କହନ୍ତୁ, ଦୃଷ୍ଟାନ୍ତ ଦ୍ୱାରା ବିଷୟ ବଡ଼ ସରଳତା ସହକାରେ ବୁଝିହୁଏ ଓ ସ୍ପଷ୍ଟ ମଧ୍ୟ ହୋଇଯାଏ । ବୁଦ୍ଧି ମଧ୍ୟ ଚଳେ ଚଳେ ଗ୍ରହଣ କରି ପାରେ ।

ଏହା ଶୁଣି ସୂତ କହିଲେ—''ମହାରାଜ ! ବିଦର୍ଭ ଦେଶରେ ଜଣେ ଖୁବ୍ ସୁନ୍ଦରୀ ଓ ରୂପବତୀ ବେଶ୍ୟା ଥିଲା । ତାର ରୂପ ସୌନ୍ଦର୍ଯ୍ୟର ପ୍ରଚାର ଚାରିଆଡ଼େ ଥିଲା । ସେ କେତେ ଧନୀକୁ ଧନହୀନ, କେତେକ ଚରିତ୍ରବାନ ଲୋକଙ୍କୁ ଚରିତ୍ରହୀନ ଭାବରେ ପରିଣତ କରିଛି, କେତେ ଯୁବକମାନଙ୍କର ବଳବୀର୍ଯ୍ୟ ସେ ନାଶ କରିଛି ତାର ହିସାବ ନାହିଁ । ଗରିବଲୋକେ ତା'ର ଦର୍ଶନ କରି ପାରୁନଥିଲେ, ସେ ଗୋଟିଏ ରାଜବେଶ୍ୟା ଥିଲା ।

ଦିନେ ସେ ତା'ର ସୁସଜ୍ଜିତ କୋଠା ଉପରେ ବସିଥିବା ସମୟରେ ଦେଖିଲା ଜଣେ ବାଣୁଆ ବହୁଗୁଡ଼ିଏ ଶୁଆ ଧରି ରାସ୍ତାରେ ଯାଉଛି । ସେହି ଶ୍ରେଷ୍ଠ ଶ୍ରେଷ୍ଠ ଶୁଆ-ମାନଙ୍କ ଭିତରେ ଗୋଟିଏ ବଡ଼ ଶୁଆ ଥିଲା । ସେଇଟି ଦେଖିବାକୁ ଦୂବଘାସ ଭଳି ସବୁଜ ବର୍ଣ୍ଣର । ତା'ର ଚଞ୍ଚୁ କୁନ୍ଦୁରି ଫଳ ଭଳି ଲାଲ ଏବଂ ତା'ର ଗଳାରେ ଲାଲ ଓ ନୀଳ ବର୍ଣ୍ଣର ଗୋଟିଏ ସୁନ୍ଦର କଣ୍ଠି, ସେ ମନୁଷ୍ୟ ଭଳି ସ୍ପଷ୍ଟଭାବରେ କଥା କହିପାରୁଥିଲା ।

ଏହି ଭଳି ଏକ ଶୁଆକୁ ଦେଖି ବେଶ୍ୟା ବଡ଼ ଆଶ୍ଚର୍ଯ୍ୟ ହୋଇ ସେ ବାଣୁଆକୁ ଉପରକୁ ଡାକିଲା ଏବଂ ତା'ଠାରୁ ସେଇ ଶୁଆଟି ପାଇବା ପାଇଁ ଆଗ୍ରହ ପ୍ରକାଶ କଲା । ଶୁଣନ୍ତୁ ! ମଣିଷ ଯେତେ ନିଷ୍ଠୁର, ନିନ୍ଦିତ ହିଂସ୍ରକ ହେଲେ ମଧ୍ୟ ସେ କିଛି ନା କିଛି ଭଲପାଏ । ଭଲ ପାଇବା ସମସ୍ତଙ୍କ ମନ ଭିତରେ ସ୍ୱାଭାବିକ ଭାବରେ ରହିଛି । ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନେ ସେମାନଙ୍କ ଭିତରେ ବନ୍ଧୁତା ସୃଷ୍ଟି କରନ୍ତି ଓ କିଛି ସମୟରେ ତାହାକୁ ଭାଙ୍ଗି ଦିଅନ୍ତି ।

ଗୋଟିଏ ପିଲାକୁ ତାର ମା' ଗୋଟିଏ ସୁନ୍ଦର ମିଠାଇ ଦେଲା । ପିଲାକୁ ତାର ସାଙ୍ଗ ମିଠାଇଟି ମାଗିଲା, ହେଲେ ସେ ତାର ସାଙ୍ଗକୁ ମିଠାଇଟି ଦେବାକୁ ରାଜି ହେଲାନାହିଁ । ପିଲାଟି ମିଛତାର ବନ୍ଧୁଭାବରଣ କଲା । ଇଚ୍ଛା କରୁଥିବା ପଦାର୍ଥ ନ

ପାଇବା ଦ୍ୱାରା ମିତ୍ରତା ଭାଙ୍ଗି ନଷ୍ଟ ହୋଇଯାଏ । ସେ ମାଗିବା ଦ୍ୱାରା ମଧ୍ୟ ବସ୍ତୁଟି ପାଇଲା ନାହିଁ, ଏଣୁ ସେ ବନ୍ଧୁତ୍ୱ ଛିନ୍ନ କରିଦେଲା । ପିଲା ଦୁହିଁଙ୍କ ମଧ୍ୟରେ ମିତ୍ରତା ଛିନ୍ନ ହୋଇଗଲା । ବଡ଼ ମଣିଷମାନେ କହନ୍ତି ଏହା ପିଲାଙ୍କର ଖେଳ, କିନ୍ତୁ ତାହା ନୁହେଁ । ବଡ଼ମାନେ ମଧ୍ୟ ନିଜର ସ୍ୱାର୍ଥହାନୀ ଘଟିଲେ ଏହିପରି ଭାବରେ ବନ୍ଧୁତ୍ୱକୁ ଛିନ୍ନ କରି ଥାଆନ୍ତି । ବାଲ୍ୟକାଳରୁ ମିତ୍ରତା କରିଥିବା ଅନେକ ଲୋକର ବନ୍ଧୁତ୍ୱ ଦୃଢ଼ହୋଇ ଶେଷରେ ଭାଙ୍ଗିଯାଇଛି ।

ସବୁ ମଣିଷ ସ୍ୱାର୍ଥର ମିତ୍ର । ତେଣୁ ମିତ୍ରତା ବା ବନ୍ଧୁତା କରି ମଧ୍ୟ ତାକୁ ଚିର-ଦିନ ରକ୍ଷି ହୁଏନାହିଁ । ନାରୀ ପ୍ରଥମେ ଜଣଙ୍କ ସହ ବନ୍ଧୁତ୍ୱ ସ୍ଥାପନ କରେ । ରାଜଦ୍ୱାରକୁ ଯାଇ ଜଣକୁ ବିବାହ କରେ ଓ ତାକୁ ପରିତ୍ୟାଗ କରି ପୁଣି ଅନ୍ୟଜଣକ ସଙ୍ଗରେ ବିବାହ କରେ । ଯେତେବେଳେ ସେ ଜାଣେ ଏହି ପୁରୁଷ ନିର୍ଦ୍ଧନ ଓ ବିପଦରେ ପଡ଼ିଯାଇଛି ତାକୁ ମଧ୍ୟ ପରିତ୍ୟାଗ କରି ତୃତୀୟ ଜଣକ ସଙ୍ଗରେ ବନ୍ଧୁତ୍ୱର ଯୋଗାଯୋଗ କରେ । ତାହା ସହିତ କଳିକଜିଆ ହେଲେ ସେ ପୁଣି ଚତୁର୍ଥ ଜଣକ ସଙ୍ଗରେ ପ୍ରେମ ରଚନା କରେ । ସେ ଜାଣିପାରେ ନାହିଁ ଯେ, ଭବିଷ୍ୟତରେ ତା'ର ଅବସ୍ଥା କ'ଣ ହେବ ? ସେହିପରି ଏପରି ଦଶା ମଧ୍ୟ ପୁରୁଷ ଭୋଗ କରିଥାଏ । ସ୍ତ୍ରୀ ପ୍ରତି ରାଗରୋଷ କରି ତାକୁ ହୃଦୟର ରାଣୀ ପ୍ରାଣପ୍ରିୟା ବୋଲି ଜ୍ଞାନ ନକରି କ'ଣନା କ'ଣ କହିଦିଏ । କେଉଁ-ଠାରେ ଅନ୍ୟଜଣକ ସହ ମନ ମିଳିଗଲେ ଘରୁ ସରପରି ତାକୁ ବାହାର କରି ଅଲଗା କରିଦିଏ । ମିଥ୍ୟା ପ୍ରେମମୟ କଥାରେ ଭୁଲି ନିଜର ସ୍ତ୍ରୀକୁ ଗାଳିଦିଏ । ଯିଏ ସ୍ୱାର୍ଥପର, କାମୀ, ଓ ବିଷୟାସକ୍ତ ଅଟେ ସେ କାହାର ବନ୍ଧୁ ହୋଇପାରେନାହିଁ । କାରଣ ତାର ବନ୍ଧୁତ୍ୱ କାମ୍ ସମୟ ନିମନ୍ତେ ଓ ସ୍ୱାର୍ଥ ନିମନ୍ତେ ଜଡ଼ିତ । ଏହି କଥା ଅନୁଭବ କରି କରି ଯୁବାବସ୍ଥା ଅତିକ୍ରମ ହୋଇଯାଏ ଓ ସେ କାହା ସହିତ ପ୍ରେମ ଭାବରେ ରହିପାରେ ନାହିଁ । ବାସ୍ତବରେ କାହାକୁ ପ୍ରେମ କରିବା ଉଚିତ ବା କାହା ସହିତ ପ୍ରେମ କରିବା ଅନୁଚିତ ? ଯିଏ କ୍ଷଣଭଙ୍ଗୁର ବିଷୟ ସହ ପ୍ରେମରଚନା କରେ, ତା' ପକ୍ଷରେ ମିତ୍ରତା କଚ୍ଛଦିନ ରହିଥାଏ । ବୃକ୍ଷ ମଧ୍ୟ ପ୍ରେମ କରିବାର ଯୋଗ୍ୟ, ସିଏ କିଛି କହିପାରେ ନାହିଁ , ଗାଳିମନ୍ଦ କରିପାରେ ନାହିଁ ଏବଂ ଆମମାନଙ୍କର କୌଣସି ବିଷୟକୁ ମଧ୍ୟ ବିରୋଧ କରେ ନାହିଁ । ତାଙ୍କୁ ସଡାପଚା ଖତପାଉଁଶର ସାର ଦେଲେ ସେ ଫୁଲ, ଫଳ ଦିଏ । କାଟିକରି ମଧ୍ୟ ତାକୁ ଆମ ଖାଦ୍ୟରେ ମିଶାଇ ଦିଆଯାଏ । ଜାଳିକରି ପୋଡ଼ି ପାଉଁଶ କରିଦେଲେ ତାହା ମଧ୍ୟ ଖତ ବା ସାରରେ ପରିଣତ ହୋଇଯାଏ । ସାରାଂଶରେ କହିବାକୁ ଗଲେ ତା'ର କୌଣସି ସ୍ୱାର୍ଥଭାବର ଚିନ୍ତା ନାହିଁ । ପରମାର୍ଥଭାବନା ପୂରି ରହିଥାଏ । ଏଥିମାନ୍ଧି ସାଧୁସନ୍ଥ ମାନଙ୍କର ଆଶ୍ରମ ପରିସର ମଧ୍ୟରେ ନାନା ପ୍ରକାର ଫଳ ଫୁଲ, ପତ୍ରପୁଷ୍ପ ପ୍ରଦାନକାରୀ ବୃକ୍ଷମାନ ରୋପଣ କରାଯାଇଥାଏ । ଏମାନେ ପ୍ରେମ କରିବାର ଯୋଗ୍ୟ ଅଟନ୍ତି କାରଣ ସରଳପ୍ରାଣୀ ପଶୁପକ୍ଷୀ ଯେଉଁମାନେ କି ଖେଳବୁଲି ସମସ୍ତ

ବିତାନ୍ତି ସେମାନେ ଏ ଗଛରୁ ସେ ଗଛକୁ ଡେଇଁ ଆନନ୍ଦରେ ବୁଲି ଥାଆନ୍ତି । ଏଣୁ ସାଧୁ ସନ୍ଥମାନଙ୍କର ପାଳିତ ଜୀବଜନ୍ତୁମାନେ ଏଠାରେ ରହି ଥାଆନ୍ତି । ଗୃହସ୍ଥମାନେ ମଧ୍ୟ ନାନା ପ୍ରକାରର ପଶୁପକ୍ଷୀ ପାଳନ କରିଥାଆନ୍ତି । ବହୁତ ଲୋକ ସେମାନଙ୍କ କୁକୁରକୁ ଏତେ ଭଲ ପାଆନ୍ତି ଯେ ପୁତ୍ରଭଳି କୁକୁରକୁ ସାଥୀରେ ବୁଲନ୍ତି, ସାଥୀରେ ଖେଳାନ୍ତି, ନାନ ପ୍ରକାର ଖାଦ୍ୟ ପଦାର୍ଥମାନ ମଧ୍ୟ ଆଣି ଦିଅନ୍ତି ଓ ସାଙ୍ଗରେ ଯାନ-ବାହାନରେ ଧରି ବୁଲନ୍ତି । ପ୍ରେମ କରିବାର ଯୋଗ୍ୟ ନିଃସ୍ୱାର୍ଥପର ସନ୍ଥ ଅଟନ୍ତି, ଯାହାଙ୍କଠାରେ କୌଣସି ସାଂସାରିକ ସ୍ୱାର୍ଥ ପରିଲକ୍ଷିତ ହୁଏ ନାହିଁ, ଯାହାଙ୍କ ସମସ୍ତ କାର୍ଯ୍ୟ ପରମାର୍ଥଙ୍କ ପାଇଁ ଉଦ୍ଦିଷ୍ଟ ଥାଏ । ସେମାନେ ପରୋପକାର ନିମନ୍ତେ ପ୍ରେରିତ ହୋଇ କାର୍ଯ୍ୟ କରନ୍ତି ।

ଏହି ବେଶ୍ୟା ପ୍ରତ୍ୟେକ ଦିନ ବହୁ ବଡ଼ ବଡ଼ ଧନଶାଳୀ ଯୁବକମାନଙ୍କର ସମ୍ପର୍କରେ ଆସିଥାଏ । ସୁନ୍ଦର ସୁନ୍ଦର ରାଜକୁମାରମାନଙ୍କର ତା' ପାଖରେ କାମ ପଡ଼େ । ସେମାନେ ବେଶ୍ୟାକୁ ଧନରତ୍ନ, ସୁନ୍ଦର ରତ୍ନଜଡ଼ିତ ଆସ୍ଥି ଅଳଙ୍କାରମାନ ଆଣିଦିଅନ୍ତି । ପୋଷାକ ପରିଚ୍ଛଦ ମଧ୍ୟ ଆଣିଦିଅନ୍ତି । ଏପରିକି ହୃଦୟ ପ୍ରଦାନ କରିବାର ଅଭିନୟ ମଧ୍ୟ କରିଥାଆନ୍ତି । କିନ୍ତୁ ବେଶ୍ୟା ସବୁ ଜାଣିପାରେ । ତା' ମତରେ "ଯଦି ମୁଁ ଜଣକୁ ହୃଦୟ ଦେବାକୁ ସମର୍ଥ ନୁହେଁ ତେବେ ମୋତେ କିଏ ହୃଦୟ ସମର୍ପଣ କରିବ ? ଏସବୁ କାମକେଳି ଓ ସ୍ୱାର୍ଥର ଖେଳ ।" ସେ ହସିଉଠେ । ପୁଣି କାହାକୁ ପ୍ରେମ କରିବାର ଇଚ୍ଛାକରେ, ପ୍ରକାଶ୍ୟ ଭାବରେ କୌଣସି ବାଧା ନଥାଇ ସମସ୍ତଙ୍କ ସଙ୍ଗରେ ହୃଦୟ ଖୋଲି କଥାବାର୍ତ୍ତା ମଧ୍ୟ କରେ । ଆତ୍ମୀୟ ପୁରୁଷଙ୍କ ପରି ସେ ସେମାନଙ୍କୁ ହସଖୁସି, ଥଟ୍ଟା ପରିହାସ, ମାନ ଅଭିମାନ କରି ସମୟ ବିତାଇଦିଏ । ସେହି ବେଶ୍ୟା ବାଣୁଆଠାରୁ ସେହି ସୁନ୍ଦର ବଡ଼ ଶୁଆଟିକୁ ବହୁ ମୂଲ୍ୟ ଦେଇ କିଣିନେଲା । କିଣିତାକୁ ଗୋଟିଏ ସୁନ୍ଦର ପଞ୍ଜୁରୀ ମଧ୍ୟରେ ରଖି ଦେଲା । ତାହା କୌଣସି ଭକ୍ତର ଶୁଆ ବୋଲି ଜଣାପଡୁଥିଲା । କୌଣସି କାରଣରୁ ଶୁଆଟି ଉଡ଼ିଆସିଥିଲା ଓ ତାର ସୁନ୍ଦର ସ୍ପଷ୍ଟ ବାଣୀ ଶ୍ରବଣ କରି ବାଣୁଆ ତାକୁ ଧରି ଆଣିଛି । ଆଜି ଏହି ଶୁଆ ବିକ୍ରି କରି ସେ ବହୁ ଅଧିକ ମୂଲ୍ୟ ପାଇଛି ବୋଲି ମନରେ ପ୍ରବଳ ଗର୍ବ, ତାର ଆନନ୍ଦର ମଧ୍ୟ ସୀମା ନାହିଁ । ସେ ଏତେ ଆନନ୍ଦିତ ଥିଲା ଯେ, ତା ଗୋଡ଼ ଭୂଇଁରେ ପଡ଼ୁ ନ ଥିଲା । ଭାରି ଖୁସି ହୋଇ ସେ ନିଜ ଘରକୁ ଫେରିଲା ।

ବେଶ୍ୟା ଶୁଆଟିକୁ ନିଜଘରେ ରଖି ନିଜ ହାତରେ ତାକୁ ଦୁଧ ପିଆଇଲା, ଫଳ, ଚଣା ଖାଇବାକୁ ଦେଲା । ବେଶ୍ୟାଠାରୁ ଦୁଧ ପିଇ ଶୁଆ ତା ନିଜ ସ୍ୱଭାବ ଅନୁସାରେ ବୋଲିବାକୁ ଲାଗିଲା ।

ଚିତ୍ରକୁଟ କେ ଘାଟ ପେ, ଭଇ ସନ୍ତନ କି ଭୀର ।
ତୁଲସୀଦାସ ଚନ୍ଦନ ଘିସେଂ, ତିଲକ ଦେତ ରଘୁବୀର ॥

ସୀତାରାମ, ସୀତାରାମ ବୋଲି ଶୁଆଟି ପଢ଼ିବାକୁ ଲାଗିଲା । ବେଶ୍ୟା ବହୁତ ଆନନ୍ଦିତ ହୋଇ କହିଲା—"ହଁ ସୀତାରାମ" କହ । ସେ କହିବାକୁ ଲାଗିଲା—"ବାଇଜୀ ରାମରାମ ।" ବେଶ୍ୟାକୁ ଭାରି ଆନନ୍ଦ ଲାଗିଲା । ତା ଘରେ ଯେଉଁ ଯୁବକ ଆସି ପହଞ୍ଚିଲା, ତାକୁ ଦେଖି ଶୁଆ କହିଲା—'ରାମ ରାମ ଜୀ ରାମ ରାମ' । ସମସ୍ତେ ଶୁଆଟିର ସ୍ପଷ୍ଟବାଣୀ ଶୁଣି ଆଶ୍ଚର୍ଯ୍ୟ ହୋଇ ହସି କହନ୍ତି –'ରାମ ରାମ ମିଟ୍ଠୁଜୀ' ! ରାମ ରାମ !' ବେଶ୍ୟା ସକାଳୁ ଉଠିବା ସମୟରେ ଶୁଆ କହେ "ବାଈଜୀ ରାମ ରାମ ତାକୁ ଆଉଁସି ଦେଇ ପ୍ରେମ ସହକାରେ ବେଶ୍ୟା କହେ –"ରାମରାମ ଭାଇ ! ରାମରାମ" ତୋର ହଜାରେ ବର୍ଷ ଆୟୁଷ ହେଉ । ତୁ ସଦାବେଳେ ରାମ ନାମ କହୁଥା । ତୋର ମୁହଁ ସବୁବେଳେ ଘିଅ ଶାକରରେ ପୂରିଥାଉ । ତୁ ସଦାବେଳେ ରାମ ରାମ କହୁଥା ।"

ଶୁଆ ଶୋଇ ଗଲେ ବେଳେବେଳେ ବେଶ୍ୟା ଯାଇ କହେ –"ଶୋଇ ପଡ଼ିଲ କି ଶୁଆ ରାଜା । ରାମ ରାମ କହିବ ନାହିଁ ? ରାମ ରାମ କୁହ ରାମ ରାମ ।"

ସୂତ କହିଲେ—"ଭଗବାନ ! ରାମ ନାମ ଭଜନ କରିବା ଏହି ବେଶ୍ୟାର ଉଦ୍ଦେଶ୍ୟ ହେଲା । ତାର ଜ୍ଞାନ ନ ଥିଲା ଯେ ସେ ରାମ ନାମ ନେଉଛି ବୋଲି, ଯେଉଁ ରାମ ନାମ କି ସମସ୍ତ ପାପ ନିବାରଣର ଅମୋଘ ଅସ୍ତ୍ର । ନିଜର ପାପକର୍ମକଥା ବେଶ୍ୟା ସବୁବେଳେ ଭାବୁଥିଲା । ଶୁଆ ଉପରେ ଆନନ୍ଦ ହୋଇ ଅନିଚ୍ଛା ପୂର୍ବକ ଅଜ୍ଞାନ ଭାବରେ ଚିତ୍ତ ବିନୋଦ ନିମନ୍ତେ ସେ ରାମ ରାମ ଉଚ୍ଚାରଣ କରୁଥିଲା । ଅଜ୍ଞାନ ଭାବରେ ନାମ ଉଚ୍ଚାରଣ କରୁଥିଲା । କାରଣ ତମଗୁଣ ଯୋଗୁ ସେ ମୂଢ଼ ବା ଅଜ୍ଞାନ ହୋଇ ଯାଇ-ଥିଲା; କିନ୍ତୁ ଚୈତନ୍ୟପୂର୍ଣ୍ଣ ନାମ ଜପ କରୁଥିଲା । ଫଳରେ କ୍ରମେ କ୍ରମେ ରାମନାମ ପ୍ରଭାବରେ ତାର ହୃଦୟ ଶୁଦ୍ଧ ହେବାକୁ ଲାଗିଲା । ତାର ପାପ ଦହନ ହୋଇବାକୁ ଲାଗିଲା । ଯେତେବେଳେ ମନୁଷ୍ୟର ପାପ ଦହନ ହେବାକୁ ଲାଗେ, ସେତେବେଳେ ସନ୍ତ ପୁରୁଷଙ୍କର ଦର୍ଶନର ସୁଯୋଗ ଆସି ମିଳିଥାଏ ।

ଦିନେ ହଠାତ୍ ବେଶ୍ୟା ଜ୍ୱର ରୋଗରେ ପୀଡ଼ିତ ହେଲା । ବହୁତ ଦିନ ପର୍ଯ୍ୟନ୍ତ ତାର ଜ୍ଞାନ ଆସିଲା ନାହିଁ । ଜ୍ୱର ରୋଗରେ ପୀଡ଼ିତ ହୋଇ ସେ ବାତୁଳଙ୍କ ଭଳି ଗପିବାକୁ ଲାଗିଲା । ତାର ଶରୀରର ସୁନ୍ଦରତା ମଳିନ ପଡ଼ିଗଲା । ସୌନ୍ଦର୍ଯ୍ୟ ନଷ୍ଟ ହୋଇଗଲା । ମୁହଁରୁ ଦୁର୍ଗନ୍ଧ ପ୍ରକାଶ ପାଇଲା । ଅଙ୍ଗପ୍ରତ୍ୟଙ୍ଗ ଶିଥିଳ ହୋଇ ପଡ଼ିଲା, ନଖାଇ ନପିଇ ଆଖି କୋରଡ଼ ଭିତରକୁ ପଶିଗଲା । ମୁଖମଣ୍ଡଳରେ ଆଉ ସେଇ ଅପୂର୍ବ ତେଜ ରହିଲା ନାହିଁ । ଯେଉଁ କାମୀ ପୁରୁଷମାନେ ତାର ସଂସର୍ଗ ନିମନ୍ତେ ସର୍ବସ୍ୱ ତ୍ୟାଗକରି ତା ପାଖକୁ ଦୌଡ଼ୁଥିଲେ, ସେମାନେ ଆଉ ଆସିଲେ ନାହିଁ, ବରଂ ତାକୁ ଦେଖି ସେମାନେ ଘୃଣା କଲେ । ଆଉ କେହି ତା ପାଖକୁ ଆସି ଧରାଛୁଆଁ ଦେଲେନାହିଁ । ଧନଲୋଭୀ ତାର ଦୁଇ ଚାକରାଣୀ ଚାକରି କରିବାର ସୁଯୋଗ ଉଣ୍ଡି ରହିଲେ ଯେ, କପରି

ସେ ଶୀଘ୍ର ମରଗଲେ ତାର ସମସ୍ତ ଧନ-ସମ୍ପତ୍ତି ନେଇ ଗ୍ଲଲିଯିବେ । ସେ ରୋଗାକ୍ରାନ୍ତ ଓ ଅଚେତ ଥିବା ସମୟରେ ତା ନକଟରେ ଥିବା କେତେକ ଲୋକ ମଧ୍ୟ ବହୁ ଧନ-ସମ୍ପତ୍ତି ନେଇ ଗ୍ଲଲଯାଇଥିଲେ ।''

ବେଶ୍ୟା ଜୀବନର ଶେଷ ସମୟ ଆସି ଉପସ୍ଥିତ ହେଲା । ଜିଦୋଷ ତାକୁ ଘେର ରହିଲେ । ସୂତ କହିଲେ—''ମୁନି ! ମୃତ୍ୟୁ ସମୟରେ ପୂର୍ବରୁ କରଥିବା ସମସ୍ତ ପାପ କର୍ମମାନ ମଣିଷର ମନେ ପଡ଼େ । ଯେଉଁ ଧନ-ସମ୍ପତ୍ତିକୁ ସେ ସତ ମିଛ କର ସଂଗ୍ରହ କରଥିଲା, ତାକୁ ଛାଡ଼ିଯିବା ସମୟରେ ମଣିଷ ମନରେ ଖୁବ୍ ଦୁଃଖ ଜାତ ହୁଏ । ପାପ କର୍ମମାନ ମନେପଡ଼ଯାଇ ହୃଦୟ ଥର ଉଠେ । ଏହି ଭୟର କାରଣ ସ୍ୱରୂପ ଯମଦୂତମାନେ ତା ପାଖକୁ ଆସି କଳାମଚମଚ ବକଟାଳ ରୂପ ପ୍ରଦର୍ଶନ କରାଇଥାଆନ୍ତି । ଏହି ଯମଦୂତମାନଙ୍କୁ ଦେଖି ପାପୀମାନଙ୍କର ମଳମୂତ୍ର ତ୍ୟାଗ ହୋଇଥାଏ । ଏହି ବେଶ୍ୟା ମନରେ ମଧ୍ୟ ତାର ସମସ୍ତ ପାପ କର୍ମମାନ ମନେ ପଡ଼ିଲା । ସେ ତ ଜାଣିକର ପାପ କର୍ମମାନ କରଥିଲା; କନ୍ତୁ ହସ ଖୁସିରେ, ଆନନ୍ଦ ଉଲ୍ଲାସ ଜମଳେ ସେ କେବଳ ଭଗବାନଙ୍କ ନାମ ଉଚ୍ଚାରଣ କର ମହାନ୍ ପୁଣ୍ୟ ଅର୍ଜ୍ଜନ କରଥିଲା । ସେ ଏହିପର ଭାବରେ ମହାନ୍‌ପୁଣ୍ୟ ଅର୍ଜ୍ଜନ କରୁଛି ବୋଲି ତା'ର ଜ୍ଞାନ ନ ଥିଲା । ଯାହାହେଲେ ମଧ୍ୟ ନାମର ପ୍ରଭାବ ବ୍ୟର୍ଥ ହୋଇଯାଏ ନାହିଁ । ଏହି ସମୟରେ ସେଠାରେ ଜଣେ ସନ୍ଥସାଧକ ଆସି ପହଞ୍ଚିଲେ । ବେଶ୍ୟା ଛଲବଲେଇ ଥିବାର ଲକ୍ଷ୍ୟକର ତାଙ୍କ ମନରେ ଦୟା ହେଲା । ସନ୍ଥସାଧକ ପୂର୍ବରୁ କେତେଥର ସେଇ ବେଶ୍ୟା ଘର ଦେଇ ଯିବା ସମୟରେ ବେଶ୍ୟା ଶୁଆକୁ ରାମନାମ ପଢ଼ାଉଥିଲା ଓ ଶୁଆ ସହିତ ରାମନାମ ମଧ୍ୟ ଉଚ୍ଚାରଣ କରୁଥିବା ଦେଖିଥିଲେ । ଆଜି ବେଶ୍ୟାର ଏପର ଅବସ୍ଥା ଦେଖି ଦୟାଳୁ ସନ୍ଥସାଧକଙ୍କ ମନରେ ଦୟାଭାବ ଦେଖାଦେଲା । ସେ ବେଶ୍ୟାର ଘର ଭିତରକୁ ପଶି ଯାଇ ସାନ୍ତ୍ୱନା ଦେଇ କହିଲେ—''ଦେବି ! ତୁମେ ଶୁଆକୁ କ'ଣ ପଢାଉଥିଲ ? ଏହାକହି ସେ ଶୁଆକୁ ଆଣି ବେଶ୍ୟା ପାଖରେ ରଖିଲେ । ଶୁଆକୁ ଦେଖି ବେଶ୍ୟା କହିଲା—''ରାମ ରାମ'' ଶୁଆ ମଧ୍ୟ ରାମ ନାମ କହିବାକୁ ଲାଗିଲା । ଏହି ସମୟରେ ବେଶ୍ୟାର ଓ ଶୁଆର ପ୍ରାଣବାୟୁ ଉଡ଼ିଗଲା । ଦୁଇଟି ଯାକ ପ୍ରାଣୀ ରାମନାମ ପ୍ରଭାବରେ ଗତି ପାଇଗଲେ । ବିଷ୍ଣୁଦୂତମାନେ ଗୋଟିଏ ଦିବ୍ୟ ବିମାନରେ ବସାଇ ଏମାନଙ୍କୁ ବୈକୁଣ୍ଠଲୋକକୁ ନେଇ ଗ୍ଲଲଗଲେ ।''

ସୂତ କହିଲେ—''ମୁନି ଅନଚ୍ଛା ପୂର୍ବକ କୌଣସି ପ୍ରକାରରେ ଭଗବାନଙ୍କ ନାମ ନେଲେ ତାହା ମଙ୍ଗଳଦାୟୀ ଅଟେ । ଏକଥା ବିଷ୍ଣୁଦୂତମାନେ ଯମଦୂତ-ମାନଙ୍କୁ କହିଥିଲେ । ଏହି ପ୍ରସଙ୍ଗ ଅତ୍ୟନ୍ତ ସୁନ୍ଦର ଅଟେ । ପରେ ଏହି ବିଷୟ ମୁଁ ଶୁଣାଇବ ।''

—ଛପ୍‌ପୟ—

ନିଜ ଶୁକକୁ କରି ପ୍ୟାର ନିତ୍ୟ ଗନିକା ପୁଚକାରେ ।
ମନ ବିନୋଦ କେ ନିମିତ୍ତ ରାମ କୋ ନାମ ଉଚ୍ଚାରେ ॥
ସ୍ୱୟଂ କହେ ହରିନାମ ଔର ଖଗତେଂ କହେୱାୱେଂ ।
ଶୁକ ମୁଖତେ ଅତି ମଧୁର ନାମ ସୁନି ହୃଦୟ ହର୍ଷାଓ୍ୱେ ॥
ମରନ ସମୟ ଅଁଧ ସୁମିରିକେଂ, ବେଶ୍ୟା ଅତି ବ୍ୟାକୁଲ ଭଈ ।
ସଂଭ ଚଢାୟୋ ଅନ୍ତ ହରି, ନାମ କହେ୍ୟା ହରି ପୁର ଗଈ ॥



# ନାମ ଉଚ୍ଚାରଣର ଅତମୋଘ ଫଳ

ଅଜ୍ଞାନାଦଥବା ଜ୍ଞାନାଦୂତ୍ତମଶ୍ଳୋକନାମ ଯତ୍ ।
ସଂକୀର୍ତ୍ତିତମଘଂ ପଂସୋ ଦହେଦେଧୋ ଯଥାନଳଃ ॥
ଯଥାଗଦଂ ବୀର୍ଯ୍ୟତମମୁପଯୁକ୍ତଂ ଯଦୃଚ୍ଛୟା ।
ଅଜାନତୋଽପ୍ୟାତ୍ମଗୁଣଂ କୁର୍ଯ୍ୟାନ୍ମନ୍ତ୍ରୋଽପ୍ୟୁଦାହୃତଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଦ ॥ ୨ୟ ଅଧ୍ୟାୟ ॥ ୧୮-୧୯ ଶ୍ଳୋକ ]

## ଛପ୍ପୟ

ହରି କୀର୍ତ୍ତନ ଓ୍ୱା ଶ୍ରବଣ କରେଂ ଶ୍ରଦ୍ଧା ବିନୁ ପ୍ରାନୀ ।
ନିଶ୍ଚୟ ତେଉ ତରେଂ ବେଦ ସନ୍ତନକୀ ବାନୀ ॥
ରାମ ବିମୁଖ ଲଖି ସନ୍ତ ଜୀବପୈ ଯଦ୍ୟ ଦୁର ଯାଓ୍ୱେଁ ।
ବିନୁ ଇଚ୍ଛା ଉ ଲେହ୍ୱେଁ ନାମ ତୋଉ ତରି ଜାଓ୍ୱେଁ ॥
କୃଷ୍ଣନାମ ଭବ ରୋଗକୀ, ହୈ ଅବ୍ୟର୍ଥ ଓଷଧ ସୁଗମ ।
ଗ୍ରହେ ଜସ ସେବନ କରୋ, ନିଶ୍ଚୟ ଦେଗୀ ପଦ ପରମ ॥

ଭୁଲ୍‌ବଶତଃ ମଞ୍ଜି ଉର୍ବର ମାଟିରେ ପଡ଼ିଗଲେ ଗଛରେ ପରିଣତ ହୁଏ । ଭୁଲ୍‌ରେ କୌଣସି ବିଷ ପଦାର୍ଥ ଖାଇଦେଲେ ମୃତ୍ୟୁ ସୁନିଶ୍ଚିତ । ଭୁଲ୍‌ରେ ବା ଅଜାଣତରେ ଗୋଡ଼ରେ କଣ୍ଟା ଗଳିଗଲେ ପୀଡ଼ା ହୁଏ । ଅଜାଣତରେ ପିଲାମାନେ ନିଆଁକୁ ଧଇଲେ ପୋଡ଼ିହୁଅନ୍ତି । କାରଣ ସେଇଁଟା ଯାହାର ଧର୍ମ ତହିଁରୁ ସେପରି ଫଳ ମିଳିଥାଏ । ସେହିପରି ମରିବା ସମୟରେ ଭୁଲ୍‌ରେ ଯଦି ଜିଭରୁ ଭଗବାନଙ୍କ ନାମ ଉଚ୍ଚାରଣ ହୋଇଯାଏ, ସେ ବ୍ୟକ୍ତି ପରମ ପଦର ଅଧିକାରୀ ହୋଇପଡ଼େ । ଏଥିରେ କୌଣସି ସନ୍ଦେହ ରଖିବାର କାରଣ ନାହିଁ ।

ଶ୍ରୀ ଶୁକଦେବ କହିଲେ —"ରାଜନ୍ ! ଯେତେବେଳେ ବିଷ୍ଣୁଦୂତମାନେ ଯମ-ଦୂତମାନଙ୍କୁ ଗୁଣ ନ ଜାଣି ସ୍ୱଇଚ୍ଛାରେ ଅଜାଣତରେ ସ୍ୱଭାବ ଅନୁଯାୟୀ ଅଭ୍ୟାସଦ୍ୱାରା

ଶେଷ ସମୟରେ ନାମ ଉଚ୍ଚାରଣ ଜନିତ ସଦ୍‌ଗତିର କଥାମାନ କହିଲେ । ଯମଦୂତ-ମାନେ କହିଲେ—"ମହାରାଜ ! ଏଥିରୁ ଆମେମାନେ ଜାଣିପାରୁଛୁ ନାମର ଅତ୍ୟନ୍ତ ପ୍ରଭାବ ରହିଛି । ଆମେ ଏକଥା ମଧ୍ୟ ଗ୍ରହଣ କରୁଛୁ ଜାଣିକରି ହେଉ ବା ଅଜାଣତରେ ହେଉ ତାହା ଫଳଦାୟକ କିନ୍ତୁ ଅଜାମିଳ ଏପରି ନାମର ମାହାତ୍ମ୍ୟ ତ ଜାଣି ନଥିଲା ? ସେ କେବଳ ନିଜର ପାପ କଥା ସ୍ମରଣ କରୁଥିଲା । ଶେଷ ସମୟରେ ମନୁଷ୍ୟର ଯେପରି ଭାବନା ଥାଏ ସେପରି ଫଳ ମିଳେ । ସେ ମହାନ୍ ପାପୀ ବୋଲି ତା' ମନରେ ଏପର୍ଯ୍ୟନ୍ତ ଭାବନା ରହିଛି । ଏଣୁ ଏହାକୁ ନେଇଯିବା ପାଇଁ ଆପଣମାନେ କାହିଁକି ଛାଡ଼ୁ ନାହାନ୍ତି ।"

ଏକଥା ଶୁଣି ବିଷ୍ଣୁଦୂତମାନେ କହିଲେ—"ଭାଇ ! ଦେଖ, ଭାବନାର କଥା ଆମେ ଏଠାରେ କହୁନାହୁଁ । ଏଠାରେ ଆମେ ନାରାୟଣଙ୍କ ନାମର ମାହାତ୍ମ୍ୟ କଥା କେବଳ ବତାଇ ଦେଉଛୁ । ଯେ କୌଣସି ଭାବରେ ମୁହଁରୁ ଭଗବାନଙ୍କ ନାମ ଉଚ୍ଚାରଣ ହେଉ, ତହିଁରେ ଏପରି ଶକ୍ତି ଅଛି ଯାହା ଫଳରେ କି ବଡ଼ ବଡ଼ ପାପର ବିନାଶ ଘଟିଥାଏ । ଭଗବାନଙ୍କ ନାମରେ କେତେ ଶକ୍ତି ରହିଛି, ତାହା ଉଚ୍ଚାରଣ କଲେ କ'ଣ ଫଳ ମିଳେ, ଶେଷଦେବ ମଧ୍ୟ ଏହା ନିଜ ଶ୍ରୀମୁଖ ଦ୍ୱାରା ଉଚ୍ଚାରଣ କରିବାକୁ ସମର୍ଥ ନୁହନ୍ତି ।"

ଏହାପରେ ଶୌନକ କହିଲେ—"ସୂତ ! ସ୍ୱଇଚ୍ଛା, ପରଇଚ୍ଛା କୌଣସି ଭାବରେ ଏହି ଫଳ ମିଳିଥାଏ ? ଆର୍ତ୍ତ ହୋଇ ପ୍ରେମ ସହକାରେ ନାମ ଉଚ୍ଚାରଣ ଦ୍ୱାରା କ'ଣ ଏହି ଫଳ ମିଳିଥାଏ ?"

ଏହା ଶୁଣି ସୂତ କହିଲେ—"ମହାଭାଗ ! ମୁଁ ଏହି ପ୍ରଶ୍ନର ଉତ୍ତର ପୂର୍ବରୁ ବାରମ୍ବାର ଦେଇ ଆସିଛି । ପ୍ରେମପୂର୍ବକ ଶ୍ରଦ୍ଧା ସହକାରେ ଆର୍ତ୍ତ ଭାବରେ ନାମ ଉଚ୍ଚାରଣ କରାଯାଇପାରେ ; ଏବେ କ'ଣ ଏହାର ଫଳ ସମ୍ବନ୍ଧରେ କିଛି କହିବି ? ଅନ୍ୟ ଦ୍ୱାରା ବଳପୂର୍ବକ, ହଠପୂର୍ବକ ଯେ କୌଣସି ଭାବରେ ନାମ ଉଚ୍ଚାରଣ ହେଲେ ତାହା ଅତ୍ୟନ୍ତ ମଙ୍ଗଳଦାୟକ ଅଟେ । ଉଚ୍ଚାରଣ ନହେଉ କେବଳ ଶୁଣିଦେଲେ ମଧ୍ୟ ଏତେ ଫଳ ମିଳେ ତାହା ବ୍ରହ୍ମା ଆଦି ଦେବତାଗଣ ମଧ୍ୟ କହି ପାରିବେ ନାହିଁ । ଏ ସମ୍ପର୍କରେ ଏକ ସୁନ୍ଦର ପ୍ରାଚୀନ କାହାଣୀ ରହିଛି । ଏହାକୁ ଆପଣ ମନଦେଇ ଶୁଣିବା ହୁଅନ୍ତୁ । ଏହା ଶୁଣିବା ଦ୍ୱାରା ନାମ ଶ୍ରବଣର ମାହାତ୍ମ୍ୟ ଆପଣ ଜାଣିପାରିବେ ।

କୌଣସି ଏକ ନଗରରେ ଦୁଇ ଭାଇ ବାସ କରୁଥିଲେ । ସାନଭାଇ ଜଣେ ମହାତ୍ମା ଥିଲା । ସେ ସର୍ବଦା ସାଧୁମାନଙ୍କର ସେବା କରୁଥିଲା ଏବଂ ମହାତ୍ମାମାନଙ୍କ ପ୍ରତି ଶ୍ରଦ୍ଧା ରଖିଥିଲା । ତାର ବଡ଼ଭାଇ ଭଗବାନଙ୍କ ନାମ ଓ କଥାପ୍ରତି ଆଦୌ

ମନୋନିବେଶ କରୁ ନଥିଲା । ସେ ମହାତ୍ମାମାନଙ୍କର ବିରୋଧାଚରଣ କରୁଥିଲା । ଯେଉଁଠାରେ ଶାସ୍ତ୍ର ପୁରାଣ ଆଲୋଚନା, ଭଗବାନଙ୍କ ନାମ ଗୁଣ କୀର୍ତ୍ତନ ହେଉଥିଲା ସେ ଜାଗାକୁ ଯାଉ ନ ଥିଲା । ଘରେ ଶାସ୍ତ୍ର ପୁରାଣ ଆଦି ଆଲୋଚନା ହେଲେ ଘର ଭିତରେ ପଶି କବାଟ କିଳି କାନ ବନ୍ଦ କରି ବସିରହି କହେ ଏହି ଅସାର କଥା କେବେ ମୋ କାନ ଭିତରକୁ ଶୁଣା ନଯାଉ । ତାର ଏପରି ଆଚରଣରେ ସାନଭାଇ ମନରେ ବଡ଼ ଦୁଃଖ ଜାତ ହେଲା । ସାନଭାଇ ଚିନ୍ତାକଲା ମୋ ଭାଇ ମନରେ କି ପ୍ରକାର ପାପଜାତ ହେଲାଣି ସେ ସବୁବେଳେ ଭଗବାନଙ୍କ ନାମପ୍ରତି ବିମୁଖ ରହୁଛି । ତାର ମଙ୍ଗଳ ନିମନ୍ତେ ସେ ଭଗବାନଙ୍କ ପାଖରେ ପ୍ରାର୍ଥନା କଲା । ମୁନି ! ଅନ୍ୟର କଲ୍ୟାଣ ନିମନ୍ତେ ଭକ୍ତ ଇଚ୍ଛା କଲେ ସେ ଲୋକର ମଙ୍ଗଳ ସାଧିତ ହୁଏ, ଏଥିରେ କିଛି ସନ୍ଦେହ ନାହିଁ, କାରଣ ଭକ୍ତ ହୃଦୟରେ ଭଗବାନ ସର୍ବଦା ବିଦ୍ୟମାନ । ଭଗବାନ ଭକ୍ତର ସମସ୍ତ ଆଶା ସ୍ୱୟଂ ପୂରଣ କରିଥାନ୍ତି ଏଣୁ ତାଙ୍କର ନାମ ବାଞ୍ଛାକଳ୍ପତରୁ ।

ସୁଖର କଥା ଜଣେ ମହାନ୍ ସାଧୁ ଏକଦା ସେହି ନଗରୀରେ ଆସି ପହଞ୍ଚିଲେ । ସାଧୁଙ୍କର ଶରୀର ଖୁବ୍ ହୃଷ୍ଟପୁଷ୍ଟ, ହୃଦୟ ପବିତ୍ର ଏବଂ ସେ ସର୍ବଦା ପରମାର୍ଥ ପଥରେ ବ୍ରତୀ । ଆଉ ଦଶ ପନ୍ଦର ଜଣ ସାଧୁ ମଧ୍ୟ ତାଙ୍କ ଗହଣରେ ଥିଲେ । ଗାଉଣା ବାଜଣା ନାମ ସଂକୀର୍ତ୍ତନରେ ସେମାନେ ସର୍ବଦା ରତ ଥିଲେ । ନଗର ସାରା ତାଙ୍କର ପ୍ରଶଂସା ବ୍ୟାପିଗଲା । ସେହି ସାଧୁସେବୀ ସାନଭାଇ ସାଧୁଙ୍କ ସେବା କରିବା ଉଦ୍ଦେଶ୍ୟରେ ଆସି ପହଞ୍ଚିଲା ସମସ୍ତଙ୍କ ଚରଣ ବନ୍ଦନା କରିସାରି ସେ ଆସି ମହନ୍ତଙ୍କ ଗାଦି ସମ୍ମୁଖରେ ବସିଲା । କୃପାଳୁ ସାଧୁ ତାକୁ ବହୁ କଥା ପଚାରି ବୁଝାଇ ଶେଷରେ ତା ମନ କଥା ପଚାରିଲେ । ଭକ୍ତ କହିଲେ –"ଭଗବାନ ! ଆପଣତ ଅନ୍ତର୍ଯାମୀ ଅଟନ୍ତି । ଆପଣ ସବୁ କିଛି ଜାଣନ୍ତି । ମୋର ଇଚ୍ଛା ଆପଣଙ୍କର ଚରଣଧୂଳି ମୋ ଘରେ ପଡ଼ୁ ଏବଂ ମୋ ଭାଇ କୌଣସି ପ୍ରକାରେ ଉଦ୍ଧାର ଲାଭ କରୁ ।"

ସାଧୁ କହିଲେ –"ତୁମେ ତୁମ ଭାଇକୁ ମୋ ପାଖକୁ ନେଇଆସ ।"

ଭକ୍ତ ନିରାଶ ହୋଇ କହିଲେ "ଭଗବାନ ! ସେ ଯଦି ଆସିବାର ହୋଇଥାନ୍ତା ତେବେ ମୁଁ କାହିଁକି ଏଠାରେ ବସି ଥାଆନ୍ତି । ସେ ସାଧୁମାନଙ୍କ ନାମଠାରୁ କୋଶେ ଦୂରରେ ରହେ । ଆମ ଘରକୁ ଆପଣ ବିରାଜମାନ କଲେ ସେ ଉପର ଘରକୁ ଚାଲିଯିବ । କିମ୍ବା ଭିତରେ ଲୁଚିକରି ବସିବ । ସେ ଏହିପରି ଜାଗାକୁ ଯିବ ଯେଉଁ ଯାଗାକୁ ଗଲେ ଆପଣଙ୍କର କଥା ସେଠାରେ ପହଞ୍ଚି ପାରିବ ନାହିଁ ।

ଏକଥା ଶୁଣି ସାଧୁ ଟିକିଏ ବିଚଳିତ ହୋଇପଡ଼ିଲେ । ମନେ ମନେ ଚିନ୍ତା କଲେ, ରୋଗୀ ଯଦି ନିଜେ ଔଷଧ ଖାଏ ତେବେ ତାର ରୋଗ ଆରୋଗ୍ୟଲାଭ

କରେ । କାରଣ ରୋଗ ଦୂରୀକରଣ ନିମନ୍ତେ ଔଷଧର ବ୍ୟବସ୍ଥା ରହିଛି । କିନ୍ତୁ ଯିଏ ବୈଦ୍ୟ ଓ ଔଷଧଠାରୁ ଦୂରରେ ରହିବେ ଓ ସମ୍ପର୍କ ରଖିବାକୁ ଇଚ୍ଛା କରିବେନାହିଁ ଏହି ପ୍ରକାର ରୋଗୀର ରୋଗ ନିମନ୍ତେ କ'ଣ କରାଯାଇ ପାରିବ । କିଛି ସମୟ ପାଇଁ ସାଧୁ ଏହି କଥା ଚିନ୍ତାକଲେ । ଶେଷରେ ସେ ଏକ ସିଦ୍ଧାନ୍ତରେ ପହଞ୍ଚି ଭକ୍ତକୁ କହିଲେ- "ଆଚ୍ଛା ! ତୁମେ ଯାଅ, ଏଠାରେ ଥିବା ସମସ୍ତ ସାଧୁମାନେ କାଲି ତୁମଘରେ ବିରାଜମାନ କରିବେ । ତୁମେ କାଲି ଦ୍ୱିପ୍ରହର ସମୟରେ ଡାକିବା ପାଇଁ ଆସି ପହଞ୍ଚିବ ।"

ସାଧୁଙ୍କ ମୁହଁରୁ ଏହି କଥା ପଦକ ଶୁଣି ଭକ୍ତ ଅତ୍ୟନ୍ତ ଖୁସି ହୋଇଗଲା । କାଲି ସାଧୁମାନେ ତା ଘରେ ପହଞ୍ଚି ପଦଧୂଳି ପକାଇବେ ତା ମନରେ ଅପାର ଆନନ୍ଦ । ସେ ମନେ ମନେ ଭାବିଲା ଏହାଦ୍ୱାରା ତା ଜୀବନ ଧନ୍ୟ ହେବ । ଏହିପରି ଆହୁରି ଅନେକ କଥା ଭାବି ଭାବି ରାତିସାରା ତା ଆଖିକୁ ନିଦ ଆସିଲା ନାହିଁ । ସକାଳ ଭୋରରୁ ଉଠି ସବୁ ପ୍ରକାର ବ୍ୟବସ୍ଥାରେ ଲାଗି ପଡ଼ିଲା । କ୍ଷୀର ଆଣି ଆସିଲା । ଅନ୍ୟ ସବୁ ଜିନିଷପତ୍ର ସଂଗ୍ରହ କରି ଆଣିଲା । ବଡ଼ ପବିତ୍ର ସହକାରେ ଭଗବାନଙ୍କ ପ୍ରସାଦ ତିଆରି ହେଲା । ସବୁ ଖାଦ୍ୟ ପଦାର୍ଥ ତିଆରି ହୋଇ ସାରିବା ପରେ ଠିକ୍ ଦ୍ୱିପ୍ରହର ବେଳକୁ ସମସ୍ତ ସାଧୁମାନଙ୍କୁ ଡାକି ଆଣିବା ପାଇଁ ନିଜେ ଯାଇ ପହଞ୍ଚିଲା । ସମସ୍ତ ସାଧୁ ଲମ୍ବା ଲମ୍ବା ତିଳକ ଲଗାଇ ବାଜା ବଜାଇ ହରିନାମ ସଂକୀର୍ତ୍ତନ କରି ବାହାରିଲେ ।

ଭକ୍ତର ବଡ଼ଭାଇ ଜାଣି ପାରିଲା ଯେ ଆଜି ବେକାରରେ ଗୃହସ୍ଥ ପାଇଁ ବୋଝ ସଦୃଶ ବହୁତ ସାଧୁ ଆସି ତାଙ୍କ ଘରେ ଖାଦ୍ୟ ଅପଚୟ କରିବେ । ହେଲେ ସେ ତା ସାନଭାଇକୁ ଏ ବିଷୟରେ କିଛି କହିଲା ନାହିଁ । ସେ ଭାବିଲା -"ଏଥିରେ ମୋର କ'ଣ ଅଛି ? ଯୁଆଡ଼େ ଆଖି ବୁଲାଇଲା ଦେଖିଲି, ତା ପ୍ରତି କାହାରି ଦରଦ ନାହିଁ । ଏଣୁ ସେ ଏହି ବେକାର କାରବାରଠାରୁ ଦୂରରେ ରହିବା ପାଇଁ ସ୍ଥିର କଲା ।" ଏସବୁ କଥା ଭାବି ସେ ନୀରବ ରହିଲା । ଦୂରରୁ ସାଧୁମାନଙ୍କର ବାଜା ଗାନ କୀର୍ତ୍ତନ ଶୁଣିପାରି ସେ କାହାକୁ କିଛି ନକହି କାନ ବନ୍ଦକରି କବାଟ କିଳଣି ଦେଇ ସିଧା ଶୋଇ ପଡ଼ିଲା ।

ସାଧୁମାନେ ଖୁବ୍ ଆଡ଼ମ୍ବର ସହକାରେ ଆସି ପହଞ୍ଚିଲେ । ସେମାନେ ପହଞ୍ଚି ପ୍ରଥମେ ଭଗବାନଙ୍କଠାରେ ଭୋଗ ଲଗାଇଲେ । ଭୋଗ କରିବା ବେଳେ ସୁନ୍ଦର ପଦ-ମାନ ବୋଲିଲେ । ନାମ ସଂକୀର୍ତ୍ତନମାନ କଲେ । ସାଧୁମାନେ କେବଳ ନାରାୟଣ ନାମ କୀର୍ତ୍ତନ କରୁଥିଲେ । ପାଖ ପଡ଼ଶା ଘରର ବହୁ ନରନାରୀ ସେଠାରେ ଆସି ଉପସ୍ଥିତ ହେଲେ । ପ୍ରସାଦ ପରସା ହେଲା । ସମସ୍ତେ ଆନନ୍ଦରେ ପେଟଭରି ପ୍ରେମ ସହକାରେ ପ୍ରସାଦ ପାଇଲେ । ଭକ୍ତ ବଡ଼ ଆଗ୍ରହ ସହକାରେ ବାରମ୍ବାର ପ୍ରସାଦ ପରଷିବାରେ ବ୍ୟସ୍ତ । ମହାରାଜ ! ଆଉ ଟିକିଏ କ୍ଷୀର ନିଅନ୍ତୁ ବୋଲି ଭକ୍ତ ଜଣଙ୍କୁ ସେ ଦୁଇ ହାତ ପତ୍ରର ଉପରେ ଘେରାଇ କରି କହିଲେ -"ସୀତାରାମ, ସୀତାରାମ,

ସୀତାରାମ ।'' ଏହିପରି ବଡ଼ ପ୍ରେମ ସହକାରେ ପନ୍ତ ଶେଷ ହେଲା । ଭକ୍ତ ସମସ୍ତଙ୍କର ହାତ ଧୋଇ ସାରି ମୁଖ ଶୁଦ୍ଧି ନିମନ୍ତେ ଲବଙ୍ଗ, ଅଲେଇଚ ଆଦି ପଦାର୍ଥମାନ ଆଣି ଦେଲେ । ସାଧୁମାନେ ଯେପରି ଆସିଥିଲେ ସେହିପରି ଗାନାବାଜଣା, ନାମକୀର୍ତ୍ତନ ସହ ଲେଉଟି ଗଲେ । କିନ୍ତୁ ଏହି ମଣ୍ଡଳୀର ମହନ୍ତସାଧୁ ସେମାନଙ୍କ ସହ ଲେଉଟିଲେ ନାହିଁ । ସେ ଭକ୍ତକୁ ପଚାରିଲେ, ତୁମରି ସେଇ ଭଗବାନ ବିମୁଖ ସାଧୁଦ୍ରୋହୀ ଭାଇ କେଉଁଠାରେ ଅଛି ?

ଭକ୍ତ କହିଲେ -''ମହାରାଜ ! ସେ ଉପର ଘରେ ଲୁଚକରି ଶୋଇଛି ।''

ଏକଥା ଶୁଣି ଦୟାଳୁ ସାଧୁ ଉପରକୁ ଯାଇ ଲୁଚି ରହିଲେ । ଭକ୍ତର ଭାଇ ଯେତେବେଳେ ଦେଖିଲା ସାଧୁମାନେ ହା-ହା—ହୁ-ହୁ କହି ପେଟପୂଜା ସାରି ଚାଲିଗଲେଣି ସେତେବେଳେ ସେ ତା ଘର ଭିତରୁ ବାହାରକୁ ବାହାରି ଆସିଲା । ସେ ଯେମିତି ବାହାରି ଆସିଛି ହଠାତ୍ ସାଧୁ ଖୁବ୍ ଜୋରରେ ତା ହାତକୁ ଧରିନେଲେ । ସାଧୁ ଯେତେବେଳେ ତା ହାତକୁ ଜୋରରେ ଧରିନେଲେ ସେତେବେଳେ ତାର ମୁକ୍ତି ହୋଇଗଲା । ସାଧୁଙ୍କୁଦେଖି ସେ ଏମିତି ଭାବରେ ଚମକି ପଡ଼ିଲା, ଠିକ୍ ଭରକା ବଳଦ ଛତା ଦେଖି ଚମକିବା ଭଳି । ବଡ଼ ବଡ଼ ଜଟା ଲମ୍ବା ଲମ୍ବା ଧଳକ ଦେଖି ସେ ହଡ଼-ବଡ଼େଇ ଗଲା । ସେ ତାର ପୁରା ବଳ ଖଟାଇ ହାତ ଛଡ଼ାଉ ଛଡ଼ାଉ ସାଧୁଙ୍କୁ କହିଲା- ''ଛାଡ଼ିଦେ, ଛାଡ଼ିଦେ ମୋତେ ! ପାଷଣ୍ଡ କେଉଁଠିକାର, ଯା ଚାଲିଯା ମୋ ସାମନାରୁ । ଖବରଦାର ମୋ ଦେହକୁ ପୁଣି ଛୁଇଁଲେ······ମୋ ହାତ ଛାଡ଼ିଦେ ।''

କିନ୍ତୁ ସାଧୁ ଯେଉଁ ଭଳି ଭାବରେ ତାକୁ ଧରି ନେଇଥିଲେ ସେଥିରୁ ଖସି ଯିବାର ଉପାୟ ତାକୁ ଜଣା ନ ଥିଲା । ସାଧୁ ଖୁବ୍ ଦୃଢ଼ତା ସହକାରେ କହିଲେ—''ଅରେ ହେଲେ ଭଗବାନଙ୍କ ନାମ ଉଚ୍ଚାରଣ କର ।''

ସାଧୁଙ୍କ ମୁହଁରୁ ଏକଥା ଶୁଣି ସେ କାନରେ ଦେଇଥିବା ବିଣ୍ଡାକୁ ଅଧିକ ଭାବରେ ଠେଲିବାକୁ ଲାଗିଲା । ଏବେ ସାଧୁବାବା ନିଜର ରୂପ ଦେଖାଇଦେଲେ । ମଲ୍ଲ ବିଦ୍ୟାରେ ମଧ୍ୟ ସାଧୁ ଖୁବ୍ ଧୁରନ୍ଧର ଥିଲେ । ପିଲାବେଳେ ସେ ଆଖଡ଼ାରେ ରହି ଖେଳ ଶିଖିଥିଲେ । ସାଧୁ ଏପରି ଭାବରେ ତାକୁ ଏକ ଧାପଡ଼ ଦେଲେ ଯେ ସେ ଚିତ୍ତ ହୋଇ ପଡ଼ିଗଲା । ଏବେ ସାଧୁ ତା ଛାତି ଉପରକୁ ଚଢ଼ିଯାଇ ତା କାନରୁ ବିଣ୍ଡା ବାହାର କରି ଜୋରରେ କହିଲେ -''ରାମ !''

ଏହା କହିସାରି ସାଧୁ କହିଲେ -''ଦେଖ, କାଏ ଯଦି ଏହାର ବଦଳରେ ତୁମକୁ ଛ ମାଗିବାକୁ କହିବ, ତେବେ ତୁମେ କହିବ ଯାହା ଏହା ବଦଳର ଯୋଗ୍ୟ ବସ୍ତୁ ଅଟେ ତାହା ମୋତେ ଦେଇଦିଅ କାରଣ ମୁଁ ଏହାର ମୂଲ୍ୟ ଜାଣେନାହିଁ ।''

ଏହିସବୁ ଘଟଣା ପରେ ସାଧୁ ଚାଲିଗଲେ । ସେ ସବୁ କଥା ଶୁଣିଲା । ହେଲେ ଶୁଣିକରି ମଧ୍ୟ ନ ଶୁଣିଲା ପରି ରହିଲା । ସେଥିପ୍ରତି ଆଦୌ ଧ୍ୟାନ ବି ଦେଲାନାହିଁ । କିନ୍ତୁ ସାଧୁ ମହାତ୍ମାଙ୍କ ମୁହଁରୁ ଯେଉଁ ଭଗବାନଙ୍କ ଅମୋଘ ନାମ କାନଦ୍ୱାରା ତା ହୃଦୟରେ ପ୍ରବେଶ କଲା ତାହା ବ୍ୟର୍ଥ ହେବାର କଥା ନୁହେଁ । ତାହା ଅବ୍ୟର୍ଥ । ସେ ତାର ଫଳ ନିଶ୍ଚୟ ଦେଖାଇବ ।

ସାଧୁ ମହାତ୍ମା ଚାଲିଯିବାର କିଛିଦିନ ପରେ ତାର ମୃତ୍ୟୁ ସମୟ ଆସି ଉପସ୍ଥିତ ହେଲା । ଏହି ସମୟରେ ତାର ସମସ୍ତ ପାପ ମନେ ପଡ଼ିଲା । ଯମଦୂତମାନେ ଆସି ତା ପାଖରେ ଗର୍ଜ୍ଜନ ତର୍ଜ୍ଜନ କରି ଡରାଇଲେ ଓ ନାନାପ୍ରକାର ଭୟ ଦେଖାଇଲେ । ନିର୍ଦ୍ଦୟତା ପୂର୍ବକ ତାକୁ କାଳ ଫାଶରେ ବାନ୍ଧିଦେଇ ଯମଦୂତମାନେ ଯମରାଜାଙ୍କ ନିକଟରେ ଉପସ୍ଥିତ କଲେ । ଏହି ପାପୀର ମୁହଁ ଦେଖି କରି ଯମରାଜ ଜଣେ ଦୂତକୁ କହିଲେ—"ଶୀଘ୍ର ଚିତ୍ରଗୁପ୍ତଙ୍କୁ ଡକାଇ ଆଣ ।" ଦୂତଯାଇ ଚିତ୍ରଗୁପ୍ତଙ୍କୁ ଖବର ଦେଲେ । ପ୍ରଭୁଙ୍କଠାରୁ ଡ଼ାକରା ପାଇଁ ଚିତ୍ରଗୁପ୍ତ ବ୍ୟସ୍ତହୋଇ ପଡ଼ିଲେ ଓ କଲମ ଦୁଆତ ଧରି ଯମରାଜାଙ୍କ ପାଖକୁ ଦୌଡ଼ିଲେ । ଯମରାଜାଙ୍କ ସମୀପରେ ଆସି ପ୍ରଣାମକରି ହାତଯୋଡ଼ି ଠିଆହୋଇ ରହିଲେ । ଯମରାଜା ତାଙ୍କୁ କହିଲେ—"ଏଇ ଲୋକର ପାଞ୍ଜି ଖୋଲିକରି ମୋତେ କୁହ, ଏସବୁ କି କି ପ୍ରକାରର ପାପପୁଣ୍ୟ କରିଛି ।"

ଯମରାଜାଙ୍କ ଆଦେଶପାଇ ସେ ଶୀଘ୍ର ପାଞ୍ଜିର ପୃଷ୍ଠା ଲେଉଟାଇବାକୁ ଲାଗିଲେ । ପୃଷ୍ଠା ଲେଉଟାଉ ଲେଉଟାଉ ଚିତ୍ରଗୁପ୍ତ ଗୋଟିଏ ଜାଗାରେ ଅଟକି ଯାଇ କହିଲେ, "ଧର୍ମାବତାର ! ଏ ଲୋକ ପୁଣ୍ୟ କରିଛି ବୋଲି ଖାତାରେ କୌଣସିଠାରେ ଲେଖାନାହିଁ ଜୀବନ ସାରା ଏଲୋକ ପେଟ ପୋଷିଛି ଓ ପାପ କମେଇଛି । ସାଧୁଦ୍ରୋହୀ ଓ ନାସ୍ତିକଠାରୁ ଆଉ ଅଧିକ ପାପୀ କିଏ ଅଛି । ଏହାକୁ ନରକର ଭୟଙ୍କର କୁଣ୍ଡରେ ପକାଇବାର ଆଦେଶ କରନ୍ତୁ । ଅର୍ଜ୍ଜିଥିବା ପାପକର୍ମ ନିମନ୍ତେ ବହୁବର୍ଷ ପର୍ଯ୍ୟନ୍ତ ନରକ ଭୋଗିବା ଏହାପକ୍ଷେ ନିତାନ୍ତ ପ୍ରୟୋଜନ ।"

ଏସବୁ କଥା ଶୁଣି ଯମରାଜା କହିଲେ- "ଠିକ୍‌ଅଛି, ଏହାକୁ ନରକକୁ ପଠେଇ ଦିଅ । କିନ୍ତୁ ଯଦି କିଛି ସେ ପୁଣ୍ୟ କରିଥାଏ ତାହା ଚିପିରଖ । କାରଣ ଯଦି କେହି ବହୁପୁଣ୍ୟ କରିଥାଏ ଓ ତାଠାରୁ ଅଧା ପାପ କରିଥାଏ ଆମେ ତାକୁ ପ୍ରଥମେ ପାପ ଭୋଗିବା ନିମନ୍ତେ କହିଥାଉ । ପୁଣି ସେ ନିଷ୍ପାପ ହୋଇ ଚିରକାଳ ପୁଣ୍ୟ ଭୋଗିଥାଏ । ଏଣୁ ଯିଏ ବହୁତ ପାପ କରିଛି ସେତ ଭୁଲବଶତଃ ଟିକିଏ ପୁଣ୍ୟ କରିଥିବ । ଏଣୁ ତାକୁ ପ୍ରଥମେ ପୁଣ୍ୟ ଫଳ ଭୁଞ୍ଜାଇ ପରେ ନରକକୁ ପଠାଯାଏ ଯାହାଫଳରେ କି ସେ ସୁଖ ଭୋଗକରି ପରେ ଦୁଃଖ ଭୋଗିବା ଦ୍ୱାରା ଅଧିକ କଷ୍ଟ ଅନୁଭବ କରିବ ।"

ଯମରାଜାଙ୍କର ଏହିକଥାଶୁଣି ଚିତ୍ରଗୁପ୍ତ ତାଙ୍କର ସୂକ୍ଷ୍ମ ଦୃଷ୍ଟିକୁ ଆଉ ଟିକିଏ ସୂକ୍ଷ୍ମ କରିଦେଇ ସେହି ଲୋକକୁ ଧ୍ୟାନ ସହକାରେ ଦେଖି କହିଲେ, "ହଁ; ହଁ ଧର୍ମାବତାର ! ଜଣେ ସାଧୁଙ୍କ ଦୟାରୁ ଅନିଚ୍ଛାରେ ସେ ଏକ ମହାନ ପୁଣ୍ୟ କରିଛି । ତାର କାନରେ ଥରେ ସାଧୁଙ୍କ ମୁହଁରୁ ଭଗବାନଙ୍କ ନାମ ପଡ଼ିଅଛି । ଏଥିରୁ ଆପଣ ଯାହା ଉଚିତ ମନେକରୁଛନ୍ତି ତାପାଇଁ ଆପଣ ସୁଖର ବ୍ୟବସ୍ଥା କରିବା ହୁଅନ୍ତୁ ।

ଏକଥା ଶୁଣି ଯମରାଜଙ୍କର ମନରେ ସାମାନ୍ୟ ପରିବର୍ତ୍ତନ ଦେଖାଦେଲା । ସେ ବଡ଼ପ୍ରେମ ସହକାରେ କହିଲେ -ଭାଇ ! ତୁମେ ଅନିଚ୍ଛା ସତ୍ତ୍ୱେ ଥରେ ଭଗବାନଙ୍କ ନାମ ଶୁଣିଅଛ ଏହି କାରଣରୁ ତୁମେ ଯାହା ଚାହୁଁଛ ମାଗିନେଇପାର ।"

ବଡ଼ ଲୋକଙ୍କର ବାଣୀ ବିପତ୍ତି ସମୟରେ ସ୍ମରଣ ହୋଇଥାଏ ଓ ଏହାର ମହତ୍ତ୍ୱ ମଧ୍ୟ ଜଣା ପଡ଼ିଯାଏ । ଏହିପାପୀର ସାଧୁଙ୍କ ବାଣୀ ମନେ ପଡ଼ିଗଲା । ସେ ବଡ଼ ନମ୍ରତା ସହକାରେ କହିଲା-"ଧର୍ମବତାର ! ମୁଁ ଗୋଟିଏ ମୂର୍ଖ, କିଛି ଜାଣେନାହିଁ ବା କିଛି ବୁଝେ ନାହିଁ । ମୁଁ ମଧ୍ୟ ନିଜ ଇଚ୍ଛାରେ ଭଗବାନଙ୍କ ନାମ ଶ୍ରବଣ କରିନାହି । ଦୟାଳୁ ସାଧୁ ଜୋର କରି ମୋ ଶ୍ରୁତିରେ ଚଢ଼ିଯାଇ ମୋତେ ନାମ ଶୁଣାଇ ଦେଇଥିଲେ । ଏଣୁ ଏଥିରୁ ଯେଉଁ ଫଳ ମିଳିବା କଥା ମୋତେ ଦିଅନ୍ତୁ ।"

ପାପୀର ଏହି କଥା ଶୁଣି ଯମରାଜ ଅତ୍ୟନ୍ତ ପ୍ରେମ ସହକାରେ କହିଲେ-"ନାଭାଇ ! ନିଜ ଇଚ୍ଛାରେ ହେଉ ବା ଅନିଚ୍ଛା ଦ୍ୱାରା ହେଉ ଭଗବାନଙ୍କ ନାମ ଶ୍ରବଣର ଫଳ ରହିଛି । ପୁଣ୍ୟ ବି କରିଛ । ଏହା ବଦଳରେ ତୁମେ ଯାହାକିଛି ମାଗିବାର କଥା ମାଗି ନେଇପାର । ଏଥିରେ ସଙ୍କୋଚ କରିବାର କୌଣସି କାରଣ ନାହିଁ ।"

ଯମରାଜାଙ୍କର ବ୍ୟବହାରରେ ଏଭଳି ପରିବର୍ତ୍ତନ ଦେଖି ସେହିଲୋକ ବଡ଼ ଆଶ୍ଚର୍ଯ୍ୟ ହୋଇଗଲା । ତାମନରେ ନୂତନ ଆଶା ଓ ସାହସ ସଞ୍ଚାର ହେଲା । ତାର ଦୃଢ଼ ବିଶ୍ୱାସ ହେଲା ଯେ, ସେ ଏହି ମହା ବିପତ୍ତିରୁ ନିଶ୍ଚୟ ଉଦ୍ଧାର ପାଇ ପାରିବ । ସେ ସାହସର ସହ କହିଲା-"ମହାରାଜ ! ମୋତେ ଆପଣ କ'ଣ ପଚାରୁଛନ୍ତି ? ଧର୍ମ ଅଧର୍ମ ବିଚାର କରିବା ପାଇଁ ଆପଣ ହେଉଛନ୍ତି ଉପଯୁକ୍ତ ପାତ୍ର । କେଉଁ ପାପ ସକାଶେ ଓ କେଉଁ ପୁଣ୍ୟ ନିମନ୍ତେ କିପ୍ରକାର ଫଳ ପାଇବାକୁ ହେବ ଏହାର ଉପଯୁକ୍ତ ବିଚାର ଆପଣଙ୍କ ଅପେକ୍ଷା କିଏ ଅଧିକ କରିପାରେ ।

ଅନିଚ୍ଛାରେ ଭଗବାନଙ୍କନାମ ଶ୍ରବଣ ପାଇଁ ଯଦି କୌଣସି ଫଳଥାଏ, ତେବେ ମୋତେ ତାହା ପ୍ରଦାନ କରନ୍ତୁ ।"

ଏକଥା ଶୁଣି ଧର୍ମରାଜ କିଛି ସମୟ ପାଇଁ ଗମ୍ଭୀର ହୋଇପଡ଼ିଲେ ଓ ପାଖରେ ବସିଥିବା ମନ୍ତ୍ରୀ ଚିତ୍ରଗୁପ୍ତଙ୍କୁ କହିଲେ-"ବୁଦ୍ଧିମନ୍ତ୍ରୀ ! ଏହାର ଫଳ କ'ଣ ?"

ମନ୍ତ୍ରୀ ମହାଶୟ ଦୁଇହାତ ଯୋଡ଼ି କହିଲେ- ହେ ମର୍ମବତାର ! ଏହାର ଫଳ କହିବା ମୋ ଶକ୍ତିର ବାହାରେ । ଏହା ମଧ୍ୟ ମୋର କାର୍ଯ୍ୟ ନୁହେଁ । ମହାରାଜ ମୁଁ କେବଳ ପାପପୁଣ୍ୟର ହିସାବ ରଖିବା ଲୋକ । କେଉଁ କର୍ମଦ୍ୱାରା କିପ୍ରକାର ପାପ ବା ପୁଣ୍ୟ ହୁଏ ତାହା ହିଁ କେବଳ କହିବା ମୋର କାର୍ଯ୍ୟ । ପାପ ପୁଣ୍ୟ ନିମନ୍ତେ କି କି ପ୍ରକାର ସୁଖ ଦୁଃଖ ଦିଆଯିବ ସେ କଥା ବିଗୃର କେବଳ ଆପଣ ହିଁ କରିପାରିବେ ।

ମନ୍ତ୍ରୀଙ୍କ କଥା ଶୁଣି ବଡ଼ ନୈରାଶ୍ୟ ଭାବରେ ଯମରାଜା କହିଲେ-"ଭାଇ ! ସତକଥା । ହେଲେ ଏହାର ଫଳ କ'ଣ ହେବ ମୁଁ ଜାଣେନାହିଁ । ସମ୍ଭବତଃ ସ୍ୱର୍ଗାଧୀଶ ଇନ୍ଦ୍ର ଏହାର ଫଳ କ'ଣ ହେବ ଜାଣିଥିବେ କାରଣ ସେ ହେଉଛନ୍ତି ଦେବତା ମାନଙ୍କର ରାଜା । ଚାଲନ୍ତୁ, ତାଙ୍କ ପାଖକୁ ଯାଇ ଏହାର ସତ୍ୟାସତ୍ୟ ବୁଝି କରି ଆସିବା ।"

ବିମାନ ସଜହେଲା । ସେହି ପାପୀକୁ ପ୍ରେମ ସହକାରେ ପାଖରେ ବସାଇ ଯମରାଜା ସ୍ୱର୍ଗଲୋକକୁ ଯାତ୍ରା କଲେ । ଦେବରାଜ ଇନ୍ଦ୍ରଙ୍କର ଏକ ବିରାଟ ସଭା ଚାଲିଥାଏ । ବହୁ ବଡ଼ ବଡ଼ ଋଷି, ମହର୍ଷି, ଦେବତା, ଯକ୍ଷ, କିନ୍ନର ତୀର୍ଥ, ନଦ, ନଦୀ ଓ ବୃକ୍ଷ ଆଦି ଅଧିଷ୍ଠାତା ଦେବତା ଗଣ ସେଠାରେ ବିରାଜମାନ କରିଥିଲେ । ଯମରାଜଙ୍କ ଆଗମନକୁ ସମସ୍ତେ ସ୍ୱାଗତ ଜଣାଇଲେ । ବସିବାପାଇଁ ଆସନ ଦେଲେ ଦେବରାଜଙ୍କ ପାଖରେ ଦୁଇଟି ସୁନ୍ଦର ଆସନରେ ଦୁଇଜଣଯାକ ବସିଲେ । ପୂଜା, ସତ୍କାର କୁଶଳାଦି ପ୍ରଶ୍ନ ଓ କଥାବାର୍ତ୍ତା ସରିବାପରେ, ଯମରାଜ ନିଜଆଡ଼ୁ ଆରମ୍ଭକରି କହିଲେ-ମୋ ସାଙ୍ଗରେ ଏ ଯେଉଁ ପୁଣ୍ୟାତ୍ମା ଆସି ଏଠାରେ ବିରାଜ ମାନକରିଛନ୍ତି ତାଙ୍କୁ ନେଇ ଏକ ଧର୍ମ ସଙ୍କଟ ଦେଖା ଦେଇଛି । ଏହାର ନିର୍ଣ୍ଣୟ ନିମନ୍ତେ ମୁଁ ଆପଣଙ୍କ ପାଖକୁ ଆସିଛି । ଏଠାରେ ଆମ ଦେବତାମଣ୍ଡଳୀର ପୁରୋହିତ ଭଗବାନ ବୃହସ୍ପତି ଏବଂ ବହୁ ବଡ଼ ବଡ଼ ଋଷି, ମହର୍ଷି, ଦେବତା ମାନେ ସମସ୍ତେ ମିଶି ଏହାର ସମାଧାନ କରନ୍ତୁ, ଯେ ସାଧୁ ମୁଖରୁ ଥରେ ମାତ୍ର ଭଗବାନଙ୍କ ନାମ ଶ୍ରବଣ କରିବା ଦ୍ୱାରା ଏହାଙ୍କୁ କି ଫଳ ପ୍ରଦାନ କରାଯିବ ଓ କେଉଁ ଲୋକକୁ ପଠାଯିବ ।

ଯମମରାଜଙ୍କ ପ୍ରଶ୍ନ ଶ୍ରବଣ କରି ସମସ୍ତେ ନୀରବ ରହିଗଲେ । କେହି କିଛି କହିଲେନାହିଁ । ଏହାପରେ ଗମ୍ଭୀର ଭାବରେ ଦେବଗୁରୁ ବୃହସ୍ପତି କହିଲେ- "ଭାଇମାନେ ! ସତକଥାଯେ ଆମେମାନେ ଏକଥାର ସମାଧାନ କରି ପାରିବା ନାହିଁ । ଆମ୍ଭମାନଙ୍କୁ ଜଣାନାହିଁ ଏହି ମହାନ ପୁଣ୍ୟର ପ୍ରତିଫଳ ସ୍ୱରୂପ ଏହାଙ୍କୁ କ'ଣ ପ୍ରଦାନ କରାଯିବ । ଏଣୁ ସେ ଯାହା ଇଚ୍ଛା କରୁଛନ୍ତି ତାଙ୍କୁ ତାହା ଦିଆଯାଉ ।"

ଯମରାଜ କହିଲେ-"ମହାରାଜ ! ଯଦି ଏ କିଛି ଇଚ୍ଛା କରନ୍ତେ ତେବେ କୌଣସି

ଅସୁବିଧା ହୁଅନ୍ତାନାହିଁ । ଏହି ମହାତ୍ମା କହୁଛନ୍ତି ଯେ, ଏହାଦ୍ୱାରା ଯାହା ଉଚିତ ଫଳ ତାହା ମୋତେ ଦିଅନ୍ତୁ ।

ଏହାପରେ ଦେବରାଜ ଇନ୍ଦ୍ର କହିଲେ- "ତେବେ ଭାଇ-! ଏହାର ସମାଧାନ ପିତାମହ ବ୍ରହ୍ମାହିଁ କେବଳ କରିପାରିବେ । ସେ ହେଉଛନ୍ତି ଧର୍ମ ପ୍ରବର୍ତ୍ତକ । ଧର୍ମା ଧର୍ମର ଯଥାର୍ଥ ସମାଧାନ କରିବାକୁ ସେ ହିଁ କେବଳ ସମର୍ଥ ଅଟନ୍ତି । ଚାଲନ୍ତୁ, ଆମେ ସମସ୍ତେ ଏହାର ସମାଧାନ ନିମନ୍ତେ ତାଙ୍କ ପାଖକୁ ଯିବା ।"

ସବୁଦେବତା ମଣ୍ଡଳୀର ବିମାନ ଚାଲିଲା ବ୍ରହ୍ମଲୋକକୁ । ଯମରାଜ ସମସ୍ତଙ୍କ ବିମାନ ପଛରେ ନିଜର ବିମାନରେ ବସି ଚାଲିଲେ । ବ୍ରହ୍ମଲୋକରେ ପହଞ୍ଚି ସମସ୍ତେ ପିତାମହଙ୍କ ସଭାରେ ପ୍ରବେଶ କରି ତାଙ୍କର ପାଦପଦ୍ମରେ ପ୍ରଣାମ କଲେ । କୁଶଳ ପ୍ରଶ୍ନ ପଚାରି ସାରିବାପରେ ଯମରାଜ ତାଙ୍କର ଅଭିପ୍ରାୟ ବଖାଣି ବସିଲେ-ଥରେ ମାତ୍ର ସାଧୁଙ୍କ କୃପାରୁ ଅନିଚ୍ଛା ସତ୍ତ୍ୱେ ଏହିଲୋକ ଭଗବାନଙ୍କ ନାମ ଶୁଣି ଅଛି । ଏହାର ଫଳ ସ୍ୱରୂପ ସେ କିଛି ମାଗୁନାହିଁ ବା ଇଚ୍ଛା କରୁନାହିଁ । କେବଳ କହୁଛି ଏହାଦ୍ୱାରା ଯେଉଁ ଯଥାର୍ଥ ଫଳ ମିଳିବା କଥା ତାହା ନ୍ୟାୟତଃ ମୋତେ ପ୍ରଦାନ କରାଯାଉ ।"

ସବୁ ଶୁଣିସାରି ବ୍ରହ୍ମା ଅତି ଗମ୍ଭୀର ଭାବରେ କହିଲେ-"ଭାଇ ! ଦେଖ ଏହାଠିକ୍ ଯେ, ମୁଁ ହେଉଛି ପ୍ରବୃତ୍ତି ମାର୍ଗର ପକ୍ଷପାତି । ସୃଷ୍ଟି ରଚନା, ଧର୍ମ ଅଧର୍ମର ବିଚାର କହିବା ହେଲା ମୋର କାମ । କିନ୍ତୁ ଭଗବାନଙ୍କ ନାମର ବର୍ତ୍ତନ ସବୁଧର୍ମ ପରେ । ଭଗବାନଙ୍କ ନାମର ମହିମା ମୁଁ କେମିତି ଜାଣିବି । ହିଁ ଶିବ ସବଦା ରାମ ରାମ ଜପ କରନ୍ତି । ସେ ନିଶ୍ଚୟ ଏହାର କୌଣସି ମହତ୍ତ୍ୱ ଜାଣିଛନ୍ତି । ଏଣୁ ସବୁବେଳେ ସେ ରାମନାମ ଜପୁଛନ୍ତି ଚାଲନ୍ତୁ, ମୁ ବି ଯିବି, ତାଙ୍କ ପାଖକୁ ଯାଇ ଏହାର ମହତ୍ତ୍ୱ ପଚାରି ବୁଝିଆସିବା ।"

ସମସ୍ତେ ଯାଇ କୈଳାସ ପର୍ବତରେ ପହଞ୍ଚିଲେ । ଶିବ ସମସ୍ତ ଘଟଣା ଶୁଣି କହିଲେ-"ଦେଖଭାଇ ! ନାମର ଯଥାର୍ଥ ମାହାତ୍ମ୍ୟ ଓ ଏହା ଉଚ୍ଚାରଣ କରିବାର ଯଥାର୍ଥ ଫଳ ଶ୍ରୀ ହରିଙ୍କ ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ । ଏଣୁ ଚାଲନ୍ତୁ ଆମ୍ଭେ ମାନେ ସମସ୍ତେ ବୈକୁଣ୍ଠ ଲୋକରେ ଥିବା ଭଗବାନ ଲକ୍ଷ୍ମୀନାରାୟଣଙ୍କ ନିକଟକୁ ଯିବା । ସେ ହିଁ ଏହାର ସମାଧାନ କରିବାପାଇଁ ଯୋଗ୍ୟ ଅଟନ୍ତି ।"

କ୍ରମେ ଅମୁକ୍ ଲିହଙ୍ଘ ସମାନ ବିମାନଗୁଡ଼ିକ ବଢ଼ି ଚଢ଼ି ବୈକୁଣ୍ଠ ଲୋକ ଆଡ଼କୁ ଚାଲିଲା । ଭଗବାନଙ୍କ ନିକଟରେ ଏହି ଅଭିଯୋଗ କରାଗଲା କିନ୍ତୁ ଭଗବାନ କିଛି କହିଲେ ନାହିଁ ସେହି ପୁରୁଷକୁ ଡ଼ାକି ନିଜ କୋଳରେ ବସାଇ ଦେବତାମାନଙ୍କୁ କିଛି କହିଲେ "ତୁମେ ମାନେ ନିଜ ନିଜ ସ୍ଥାନକୁ ଆନନ୍ଦରେ ଫେରଯାଅ ।"

ଏକଥା ଶୁଣି ହାତଯୋଡ଼ି ଯମରାଜ କହିଲେ- "ଆଜ୍ଞା ! ଯେଉଁ କାର୍ଯ୍ୟପାଇଁ ଆମେମାନେ ଆସିଛୁ ତାର କିଛି ସମାଧାନ ହେବା ଦରକାର । ଏହିଲୋକକୁ ମୁଁ କେଉଁ ପୁରକୁ ନେଇଯିବି ?"

ଏହାଶୁଣି ହସି ହସି ଭଗବାନ କହିଲେ-"ଭାଇ । ସମାଧାନ ତ ହୋଇଗଲା । ତାକୁ ଆଉ କେଉଁଠିକି ନେଇ ଯିବବୋଲି ପଚାରୁଛ କ'ଣ ? ମୋର ଧାମକୁ ଯିଏ ଆସେ ସେ ଆଉ ଫେରଯାଏ ନାହିଁ,ମୋର ନାମ ଯିଏ ନିଏ ବା ଶୁଣେ, ମୁଁ ତାକୁ କିଛି ଦେବାକୁ ସମର୍ଥ ନୁହେଁ, କେବଳ ତାକୁ ନିଜର କରି ମୋ କୋଳରେ ବସାଇଦିଏ ।"ଭଗବାନଙ୍କ ମୁହଁରୁ ଏହି କଥାପଦକ ଶୁଣି ସବୁ ଦେବତା ଏକ ସ୍ୱରରେ କହିଲେ, "ଭକ୍ତବତ୍ସଳ ଭଗବାନଙ୍କ ଜୟ । ଭଗବାନ ଓ ତାଙ୍କର ପ୍ରେମୀ ଭକ୍ତମାନଙ୍କର ଜୟ ।"

ସୁତ କହିଲେ- "ମୁନି ! ଭଗବାନନାମ ଶ୍ରବଣର ଏପରି ମହିମା ଶ୍ରବଣକରି ଦେବତାମାନେ ଆନନ୍ଦମନରେ ନିଜ ନିଜର ପୁରକୁ ଲେଉଟି ଆସିଲେ ।"

ବିଷ୍ଣୁଦୂତମାନେ ଯମଦୂତମାନଙ୍କୁ କହିଲେ "ଅନିଚ୍ଛା ଭାବରେ ଭଗବାନଙ୍କ ନାମ ଶ୍ରବଣ କଲେ ମଧ୍ୟ ଏହିପରି ଫଳ ମିଳିଥାଏ । ତେଣୁ ଏହି ଅଜାମିଳ ଯେ ଆର୍ତ୍ତିକଣ୍ଠରେ 'ନାରାୟଣ' ନାମ କୀର୍ତ୍ତନ କରିଥିଲା, ତାକୁ ତୁମେ ଛାଡ଼ିଦିଅ ।

ଶୁକଦେବ କହିଲେ "ରାଜନ ! ଏହିପରି ଭାବରେ ଭଗବାନଙ୍କ ପ୍ରିୟ ଦୂତଗଣ ବିଶୁଦ୍ଧ ଧର୍ମଭାବ ନିର୍ଣ୍ଣୟ କରିଥିଲେ । ନାରାୟଣ ନାମର ମହିମା ଗାୟନ କରିବା ଦ୍ୱାରା ଯମଦୂତମାନେ ଭୟରେ ଅଜାମିଳକୁ ଛାଡ଼ିଦେଇ ପ୍ରଣାମ କରି ଯେଉଁଠାରୁ ଆସିଥିଲେ ସେହି ସ୍ଥାନକୁ ଶୂନ୍ୟ ହସ୍ତରେ ଫେରିଗଲେ ।

ଯମଦୂତମାନଙ୍କଠାରୁ ମୁକ୍ତ ହୋଇସାରିବା ପରେ ଅଜାମିଳର ଚେତନା ଫେରି ଆସିଲା । ସାମନାରେ ସେ ଦିବ୍ୟରୂପଧାରୀ ଭଗବାନଙ୍କର ପ୍ରିୟ ପାର୍ଷଦମାନଙ୍କ ଦର୍ଶନ ଲାଭ କରି ସେମାନଙ୍କୁ ପ୍ରଣାମ କଲା । କୃତଜ୍ଞତା ସହକାରେ ସେମାନଙ୍କୁ କିଛି କହିବାକୁ ଆରମ୍ଭ କଲା ବେଳକୁ ସେମାନେ ସମସ୍ତେ ଅନ୍ତର୍ଦ୍ଧାନ ହୋଇଗଲେ । ନିଦ ଭାଙ୍ଗିଗଲେ ସ୍ୱପ୍ନ ଅପସାରିତ ହୋଇଗଲା ପରି ଅଜାମିଳକୁ ଜଣାଗଲା । ବିଷ୍ଣୁଦୂତମାନଙ୍କୁ ସମ୍ମୁଖରେ ଦେଖିବାକୁ ନ ପାଇ ଅଜାମିଳ ମନରେ ଘୋର ଦୁଃଖ ଜାତହେଲା । ସେ ତାର ପାପକୁ ମନେ ପକାଇ ଅତ୍ୟନ୍ତ ଅନୁତାପ କରିବାକୁ ଲାଗିଲା । ରାଜନ ! ଯଥାର୍ଥ ଅନୁତାପଠାରୁ ପାପର ପ୍ରାୟଶ୍ଚିତ ଆଉ କିଛି ନ ଥାଏ । ଅଜାମିଳ କିପରି ହୃଦୟସ୍ପର୍ଶୀ ଅନୁତାପ କଲା ସେହି କଥା ମୁଁ ଶୁଣାଇବି ।"

## —ଛପ୍‌ପୟ—

ସନ୍ତ ଅନୂଗ୍ରହ କରୀ ବିମୁଖକୁ ନାମ ସୁନାୟୌ ।
ମରୟୌ ଅଧମ ଜବ ଦୂତ ତୁରତ ଯମପୁର ପହୁଁଚ୍ୟୌ ॥
ନାମ ଶ୍ରବଣ କୋ ପୁନ୍ୟ ସୁନ୍ୟୋ ସବ ସୁର ଘବରାଏ ।
ବ୍ରହ୍ମଲୋକ, ଶିବଲୋକ ଫେର ସବ ହରିପୁର ଆୟେ ॥
ସୁନି ସବ ହରିନେ ଅଂକମହଁ, ପ୍ରେମ ସହିତ ତାକୂଁ ଲୟୌ ।
ଭବବନ୍ଧନତେଂ ମୁକ୍ତ ହୈ, ପ୍ରଭୁ ପାର୍ଷଦ ଓ୍ୱହ ବନି ଗୟୌ ॥



# ଅଜାମିଳର ଅନୁତାପ

ଅଜାମିଳୋଽପ୍ୟଥାକର୍ଣ୍ଣ୍ୟ ଦୂତାନାଂ ଯମକୃଷ୍ଣୟୋଃ ।
ଧର୍ମଂ ଭାଗବତଂ ଶୁଦ୍ଧଂ ତ୍ରୈବିଦ୍ୟଂ ଚ ଗୁଣାଶ୍ରୟମ୍ ॥
ଭକ୍ତିମାନଭଗବତ୍ୟାଶୁ ମାହାତ୍ମ୍ୟଶ୍ରବଣାଦ୍ଧରେଃ ।
ଅନୁତାପୋ ମହାନାସୀତ୍ସ୍ମରତୋଽଶୁଭମାତ୍ମନଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୨ୟ ଅଧ୍ୟାୟ ॥ ୨୪-୨୫ ଶ୍ଳୋକ ]

## ଛପ୍ପୟ

ସୁନକେ ଯମକେ ଦୂତ ନାମ ମହିମା ହୁଲସାୟେ ।
ପାଶ ମୁକ୍ତ ସୋ କରୟୋ ଦୌର ସଂଯମନୀ ଆୟେ ॥
ଇତ ମୁନୀ ଶୁଭ ସମ୍ବାଦ ନାମ କୀ ମହିମା ଜାନୀ ।
ନିଜ ପାପନକୁଁ ସୁମିର ଅଜାମିଲ ମନ ଅତ ଗ୍ଲାନୀ ॥
କର ପାପନକୁଁ ୟାଦ କୋ, ପଶ୍ଚିତାପେଁ ଦୁଃଖ ଅତ କରେଁ ।
ତିନକେ ଅଘ ସନ୍ତାପ ପ୍ରଭୁ, ଜାନି ହୃଦୟ ଭଲ-ସବ ହରେଁ ॥

ଦେହଧାରଣ କରିଥିବା ଏମିତ କୌଣସି ପ୍ରାଣୀ ନାହିଁ, ଯିଏ କି କିଛି ପାପ କରିନାହିଁ । ପାପ ହୋଇଯିବା କିଛି ଗୋଟିଏ ଆଶ୍ଚର୍ଯ୍ୟ କଥା ନୁହେଁ । ପାପ ନ ହେବାଟି ହେଉଛି ଆଶ୍ଚର୍ଯ୍ୟର କଥା । ସାଧାରଣ ମନୁଷ୍ୟ ପକ୍ଷରେ ପାପ ଓ ପୁଣ୍ୟ ଦୁଇଟିଯାକ ଘଟିଥାଏ । ଖୁବ୍ କମ୍ ପ୍ରାଣୀମାନଙ୍କର ମନ ପୁଣ୍ୟ ଆଡ଼କୁ ଯାଇଥାଏ । ଅଧିକାଂଶ ପ୍ରାଣୀମାନଙ୍କର ମନ ପାପଆଡ଼କୁ ଗତି କରିଥାଏ । ପାପ କରି ସାରିବା ପରେ ମନରେ ଧାରଣା ଆସେ—ହାୟ ! ମୋ ଦ୍ୱାରା ଏହି ପାପକାର୍ଯ୍ୟ ହେଲା, ଏହା ବହୁତ ଖରାପ କଥା । ପାପ ହୋଇଯିବା ପରେ ମନ ମଧ୍ୟରେ ଯେଉଁ ତାପ ହୁଏ ତାକୁ ଅନୁତାପ ବୋଲି କୁହାଯାଏ । ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ଏହି ଦୁଇ ପ୍ରକାରର ପାପ ହୃଦୟକୁ ଦହନ କରିଦିଏ । ପାପର ସର୍ବୋତ୍କୃଷ୍ଟ

ପ୍ରାୟଶ୍ଚିତ୍ତ ହେଲା ଅନୁତାପ । ପାପ କରି ସାରିବା ପରେ ଯାହାର ଧାର୍ମିକ ଅନୁତାପ ସୃଷ୍ଟି ହୋଇଥାଏ ତାର ସମସ୍ତ ପାପ ଜଳି ପୋଡ଼ି ପାଉଁଶ ହୋଇଯାଏ ।

ଶ୍ରୀଶୁକଦେବ କହିଲେ "ରାଜନ ! ଅଚେତଭାବରେ ଥାଇ ଅଜାମିଳ ବିଷ୍ଣୁଦୂତ ଓ ଯମଦୂତମାନଙ୍କର ସମ୍ବାଦ ଶ୍ରବଣ କରୁଥିଲା । ଭଗବାନଙ୍କ ଅନୁଗ୍ରହରୁ ତାଙ୍କ ପାର୍ଷଦମାନଙ୍କ ଦ୍ୱାରା ସେ ନିଷ୍ଠୁର ଯମଦୂତମାନଙ୍କ କବଳରୁ ମୁକ୍ତିଲାଭ କରିଛି, ଏକଥା ସେ ବେଶ୍ ଭଲଭାବରେ ଜାଣି ପାରିଲା । ଅଜ୍ଞାତସାରରେ ମଧ୍ୟ ଭଗବାନଙ୍କ ନାମର ଏତେବଡ଼ ମହିମା ରହିଛି ଏକଥା ଜାଣିପାରି ଅଜାମିଳ ଆନନ୍ଦରେ ଉତ୍ଫୁଲ୍ଲିତ ହୋଇ ଉଠିଲା । ବଡ଼ ସାବଧାନତା ସହକାରେ ସେ ବିଷ୍ଣୁଦୂତମାନଙ୍କ ମୁହଁରୁ ନାରାୟଣଙ୍କ ନାମର ମହିମା ଶୁଣୁଥିଲା । ଭଗବାନଙ୍କ ଦୂତମାନଙ୍କ ନିର୍ଦ୍ଦେଶରେ ଯମଦୂତମାନେ ତାକୁ ମୁକ୍ତ କରି ଚାଲି ଯିବାରୁ ଅଜାମିଳ କୃତଜ୍ଞତା ସହକାରେ ମଥା ଅବନତ କରି ରହିଲା । ପ୍ରଭୁଙ୍କ ଦୂତମାନଙ୍କୁ କୃତଜ୍ଞତା ସହକାରେ ପ୍ରଣାମ କରିବାକୁ ଯିବା ସମୟରେ ପ୍ରଭୁ-ପାର୍ଷଦମାନେ ଅନ୍ତର୍ଦ୍ଧାନ ହୋଇଗଲେ । ସେମାନଙ୍କର ଅନ୍ତର୍ଦ୍ଧାନ ଘଟିବାରୁ ଅଜାମିଳ ପୂର୍ବ ପାପ ସ୍ମରଣକରି ଅନୁତାପ କରିବାକୁ ଲାଗିଲା । ସେ ଅତ୍ୟନ୍ତ ଅନୁତାପରେ ଜର୍ଜରିତ ହୋଇ ନିଜକୁ ବହୁତ ଧିକ୍କାର କରିବାକୁ ଲାଗିଲା – ହାୟ ! ମୁଁ ବଡ଼ ନୀଚ ଅଟେ, ମୁଁ ଜଣେ ବେଦଜ୍ଞ ବ୍ରାହ୍ମଣ ହୋଇ ମଧ୍ୟ ଇନ୍ଦ୍ରିୟକୁ ବଶ କରିପାରିଲି ନାହିଁ । ମୋ ପାଇଁ ଏହା ବଡ଼ ଲଜ୍ଜ୍ୟା ଓ ପରିତାପର ବିଷୟ । ମୋର ବେଦ ଅଧ୍ୟୟନ, ଯମ, ନିୟମ, ବ୍ରତ ଅଗ୍ନିସେବା, ଗୁରୁସେବା ଆଦି ସମସ୍ତ ଶୁଭକର୍ମ ନିରର୍ଥକ । କାହିଁ ମୁଁ କୁଳୀନ ବ୍ରାହ୍ମଣ ଆଉ କାହିଁ ସେହି ବ୍ୟଭିଚାରିଣୀ ବେଶ୍ୟା ?

ମୋର ଯେ ସ୍ତ୍ରୀ ନ ଥିଲା ତା ନୁହେଁ । ସୁନ୍ଦରୀ ପତିବ୍ରତା, ସତୀସାଧ୍ୱୀ, ଯୁବତୀ, କୁଳବତୀ, ଧର୍ମପତ୍ନୀ ମୋର ଘରେ ଥିଲା, ହେଲେ ମୁଁ ଏତେ ଅଧମ ଯେ ଦାସୀ ଗର୍ଭରୁ ପୁତ୍ର ଜନ୍ମ କରି ମୋର ବ୍ରାହ୍ମଣପଣକୁ ନଷ୍ଟ କରିଦେଲି । ସପ୍ତପୁରୁଷଙ୍କ ପାଖରେ ମୁଁ କେମିତି ମୁହଁ ଦେଖାଇବି ? ନୀଚ, ନିନ୍ଦିତ, କୁଳକଳଙ୍କ, ପାପୀ, ଦୁରାଚାରୀ ଦ୍ୱିଜାଧମ ବୋଲି ନିଜକୁ କହି ବାରମ୍ବାର ଧିକ୍କାର କରିବାକୁ ଲାଗିଲା । ମୋର ଏପରି କାହିଁକି ବୁଦ୍ଧି ଉଦୟ ହେଲା । ଅମୃତଭାଣ୍ଡ ଛାଡ଼ିଦେଇ ମୁଁ ବିଷଭାଣ୍ଡରେ ହାତ ପୂରାଇଲି । ସୁସ୍ୱାଦୁ ପରମ ଭଗବତ ପ୍ରସାଦକୁ ଛାଡ଼ି ଦୁର୍ଗନ୍ଧ ପଚା କୁକୁର ମାଂସ ପ୍ରତି ମନ ବଳାଇଲି, ରତ୍ନମାଳାକୁ ଛାଡ଼ିଦେଇ ଚକମକିଆ କାଚମାଳି ପ୍ରତି ଆକୃଷ୍ଟ ହେଲି । ଅଳ୍ପ ବୟସ୍କା ପତିବ୍ରତା ପତ୍ନୀକୁ ଛାଡ଼ି ସୁରାପାନକାରିଣୀ କୁଳଟା ବେଶ୍ୟା ସହ ସହବାସ କଲି !

ପୃଥିବୀ ମାତିକରି କହେ —ମୁଁ ସମସ୍ତଙ୍କ ଭାର ସହିବାକୁ ସକ୍ଷମ, କିନ୍ତୁ କୃତଘ୍ନର ଧାରଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ମୋ ଭଳି କୃତଘ୍ନ ଏଇ ସଂସାରରେ ଆଉ କିଏ ଅଛି ? ମୁଁ ପିତାମାତାଙ୍କର ଏକମାତ୍ର

ଆଶାଭରସା ଥିଲି, ଯେଉଁମାନେ କି ସେମାନଙ୍କର ଅନାବିଳ ପ୍ରେମ ପ୍ରଦାନ ପୂର୍ବକ ମୋର ଲାଳନ ପାଳନ କରି ମୋର ମଳମୂତ୍ରକୁ ପରିଷ୍କାରକରି, କୋଳରେ ଶୁଆଇ ମୋତେ ସୁଖରେ ପାଳନକରିଥିଲେ । ସେମାନେ ମୋଠାରୁ ଆଶାକରିଥିଲେ ବୃଦ୍ଧାବସ୍ଥାରେ ମୁଁ ସେମାନଙ୍କର ସେବାକରିବି, କିନ୍ତୁ ମୁଁ ଏପରି ନୀଚ ହୋଇଗଲି ଯେ ସେମାନଙ୍କର ସମସ୍ତ ଧନ ଅପହରଣ କରି ସେମାନଙ୍କୁ ନିର୍ଦ୍ଧନ କରି ଶେଷରେ ପରିତ୍ୟାଗ କଲି । ମୋର ପାପର ସୀମାନାହିଁ, ହିସାବ ବି ନାହିଁ । ଘୋର ନରକରେ ପତିତ ହେବା ବ୍ୟତୀତ ମୋପକ୍ଷରେ କୌଣସି ଅନ୍ୟଗତି ନାହିଁ । ଧର୍ମଦ୍ରୋହୀ ପାପୀ ପୁରୁଷକୁ ନାନାପ୍ରକାର ଯମ ଯାତନା ଭୋଗିବାକୁ ହେବ, କିନ୍ତୁ ଏଇ ଯେଉଁ ଅଭୂତପୂର୍ବ ଦିବ୍ୟ ଦୃଶ୍ୟ ଦେଖୁଅଛି, ଏସବୁ ବୋଧେ ମୋ ମନର ଭ୍ରମ, ସ୍ୱପ୍ନ । ମୁଁ ଶୋଇ-ପଡ଼ିନଥିଲି, ଚେଇଁଥିବା ଅବସ୍ଥାରେ ଏସବୁ ହୋଇଗଲା । କିନ୍ତୁ ଯେଉଁମାନେ ମୋତେ ଭୟଙ୍କର ବନ୍ଧନରୁ ମୁକ୍ତକଲେ, ସେହି ସୌମ୍ୟ ମୂର୍ତ୍ତି ଚତୁର୍ଭୁଜ ପୁରୁଷଗଣ କେଉଁଆଡ଼େ ଅଦୃଶ୍ୟ ହୋଇଗଲେ । ଯେଉଁମାନେ ମୋତେ ଜୋରରେ ବାନ୍ଧି ଆଣିଥିଲେ, ସେମାନେ କିଏ । ସେମାନେ ଅତି ଭୟଙ୍କର ଓ ବଳବାନ ଥିଲେ । ମୋତେ ଘୋର କଷ୍ଟ ଦେଲେ ହଠାତ୍ ଯେଉଁ ଚାରିଜଣ ସିଦ୍ଧ ଏଠାକୁ ଆସିଥିଲେ, ସେମାନଙ୍କ ଦର୍ଶନ ଅତ୍ୟନ୍ତ ଅପୂର୍ବ । ଏହି ଦିବ୍ୟ ଦର୍ଶନ କୌଣସି ପାପୀକୁ ମିଳେନାହିଁ । ଜଣାଯାଉଛି ମୋର ପୂର୍ବଜନ୍ମର କୌଣସି ମହାନ୍ ପୁଣ୍ୟର ଫଳ ଉଦୟ ହେବାରୁ ମରଣ କାଳରେ ମୁଁ ଏମାନଙ୍କର ଦର୍ଶନ ଲାଭ କଲି । ମୁଁ ଏହି ଜନ୍ମରେ ବହୁ ପାପ ଅର୍ଜନକରିଛି ; ବ୍ରାହ୍ମଣତ୍ୱକୁ ନଷ୍ଟକରି ବ୍ୟଭିଚାରୀ ହୋଇଛି, ପରଧନରେ ଚୋରି ବଳାଇ ନିରପରାଧ ପ୍ରାଣୀମାନଙ୍କୁ କଷ୍ଟ ଦେଇଛି । ଯଦି ମୋର ପୂର୍ବଜନ୍ମର ମହାନ୍ ପୁଣ୍ୟଫଳ ଉଦୟ ହୋଇ-ନଥାଆନ୍ତା ତେବେ ମରଣ ସମୟରେ ତୁଣ୍ଡରୁ ଭଗବାନଙ୍କ ନାମ ବାହାରି ନଥାଆନ୍ତା । ଅଜ୍ଞାନ ଭାବରେ ଶେଷ ସମୟରେ ମୋ ମୁହଁରୁ ଭଗବାନଙ୍କ ନାମ ବାହାରିଥିବା ହେତୁ ତାହା ବର୍ତ୍ତମାନ ପାଇଁ ମୋପକ୍ଷରେ ମଙ୍ଗଳଦାୟକ । ବର୍ତ୍ତମାନ ଆଉ ନରକକୁ ଯାଇ ମୋତେ ଯମଯନ୍ତ୍ରଣା ସହିବାକୁ ପଡ଼ିବ ନାହିଁ ।

ଶ୍ରୀ ଶୁକଦେବ କହିଲେ -"ରାଜନ ! ତୁମେ ଭାବ ନାହିଁ ଯେ ଅଜାମିଳ ଅଜ୍ଞାନ ଥିଲା । ସେ ପ୍ରଥମେ ସମସ୍ତ ବେଦ ଶାସ୍ତ୍ର ଅଧ୍ୟୟନ କରିଥିଲା ଓ ଭଲ ଭାବରେ ଜାଣିଥିଲା ଯେ ନାରାୟଣ ହରିଙ୍କର ନାମ ଅଟେ । ସେ ମଧ୍ୟ ଜାଣିଥିଲା ମୃତ୍ୟୁ ସମୟରେ ମୁହଁରୁ ନାରାୟଣ ନାମ ଉଚ୍ଚାରିତ ହେଲେ ମୁକ୍ତିମିଳେ । କିନ୍ତୁ ସେହି ସମୟରେ ସେ ଏପରି ଭାବରେ ବେଶ୍ୟାସକ୍ତ ହୋଇ ପଡ଼ିଥିଲା ଯେ ସବୁ ଜ୍ଞାନ ଭୁଲିଯାଇଥିଲା । ଶେଷରେ ତାର ସମସ୍ତ ମୋହ କନିଷ୍ଠ ପୁତ୍ର ନାରାୟଣ ଉପରେ

ରହିଥିଲା । ଭଗବାନ କୃପା ସାଗର ଅଟନ୍ତି । ସେ କହନ୍ତି—କଏ ମୋର ପାଷାଣ ମୂର୍ତ୍ତିକୁ ପ୍ରେମ କରୁଛି ତ, କଏ ମୋର କାଷ୍ଠ, ଧାତୁ, ଚନ୍ଦନମୟ, ମଣିମୟ ମୂର୍ତ୍ତି ପ୍ରତି ଆକୃଷ୍ଟ ହେଉଛି । ଏମାନଙ୍କର ଆସକ୍ତି ହାଡ଼ ମାଂସଦ୍ୱାରା ନିର୍ମିତ ମୋର ବାଳଗୋପାଳ ନାରାୟଣ ମୂର୍ତ୍ତି ଉପରେ ବି ଅଛି । ତାହା ସହ ନିଜକୁ ମିଶାଇ ଦେଇ ମୋର ନାମ କୀର୍ତ୍ତନ କରୁଛନ୍ତି । ଏଣୁ ନାରାୟଣ ନାମଦ୍ୱାରା ସମସ୍ତ ଅଶୁଭ ପାପ ନଷ୍ଟ ହୋଇ ପବିତ୍ର ହୋଇଯାଏ ।

ଯେତେବେଳେ ବିଷ୍ଣୁଦୂତମାନେ ଯମଦୂତମାନଙ୍କୁ ଭଗବାନଙ୍କ ନାମ ଉଚ୍ଚାରଣ ମାହାତ୍ମ୍ୟ ଶୁଣାଇଲେ ସେତେବେଳେ ଅଜାମିଳର ପୂର୍ବ କଥା ସବୁ ମନେ ପଡ଼ିଲା ଓ ସେ କେବଳ ଭାବିବାକୁ ଲାଗିଲା-ମୁଁ କେତେବଡ଼ ମହାକପଟୀ,ପାପୀ, ନିର୍ଲଜ୍ଜ ତଥା ବ୍ରହ୍ମତେଜ ନଷ୍ଟକାରୀ ଦ୍ୱିଜାଧମ । କାହିଁ ପରମପବିତ୍ର ଜଗତ୍‌ମଙ୍ଗଳ,ଅଶୁଭନଷ୍ଟକାରୀ ଶ୍ରୀଭଗବାନଙ୍କ ନାରାୟଣ ନାମ ? ଆଉ କାହିଁ ମୁଁ ! ଏଥିରୁ ଭଗବାନଙ୍କ କୃପା ବ୍ୟତୀତ ଅନ୍ୟ କିଛି ନୁହେଁ । ମୁଁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅବଚେତନ ହେବାରୁ ଭଗବାନଙ୍କ ମଙ୍ଗଳମୟ ନାମ କେବେହେଲେ ଉଚ୍ଚାରଣ କରିନାହିଁ । ଠିକ୍‌କଥା ଯେତେବେଳେ ଭଗବାନ ମୋ ଉପରେ କୃପା କରିଛନ୍ତି ଭବିଷ୍ୟତରେ ଏଭଳି ଭୁଲ ଆଉ କେବେ କରିବି ନାହିଁ । ବର୍ତ୍ତମାନ ଭଗବାନଙ୍କ କୃପାଦ୍ୱାରା ନିଜକୁ ପାପପଙ୍କଠାରୁ ଅଲଗା ରଖିବି । ଏହିପାପରୁ ନିଜେ ନିଜକୁ ରକ୍ଷା କରିବି ଓ ଠିକ୍ ବାଟରେ ପରିଚାଳିତ ହେବା ନିମନ୍ତେ ଯତ୍ନବାନ ହେବି ।

ଶ୍ରୀ ଶୁକଦେବ କହିଲେ- "ରାଜନ ! ଏହିପରି ବାରମ୍ବାର ନିଜେ ନିଜକୁ ଧିକ୍‌କାର କରି ଅଜାମିଳ ନିଜପାପ ନିମନ୍ତେ ଅନୁତାପ କରିବାକୁ ଲାଗିଲା ।"

—ଛପ୍‌ପୟ—

ବାର ବାର ଧିକ୍‌କାର ଅଜାମିଲ ଦେବେ ମନକୁଁ ।
ହାୟ ! ପାପମହିଁ ପୈଁସ୍ୟୋ ଭୁଲ୍ୟୋ ବ୍ରାହ୍ମନପନକୁଁ ॥
ତଜେ ପିତା ଅରୁ ମାତୁ ଦୁଃଖ ଜିନ ସହି ସୁଖ ଦୀହ୍ନେଂ ।
ତଜୀ ସତୀ ନିଜ ନାରି ମୋହ ବେଶ୍ୟାତେଂ କୀହ୍ନେଂ ॥
କରେ ପାପ ଅତି ଭୟାନକ, କରୁଁ ନ ଏସେ କାମ ଅବ ।
ବିଗରୀ ମେରୀ ବାତ ତୋ, କିନ୍ତୁ ବନାଇ ନାମ ସବ ॥



# ଅଜାମିଳକୁ ଭଗବାନଙ୍କ ପାର୍ଷଦ ପଦପ୍ରାପ୍ତି

ହିତ୍ୱା କଳେବରଂ ତୀର୍ଥେ ଗଙ୍ଗାୟାଂ ଦର୍ଶନାଦନୁ ।
ସଦ୍ୟଃ ସ୍ୱରୂପଂ ଜଗୃହେ ଭଗବତ୍ପାର୍ଶ୍ୱବର୍ତ୍ତିନାମ ॥
ମ୍ରିୟମାଣୋ ହରେର୍ନାମ ଗୃଣନ୍ ପୁତ୍ରୋପଚାରିତମ୍ ।
ଅଜାମିଳୋଽପ୍ୟଗାଦ୍ଧାମ କିଂପୁନଃ ଶ୍ରଦ୍ଧୟା ଗୃଣନ୍ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୨ୟ ଅଧ୍ୟାୟ ॥ ୪୩, ୪୮ ଶ୍ଳୋକ ]

ଛପ୍‌ପୟ

ଭୟୋ କରି ପଶ୍ଚାତ୍ତାପ ମୋହ ମମତା ସବ ତ୍ୟାଗୀ ।
ବେଶ୍ୟା ଅରୁ ସୁତ ତ୍ୟାଗି ରାଗ ତଜି ଭୟୋ ବିରାଗୀ ॥
ହରିଦ୍ୱାରମହଁ ଜାଇ ଯୋଗକୋ ଆଶ୍ରୟ ଲୀହ୍ନୋ ।
ବିଷୟନିତେ ମୁଁହ ମୋରି ଯୁକ୍ତିତେଁ ମନବଶ କୀହ୍ନୋ ॥
ଦୃଶ୍ୟବର୍ଗତେଂ ପୃଥକ୍ କରି, ଆତ୍ମାଜ୍ଞାନ ସ୍ୱରୂପମହଁ ।
ଫେରି ଅଜାମିଲ ଭକ୍ତିଯୁତ, ଭୟେଁ ପାରଷଦ ରୂପମହଁ ॥

ମନରେ ଅନୁତାପ ଉଦୟ ନହେବା ପର୍ଯ୍ୟନ୍ତ ଜୀବ କର୍ମବନ୍ଧନରେ ବାନ୍ଧହୋଇ ଏହି ସଂସାର ରୂପକ ଘୋର ଅରଣ୍ୟରେ ବୁଲୁଥାଏ । ଯେତେବେଳେ ନିଜର ଦୁଷ୍କୃତ ନିମନ୍ତେ ତା ମନରେ ପରିବର୍ତ୍ତନ ଓ ଅନୁତାପ ଭାବ ଦେଖାଦିଏ ସେତେବେଳ ଜଗତର ମାୟାମୋହଠାରୁ ସେ ବିଚ୍ଛିନ୍ନ ହୋଇଯାଏ । ସେ ଭଗବାନଙ୍କର କୃପା ଲାଭକରି ପ୍ରିୟ ଦୂତଭାବରେ ପରିଗଣିତ ହୁଏ । ସଂସାରର ଏହି ଅନିତ୍ୟ ନାମ ରୂପରେ ପ୍ରବେଶ କରି ଜୀବ ବିଷୟାସକ୍ତ ହୋଇଥାଏ ଯେତେବେଳେ ଅନିତ୍ୟ ପଦାର୍ଥ ଠାରୁ ଲୋଭ ତ୍ୟାଗକରି' ଭଗବାନଙ୍କ ନିତ୍ୟ ନାମରୂପକୁ ଧାରଣ କରେ, ତାଙ୍କ ପଦ ଆକୃଷ୍ଟ ହୁଏ, ତେବେ ଯାଇଁ ସେ ପ୍ରଭୁଙ୍କର ଦୂତଭାବରେ ସ୍ୱଦେଚଢ ହୁଏ । ନିଜର କ୍ଷୁଦ୍ର ଭାବ ତ୍ୟାଗ ପୂର୍ବକ ସେ ମହାନ୍ ହୋଇଯାଏ ।

ଶ୍ରୀଶୁକଦେବ କହିଲେ-"ରାଜନ୍ ! ବର୍ତ୍ତମାନ ନିଜର ପାପକର୍ମ ନିମନ୍ତେ ଅଜାମିଳ ମନରେ ଘୋର ଦୁଃଖ ଜାତହେଲା । ନିଜର ଦୁଷ୍କର୍ମକୁ ମନେପକାଇ ସେ ବହୁ ସମୟ ଧରି କାନ୍ଦିବାକୁ ଲାଗିଲା । ମାନିବାକୁ ହେବ ତାର ହୃଦୟର କଳୁଷିତ ଜଳ ଆକାରରେ ଆଖିବାଟେ ବାହାରି ଆସିଲା । ଅଧିର ହୋଇ ସେ ବିଳାପ କରିବାକୁ ଲାଗିଲା । ଶେଷରେ ବୃଥା ଭାବ ପୋଷଣ କରି ସେ ଭାବିଲା-ଠିକ୍ ଅଛି, ଯାହା ହେବାର ଥିଲା ତାହା ହୋଇଗଲା । ଭବିଷ୍ୟତରେ ମୁଁ ମୋର ମନ, ଇନ୍ଦ୍ରିୟ ଓ ପ୍ରାଣକୁ ଏ ପରି ଭାବରେ ନିଜ ଆୟତ୍ତରେ ରଖିବି ଯେପରି କି ଆଉଥରେ ସେହି ଅନ୍ଧକାର ନରକରେ ପଡ଼ି ଘାଣ୍ଟିହେବ ନାହିଁ । ବର୍ତ୍ତମାନ ମୁଁ ଅବିଧି କାମନା କର୍ମରୁ ଉତ୍ପନ୍ନ ଏହି କର୍ମ ବନ୍ଧନକୁ ତ୍ୟାଗକରି ପ୍ରାଣୀମାନଙ୍କ ସହି ସୌହାର୍ଦ୍ଦ୍ୟ ସ୍ଥାପନ କରିବି, ଦୟାଳୁ, ଶାନ୍ତ ଓ ସଂଯତ ହୋଇ ସମସ୍ତଙ୍କ ସହି ମିତ୍ରତା ସ୍ଥାପନ ପୂର୍ବକ ଏହି ନାରୀରୂପୀ ଭଗବାନଙ୍କ ମାୟାଠାରୁ ଦୂରରେ ରହିବି । ଏହିମାୟା ମୋତେ ଏପର୍ଯ୍ୟନ୍ତ ମାଙ୍କଡ଼ ଭାବରେ ନଚାଉଥିଲା, କୁକୁର ଭାବରେ ମୋହ କରି ରଖିଥିଲା ଓ ମେଣ୍ଢାକରି ମନଇଚ୍ଛା ଯାହା ତାହା କରୁଥିଲା । ଯେଉଁ ସବୁ ଅସତ୍ ବୁଦ୍ଧି ଯଥା, "ମୁଁ, ମୋର, ତୁ, ତୋର" ଆଦି ବ୍ୟବହାରକୁ ତ୍ୟାଗକରି ନିଜର ଶୁଦ୍ଧ ବୁଦ୍ଧିକୁ ଭଗବାନଙ୍କ ନାମ କୀର୍ତ୍ତନରେ, ତାଙ୍କର ଗୁଣ ଶ୍ରବଣରେ ନିରନ୍ତର ବିନିଯୋଗ କରିବି ।"

ଶ୍ରୀ ଶୁକଦେବ କହିଲେ- "ରାଜନ! ପ୍ରତିକ୍ଷଣରେ ସତ୍‌ସଙ୍ଗର ପ୍ରଭାବ ଅବଲୋକନ କରନ୍ତୁ । ବର୍ତ୍ତମାନ ଅଜାମିଳର ହୃଦୟରେ ତୀବ୍ର ବୈରାଗ୍ୟ ଭାବ ଉଦୟ ହେଲା । ଆଜି ତାର ପୁନର୍ଜନ୍ମ ହେଲା ବୋଲି ସେ ଭାବିଲା । ପ୍ରକୃତରେ ତାର ପୁନର୍ଜନ୍ମ ହିଁ ହୋଇଥିଲା । ପ୍ରଥମ ଥର ଜନ୍ମ ତାର ଉତ୍ତମ ଥିଲା । କାରଣ ସେ ବ୍ରାହ୍ମଣୀ ମାତା ଗର୍ଭରୁ ଉତ୍ପନ୍ନ ହୋଇ ଦ୍ୱିଜ ଭାବରେ ସଂସ୍କାର ଲାଭକରି ପାଳନ ପୋଷଣ ହୋଇଥିଲା । ଦ୍ୱିତୀୟଥର ମଧ୍ୟ ସେ ପାପଜନ୍ମ ଲାଭ କରିଥିଲା । ଯେତେବେଳେ କି ସେ ବେଶ୍ୟା ସଂସର୍ଗରେ ଆସି ବହୁଳ ପାପ କରି ଅବୈଧ ସନ୍ତାନ ଜନ୍ମଦାନ କରିଥିଲା ଏବଂ ଆଜି ଶୁଭାଶୁଭ କାଳରେ ତାର ତୃତୀୟ ତଥା ଅନ୍ତିମ ଜନ୍ମ ବିଷ୍ଣୁ ଦୂତମାନଙ୍କ ମୁହଁରୁ ଭଗବାନଙ୍କ ନାମ ଶ୍ରବଣକରି ଲାଭ ହୋଇଅଛି । ଆଉ ତାର କର୍ମମୟ ସଂସାରରେ ଜନ୍ମ ବା ମରଣ ଘଟିବ ନାହିଁ ।"

ସାବଧାନତା ସହକାରେ ସେ ତାର ଦଣ୍ଡ କମଣ୍ଡଳୁ ଧାରଣ କଲା । ବେଶ୍ୟା ପଚାରିଲା "କେଉଁଆଡ଼େ ବାହାରିଲ ?"

ଅଜାମିଳ କହିଲା "ନାରାୟଣ, ନାରାୟଣ ।" ବେଶ୍ୟା ଦେଖିଲା ଯେ ସେ ଆଜି ତାର କଥା ଗ୍ରହଣ କରୁନାହିଁ, ତାର ଚେହେରା ମଧ୍ୟ ଆଜି ଅନ୍ୟ ପ୍ରକାରର । ବେଶ୍ୟାକୁ ଜଣା ପଡୁଥାଏ ଯେପରି ଅଜାମିଳ ଆଜି ଜ୍ୱର ବେଗରେ ଆକ୍ରାନ୍ତ । ସେଇଥି ପାଇଁ ଅଜାମିଳ

ଆଜି ଉନ୍ମାଦ ସହକାରେ ଏପରି ବକାବକ କରୁଛୁ । ଏହିପରି ଭାବନାକରି ବେଶ୍ୟା ତାଙ୍କୁ ପଚାରିଲା "ଆଜି ଆପଣଙ୍କର ମନ ଭଲ ନାହିଁକି ? ଜ୍ୱର ହୋଇନି ତ ?

ଅଜାମିଳଠାରୁ କାମଜ୍ୱର ସବୁଦିନ ପାଇଁ ଛାଡ଼ି ଯାଇଛି, ତାର ବିକୃତ ମସ୍ତିଷ୍କ ଏବେ ଠିକ ହୋଇ ଯାଇଛି । ସେ "ନାରାୟଣ ନାରାୟଣ' ବ୍ୟତୀତ ଅନ୍ୟ କୌଣସି ଉତ୍ତର ଦେଲାନାହିଁ । ସେ କାନ୍ୟକୁବ୍‌ଜ ଦେଶରୁ ବାହାରି ଗଙ୍ଗା ତୀରେ ତୀରେ ଉତ୍ତର ଦିଗକୁ ଯାତ୍ରା କଲା, ଯେଉଁଠାକୁ ରାଜ ଚକ୍ରବର୍ତ୍ତୀମାନେ ରାଜ୍ୟ ତ୍ୟାଗକରି ଆଉ ଫେରି ନଆସିବା ପାଇଁ ସଙ୍କଳ୍ପ କରି ଯାଇଥାଆନ୍ତି । ସେ ଗଙ୍ଗା କୂଳେ କୂଳେ ଚାଲି ଚାଲି ପାଞ୍ଚାଳ ଦେଶ ଅତିକ୍ରମ କରି ଏପରି ଏକ ସ୍ଥାନରେ ପହଞ୍ଚିଲା, ଯେଉଁଠାରେ ଭଗବତୀ ଭାଗିରଥୀ ନିଜର ପିତା ହିମାଳୟଙ୍କ କୋଳରୁ ପହଞ୍ଚି ପୃଥିବୀରେ ପଦାର୍ପଣ କରିଛନ୍ତି । ଯାହାକୁ ଗଙ୍ଗାଦ୍ୱାର, ହରିଦ୍ୱାର ଅଥବା କୁଶାବର୍ତ୍ତ କ୍ଷେତ୍ର କୁହାଯାଏ, ସେଠାରେ ପହଞ୍ଚି ହରିଙ୍କ ପୀଢ଼ିରେ ସ୍ନାନ କଲା । ସ୍ନାନ କରି ସାରିବା ପରେ ତାର ହୃଦୟ ପବିତ୍ର ହୋଇଗଲା । ଗଙ୍ଗାକୂଳରେ ଗୋଟିଏ ନିର୍ଜନ ସ୍ଥାନରେ ଘାସର କୁଡ଼ିଆଟିଏ ତିଆରି କରି ସେଠାରେ ଆସ୍ଥାନ ଜମାଇ ଯୋଗାଭ୍ୟାସ କରିବାକୁ ଆରମ୍ଭ କଲା ।

ପ୍ରକୃତିରୁ ନିବୃତ୍ତ ହେବାପରେ ଇନ୍ଦ୍ରିୟ, ମନ, କାମନା ତଥା ଭୂତମାନଙ୍କର ଆମୂଳଚୂଳ ପରିବର୍ତ୍ତନ ଘଟିଥାଏ । ଏହି ସବୁ ପଦାର୍ଥ ଯୋଗଦ୍ୱାରା ପରଂବ୍ରହ୍ମଙ୍କ ସହ ଲୀନ ହୋଇଯାଏ, ପୁରୁଷ ମୋହମାୟାମୁକ୍ତ, ପରମ ଆନନ୍ଦମୟ ଓ ଜ୍ଞାନୀ ଭାବରେ ବିବେଚିତ ହୁଏ । ଅଜାମିଳ ଏହିସବୁ ପ୍ରାଚୀନ ପରିପାଟୀକୁ ଅନୁସରଣ ପୂର୍ବକ ଭଗବାନଙ୍କ ଆଶ୍ରା ଗ୍ରହଣକରି ନାମ ସଙ୍କୀର୍ତ୍ତନରେ ମନନିବେଶ କଲା । ଏହି ପଞ୍ଚଭୌତିକ ଶରୀରକୁ ବର୍ତ୍ତମାନ ବାଧ୍ୟପୂର୍ବକ ଶେଷ କରିଦେବାକୁ ଇଚ୍ଛାକଲା ।

ସର୍ବପ୍ରଥମେ ସେ ଯମ, ନିୟମ ଅଭ୍ୟାସ କରି ଆପଣାକୁ ଦୃଢ଼କଲା, ପ୍ରାଣାୟାମ ଅଭ୍ୟାସକରି ଚିତ୍ତବୃତ୍ତିକୁ ଅନ୍ତର୍ମୁଖୀ କଲା । ନିଜର ସମସ୍ତ ଇନ୍ଦ୍ରିୟକୁ ଆୟତ୍ତରେ ରଖି କାମନାର ସମସ୍ତ ବିଷୟ ବାସନାକୁ ନଷ୍ଟ କରିଦେଲା । ଆଧାତ୍ମ୍ୟ ଯୋଗଦ୍ୱାରା ଆତ୍ମାକୁ ଶରୀରାଦି ଦୃଶ୍ୟ ବସ୍ତୁଠାରୁ ଅଲଗାରଖି ଜ୍ଞାନମୟ ଭଗବତ୍ ସ୍ୱରୂପ ପରଂବ୍ରହ୍ମରେ ଲୀନ କରିଦେଲା । ଏହିପରି ଭାବରେ ଯେତେବେଳେ ତାର ବୁଦ୍ଧି ଭଗବାନଙ୍କ ନିକଟରେ ସମର୍ପିତ ହୋଇଗଲା, ସେ ଦେଖିବାକୁ ପାଇଲା ଗୋଟିଏ ଦିବ୍ୟ ବିମାନ ସ୍ୱର୍ଗରୁ ଆସ୍ତେ ଆସ୍ତେ ତଳକୁ ଓହ୍ଲାଇ ଆସୁଛି । ସେହି ବିମାନରେ ଚାରିଜଣ ତେଜସ୍ୱୀ ମହାପୁରୁଷ ବିରାଜମାନ କରିଥିଲେ । ସମସ୍ତେ ଚତୁର୍ଭୁଜ ! ସମସ୍ତଙ୍କ ହସ୍ତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ସୁଶୋଭିତ । ଗଳାରେ ଗୋଟିଏ ଲେଖାଏଁ ମାଳାଧାରଣ କରିଥିଲେ । ସମସ୍ତେ

ପୀତାମ୍ବର ବସ୍ତ୍ର ପରିଧାନ କରିଥିଲେ । ସେମାନଙ୍କୁ ଦର୍ଶନ କରି ଅଜାମିଳ ଭାବିଲା, ଏମାନେ ସମସ୍ତେ ମୋର ଗୁରୁଦେବ ଯେଉଁମାନେ କି ମୋତେ ମୃତ୍ୟୁ ମୁଖରୁ ଉଦ୍ଧାର କରିଥିଲେ । ଏମାନେ ମୋର ଇଷ୍ଟ ଦେବଙ୍କର ପ୍ରିୟ ଦୂତ । ଭଗବାନ ସ୍ୱରୂପ ପରମ ପରୋପକାରୀ ମୋତେ ପୁନର୍ବାର କୃତାର୍ଥ କରିବା ପାଇଁ ଆଗମନ କରିଛନ୍ତି । ଏହିଭଳି ଭାବରେ ଅଜାମିଳ ମନକୁ ମନ ବିଚାର କରି ସେମାନଙ୍କ ପାଖକୁ ଆସି ଭଗବାନଙ୍କ ନାମ ଉଚ୍ଚାରଣ ପୂର୍ବକ ସାଷ୍ଟାଙ୍ଗ ପ୍ରଣାମ କଲା । ପ୍ରେମଅଶ୍ରୁ ବିମୋଚନ କରି ଗଦ୍ ଗଦ୍ କଣ୍ଠରେ କେବଳ "ନମୋନାରାୟଣ, ନମୋନାରାୟଣ" ବୋଲି ବାରମ୍ବାର କହିବାକୁ ଲାଗିଲା ।

ଭଗବାନଙ୍କ ପାର୍ଷଦମାନେ ଅତ୍ୟନ୍ତ କୋମଳ ସ୍ନେହବାଣୀ ପ୍ରୟୋଗ କରି କହିଲେ —"ମହାଭାଗ ! ବର୍ତ୍ତମାନ ଆପଣ ବୈକୁଣ୍ଠଲୋକକୁ ଆଗମନ କରନ୍ତୁ । ଯେଉଁଠାରେ ମାୟା ପ୍ରବଞ୍ଚନାର ଛଳେମାତ୍ର ଗନ୍ଧ ନାହିଁ ।"

ସେମାନଙ୍କର ଏହି କଥାଶୁଣି ଅଜାମିଳ ଶୀଘ୍ର ଉଠି ବସିଲା । କୁଡ଼ିଆ ତ୍ୟାଗକରି ଗଙ୍ଗାକୂଳରେ ଆସି ଉପସ୍ଥିତ ହେଲା । ପବିତ୍ର ଗଙ୍ଗାନଦୀର ଅଣ୍ଟାଏ ଜଳରେ ଠିଆହୋଇ ପବିତ୍ର କୁଶାବର୍ତ୍ତ କ୍ଷେତ୍ରରେ ସେ ତାର ପଞ୍ଚଭୌତିକ ନଶ୍ୱର ଶରୀର ତତ୍‌କ୍ଷଣାତ୍ ତ୍ୟାଗକଲା । ନଶ୍ୱର ଶରୀରଟି ସଙ୍ଗେ ସଙ୍ଗେ ସୁନ୍ଦର ଚତୁର୍ଭୁଜ ମୂର୍ତ୍ତି ଧାରଣକଲା । ଯେଉଁଭଳି ଭାବରେ ଏହି ବିଷ୍ଣୁପର୍ଷଦମାନେ ଥିଲେ ଠିକ୍ ସେହିପରି ତାର ରୂପ ମଧ୍ୟ ପରିବର୍ତ୍ତିତ ହୋଇଗଲା । ସେ ବିଷ୍ଣୁ ପାର୍ଷଦ ପଦ ପ୍ରାପ୍ତହେଲା । ତାହାପରେ ଅଜାମିଳ ସେହି ବିଷ୍ଣୁପାର୍ଷଦମାନଙ୍କ ସହ ସୁବର୍ଣ୍ଣ ଖଚିତ ବିମାନ ମଧ୍ୟରେ ବସି ସେହି ନିତ୍ୟ ବୈକୁଣ୍ଠ ଧାମକୁ ବିରାଜମାନ କଲା ଯେଉଁଠାରେ ଶ୍ରୀଲକ୍ଷ୍ମୀଙ୍କ ସହ ନାରାୟଣ ସର୍ବଦା ବିରାଜମାନ କରି ଆଥାନ୍ତି । ଭଗବାନଙ୍କ ପ୍ରଭାବରେ ସେ ପ୍ରିୟ ପାର୍ଷଦ ହୋଇ ଚିରଦିନ ନିମନ୍ତେ ବୈକୁଣ୍ଠ ଧାମରେ ଅବସ୍ଥାନ କଲା ।

ଶ୍ରୀଶୁକଦେବ କହିଲେ —"ରାଜନ୍ ! ଏହାଠାରୁ ଅଧିକ କ'ଣ ମୁଁ ଭଗବାନଙ୍କ ନାମର ମାହାତ୍ମ୍ୟ କହିବି ? ଦେଖନ୍ତୁ, ଯିଏ ବିଶୁଦ୍ଧ ବ୍ରାହ୍ମଣ ହୋଇ ସୁରାପାନ କରି ଅପବିତ୍ର ହୋଇ ଯାଇଥିଲା, ଧର୍ମକର୍ମ ତ୍ୟାଗକରି ବେଶ୍ୟାକୁ ପ୍ରକଟ ଭାବରେ ଗ୍ରହଣ କରି ନିଜର ସମସ୍ତ ଧର୍ମ କର୍ମକୁ ଜଳାଞ୍ଜଳି ଦେଇଥିଲା, ତାର ଏହିସବୁ ନିନ୍ଦିତ କାର୍ଯ୍ୟ ପାଇଁ ସେ ନରକ ଯିବାର କଥା । କିନ୍ତୁ ସେହି ଦ୍ୱିଜାଧମ ଭଗବାନ ନାରାୟଣଙ୍କ ନାମ ଉଚ୍ଚାରଣ କରି ସଂସାର ଚକ୍ରରୁ ମୁକ୍ତପାଇ ଭଗବାନଙ୍କ ପ୍ରିୟ ପାରିଷଦ ହୋଇଗଲା ! ଆପଣ କୁହନ୍ତୁ ଏହା ଅପେକ୍ଷା କୌଣସି ସରଳ, ସୁଗମ, ସର୍ବୋପଯୋଗୀ ମୁକ୍ତି ମାର୍ଗ ଅଛି କି ? ମୁମୂର୍ଷୁ ପୁରୁଷଙ୍କୁ କର୍ମ ବନ୍ଧନରୁ ରହିତ କରିବା ନିମନ୍ତେ ଶ୍ରୀହରିଙ୍କ ନାମ ଭଜନ ବିନା ଆଉ କୌଣସି ସରଳ ସାଧନାନାହିଁ ।

ବିଶେଷ ଭାବରେ ଏହି କଳି କାଳରେ ଏହାଠାରୁ ବଳି କୌଣସି ଗତିନାହିଁ । ଏହା ଏପରି ଏକ ସାଧନା, ମନ ଯଦି ଅଟିରେ ଏଥିରେ ନିବେଶ ହୁଏ ସଂସାର କର୍ମରେ ଆବଦ୍ଧ ହୋଇ ରହିବାକୁ ଆଦୌ ଇଚ୍ଛାହୁଏନାହିଁ । ଏହାଛଡ଼ା ପାପ ମଧ୍ୟ ହୁଏ ନାହିଁ । ଅତଏବ ସମସ୍ତ ପାପର ପ୍ରାୟଶ୍ଚିତ୍ତ ନିମନ୍ତେ ଭଗବାନଙ୍କ ନାମ ଗ୍ରହଣ ବ୍ୟତୀତ ଅନ୍ୟ କୌଣସି ପନ୍ଥା ନାହିଁ । ଏହା ସମସ୍ତ ଭବରୋଗର ଅବ୍ୟର୍ଥ ମହୋଷଧି ଓ ଅମୂଲ୍ୟ ପଦାର୍ଥ । ଅନ୍ୟ ପ୍ରକାରର ଶରୀର ଶୋଷଣ ସମ୍ବନ୍ଧୀୟ ପ୍ରାୟଶ୍ଚିତ୍ତ ଗ୍ରହଣ କରିବା ଫଳରେ ମନ ରଜୋଗୁଣ ଓ ତମୋଗୁଣରେ ଜଡ଼ିତ ହୋଇଯାଏ । କିନ୍ତୁ ଭଗବାନଙ୍କ ନାମ ଉଚ୍ଚାରଣ କରି ପ୍ରାୟଶ୍ଚିତ୍ତ କରିବାଦ୍ୱାରା ପ୍ରାଣୀ ଶ୍ରେଷ୍ଠ ଭାବରେ ବିବେଚିତ ହୁଏ । ଏଣୁ ରାଜନ୍ ! ଭଗବାନଙ୍କ ନାମ କୀର୍ତ୍ତନ ଦ୍ୱାରା ସବୁ ପ୍ରକାର ପାପ, ସବୁପ୍ରକାର ନରକ ଯନ୍ତ୍ରଣାରୁ ମୁକ୍ତିଲାଭ କରେ । ମୁଁ ନାମ ମାହାତ୍ମ୍ୟ ପ୍ରସଙ୍ଗରେ ଖୁବ୍ ସଂକ୍ଷେପ ଭାବରେ ଅଜାମିଳର ପୁଣ୍ୟମୟ ଆଖ୍ୟାନ ଆପଣଙ୍କୁ ଶୁଣାଇଲି । ଯେଉଁମାନେ ଏହି ସମସ୍ତ ଆଖ୍ୟାନକୁ ଶ୍ରଦ୍ଧା, ଭକ୍ତି ପୂର୍ବକ ପାଠ କରିବେ, ଶୁଣିବେ, ସେମାନେ କେବେ ହେଲେ କୌଣସି ନରକରେ ପଡ଼ିବେ ନାହିଁ । ଏହି ବ୍ୟକ୍ତିମାନଙ୍କର ମଧ୍ୟ କ୍ରମେ କ୍ରମେ ଭଗବାନଙ୍କ ନାମ କୀର୍ତ୍ତନ ପ୍ରତି ଆସକ୍ତି ବଢ଼ିବ । ସେମାନେ ନିଜ ଜିହ୍ୱାରେ ସର୍ବପାପ ପ୍ରଶମନ ନାରାୟଣ ମନ୍ତ୍ରକୁ ଉଚ୍ଚାରଣ କରି ପାରିବେ । ଲୋକମାନେ ଘୋର ପାପ କରି ବସୁଛନ୍ତି, କିନ୍ତୁ ଯେଉଁମାନେ ହରି ନାମର ଆଶ୍ରୟ ଗ୍ରହଣ କରୁଛନ୍ତି ସେମାନେ ବୈକୁଣ୍ଠ ଗାମୀ ହୁଅନ୍ତି ଓ ସେଠାରେ ବିଷ୍ଣୁ ପାରିଷଦବର୍ଗଙ୍କ ଦ୍ୱାରା ମହିମାନ୍ୱିତ ହୋଇପଡ଼ନ୍ତି ।

"ମହାରାଜ ! ଭଗବାନଙ୍କ ସମସ୍ତ ମାହାତ୍ମ୍ୟ କହିବା ପାଇଁ କିଏ ସମର୍ଥ ଅଛନ୍ତି ! ଆପଣ ଧ୍ୟାନ ସହକାରେ ଏହାକୁ ଅବଧାନ କରନ୍ତୁ, ଏତେବଡ଼ ପାପୀ ବ୍ରାହ୍ମଣ କେବଳ ମରିବା ସମୟରେ ବିକଳ ହୋଇ ପୁତ୍ର ଦ୍ୱାରା ଭଗବାନଙ୍କ ନାମ ନେଇ ଉଦ୍ଧାର ପାଇଗଲା । ଯେଉଁମାନେ ଶ୍ରଦ୍ଧା ଓ ଭକ୍ତି ସହକାରେ ନାମକୀର୍ତ୍ତନ କରିବେ ସେମାନେ ମୁକ୍ତି ପାଇବେ ନାହିଁ ବୋଲି ଆପଣ ସନ୍ଦେହ କରୁଛନ୍ତି କି ! ଏହି ଆଖ୍ୟାନରୁ ଆମ୍ଭେ ଜାଣି ରଖିବା ଉଚିତ୍ ଯେ, ଆମେ ନିଜ ଇଚ୍ଛାରେ ଯେଉଁ ପାପ କରୁଛେ ତାହା ଭଗବାନଙ୍କ ନାମ ନେବା ଦ୍ୱାରା ନଷ୍ଟ ହୋଇଯାଏ । ଏକଥା ଠିକ୍ ନୁହେଁ, ପାପ ପାଇଁ ଅନୁତାପ କରିବା ଦ୍ୱାରା ଶରୀରରେ ଆଉ ପାପ ରହିବନାହିଁ । ଅତୀତର ପାପ ଏହାଦ୍ୱାରା ଭସ୍ମୀଭୂତ ହୋଇଯାଏ । ଯେତେବେଳେ ସେ ନାମ ସଂକୀର୍ତ୍ତନ କରେ ତଦ୍ୱାରା ତାର ଚିତ୍ତ ଆସ୍ତେ ଆସ୍ତେ ଶୁଦ୍ଧହୋଇ ଭଗବାନଙ୍କ ନାମରୁ ପ୍ରେମ ମିଳିଯାଏ । ପ୍ରେମହିଁ ତାକୁ ପ୍ରଭୁଲୋକରେ ନେଇ ପହଞ୍ଚାଇ ଦେବ । ରାଜନ ! ମୁଁ ଏଠାରେ ଅଜାମିଳର ବୈକୁଣ୍ଠ ପ୍ରାପ୍ତି ପର୍ଯ୍ୟନ୍ତ ବର୍ଣ୍ଣନା କଲି, ଆଉ ଆପଣ କ'ଣ ଶୁଣିବାକୁ ଇଚ୍ଛା କରୁଛନ୍ତି ?"

ଏହାପରେ ମହାରାଜ ପରୀକ୍ଷିତ କହିଲେ — "ଭଗବାନ ! ଯାହା ଆପଣ କହିଲେ ତାହା ଅତି ଅଦ୍ଭୁତ ଉପାଖ୍ୟାନ । ନରକର ଉପାଖ୍ୟାନ ଶୁଣି ମୋର ରୋମମୂଳ ଟାଙ୍କୁରି ଉଠିଲା, ହୃତ୍‌ସ୍ପନ୍ଦନ ହୋଇ, ମନରେ ବହୁତ ଭୟ ଜାତ ହେଲା । କିନ୍ତୁ ଭଗବାନଙ୍କ ନାମର ମାହାତ୍ମ୍ୟ ଶୁଣି ଏହି ସମସ୍ତ ଭୟ ଆପେ ଆପେ ଦୂରୀଭୂତ ହୋଇଗଲା । ମୋର ଏବେ ବିଶ୍ୱାସ ହେଲା ଯେ, ମଣିଷ ଇଚ୍ଛା କଲେ ନରକଠାରୁ ଅତି ସହଜରେ ମୁକ୍ତି ପାଇ ପାରିବ । କାରଣ ଏଥିପାଇଁ କୌଣସି ବାହ୍ୟ ଉପକରଣ କିମ୍ବା ଅପେକ୍ଷା କରିବା ଦରକାର ପଡ଼େନାହିଁ । ଏଥିପାଇଁ ମୂଲ୍ୟବାନ ସାମଗ୍ରୀ ସଂଗ୍ରହ କରିବା ଅସୁବିଧା ନାହିଁ । ଭଗବାନଙ୍କ ନାମ ସରଳ ଓ ସୁଗମ, ଏହା ସମସ୍ତେ ଜାଣନ୍ତି । କିଭି ନିଜ ଘରେ ରହିଛି । କେଉଁଠାରୁ ଆଣିବାକୁ ପଡ଼ିବନାହିଁ । ଭଗବାନଙ୍କନାମ ମଣିଷ ଉଚ୍ଚାରଣ ନ କରିବା ଏକ ମସ୍ତବଡ଼ ଭୁଲ । ଯେପରି ମହାବ୍ୟାଧିରେ ପୀଡ଼ିତ ରୋଗୀ ପାଖରେ ଅମୃତ ସମାନ ମହୌଷଧି ଥାଇ ସେ ତାକୁ ସେବନ ନ କରିବାରେ ଆରୋଗ୍ୟଲାଭ ନକରି ଘୋର ଯନ୍ତ୍ରଣା ଭୋଗକରୁଥାଏ । ମହାରାଜ ମୁଁ ବର୍ତ୍ତମାନ ଶୁଣିବାକୁ ଇଚ୍ଛା କରୁଛି, ସେହି ଯମଦୂତମାନଙ୍କର ଅବସ୍ଥା କ'ଣ ହେଲା ? ବିଷ୍ଣୁପାର୍ଷଦମାନେ ସେମାନଙ୍କ ସହ ଉଚିତ୍ ତର୍କ ବିତର୍କ କରିଥିଲେ । ଧର୍ମରାଜଙ୍କର ଅଜ୍ଞାତ ଏପର୍ଯ୍ୟନ୍ତ କେଉଁଠି କେବେହେଲେ ଉଲଙ୍ଘନ ହୋଇନାହିଁ । ଯେତେବେଳେ ସେହି ଯମଦୂତମାନେ ଖାଲି ହାତରେ ଯାଇ ଯମରାଜଙ୍କ ପାଖରେ ଉପସ୍ଥିତ ହେଲେ ଯମରାଜ ନିଜ ଦୂତମାନଙ୍କୁ କ'ଣ କହିଲେ ? ରାଜାର ଆଦେଶ ଅମାନ୍ୟ ହେବାଦ୍ୱାରା ରାଜାଙ୍କର ଭାବମୂର୍ତ୍ତିରେ ଆଞ୍ଚ ଆସିବା ଯମରାଜାଙ୍କୁ ନିଶ୍ଚୟ ଖରାପ ଲାଗିଥିବ । ସେ ତାଙ୍କର ଦୂତମାନଙ୍କୁ ନିଶ୍ଚୟ ଗୋଟି ଗୋଟି କରି ସବୁ କଥା ପଚାରିଥିବେ, ଦୂତମାନଙ୍କର ଅବସ୍ଥା କ'ଣ ହୋଇଥିବ ? ତାହେଲେ ଦୂତମାନେ କ'ଣ କହିଥିବେ ? ଦୂତମାନେ ନିର୍ଦ୍ଦୋଷ ବୋଲି କିପରି ଯମରାଜାଙ୍କୁ ପ୍ରମାଣ ଦେଇ ଥିବେ ? ମହାରାଜ ଏହିପରି ପ୍ରଶ୍ନ ସବୁ ମୋ ମନକୁ ଆସୁଅଛି । ଯମରାଜ ସର୍ବଜ୍ଞ ହୋଇ ସେହି ବ୍ୟକ୍ତିର ମୃତ୍ୟୁ ସମୟ ଉପସ୍ଥିତ ହୋଇନଥିଲା ବୋଲି କିପରି ଜାଣି ପାରିଲେ ନାହିଁ ? ସେ ତ ବୈକୁଣ୍ଠ ଲୋକର ଅଧିକାରୀ ଅଟନ୍ତି । ଏପରି ଜ୍ଞାନର ନ୍ୟୂନତା କ'ଣ ଏତେବଡ଼ ଲୋକପାଳ ପକ୍ଷେ ସମ୍ଭବ ?

ଏକଥାଶୁଣି ଶ୍ରୀ ଶୁକଦେବ ଋଷି କହିଲେ — "ରାଜନ୍ ! ଆପଣଙ୍କ ପ୍ରଶ୍ନ ବଡ଼ ଉତ୍ତମ । ମୁଁ ଏହାର ଉତ୍ତର ଉପାଖ୍ୟାନ ସହକାରେ ପ୍ରଦାନ କରିବି । ଆପଣ ସମସ୍ତ ବିଷୟକୁ ଏକାଗ୍ରତା ସହକାରେ ଶ୍ରବଣ କରନ୍ତୁ, ବିଚଳିତ ହୁଅନ୍ତୁନାହିଁ ।"

—ଛପ୍ପୟ—

ଆୟୋ ଦିବ୍ୟ ବିମାନ ନିହାରେ ପାର୍ଷଦ ତେଇ ।
ପହଚାନେ ତତ୍କାଳ ନାମ ଦାତା ଗୁରୁ ଯେଇ ॥
ପଞ୍ଚଭୂତ କୀ ଦେହ ତ୍ୟାଗି ପାର୍ଷଦ ବପୁ ଧାରୟୋ ।
ତବ ଫିର ଚଢ଼ୟୋ ବିମାନ ଦିବ୍ୟ ବୈକୁଣ୍ଠ ସିଧାରୟୋ ॥
ଅଧମ ଅଜାମିଲ ହୁ ତରୟୋ, ନାରାୟଣ କହି ପୁତ୍ର ହିତ ।
ତୌ ଫିର କ୍ୟୋଂ ନହିଁ ନର ତରେଂ, ଲେହିଁ ନାମ ଜେ ଶୁଦ୍ଧ ଚିତ ॥



# ଶୂନ୍ୟହସ୍ତରେ ଯମଦୂତମାନଙ୍କର ଯମରାଜଙ୍କୁ ନିବେଦନ

ନୀୟମାନଂ ନବାଦେଶାଦସ୍ମାଭିର୍ଯ୍ୟତନାଗୃହାନ୍ ।
ବ୍ୟମୋଚୟନ୍ପାତକିନଂ ଛିତ୍ତ୍ୱା ପାଶାନ୍ପ୍ରସହ୍ୟତେ ॥
ତାଂସ୍ତେ ବେଦିତୁମିଚ୍ଛାମୋ ଯଦି ନୋ ମନ୍ୟସେ କ୍ଷମମ୍ ।
ନାରାୟଣେ ତ୍ୟଭିହିତେ ମା ଭୈରିତ୍ୟାୟୟୁର୍ଦ୍ରୁତମ୍

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଦ ॥ ୩ୟ ଅଧ୍ୟାୟ ॥ ୯-୧୦ ଶ୍ଳୋକ ]

ଛପ୍ପୟ

ସଂଯମନୀ ପତି ନିକଟ ଗୟେ ଯମଦୂତ ଖିସ୍ୟାନେ ।
ବିନା ଭାବକେ ମାର ପଡ଼ୀ ସବ ଅଙ୍ଗ ପିରାନେ ॥
ହାଥ ଜୋରି ସବ କହେଂ ପ୍ରଭୋ ! ତୁମହି ଜଗ ସ୍ୱାମୀ ।
ଯା ତୁମ ତେଂଉ ଅପର ଈଶ ବଡ଼ ଅନ୍ତରଯାମୀ ॥
ଲାଓ୍ୱତ ହେଂ ହମ ନରକ ମହଁ, ଜୋ ପାପୀକୁଁ ପକାରିକେଂ ।
ଚାର ପୁରୁଷ ଆୟେ ତହାଁ, ଛୁଡ଼ବାୟୋ ଅତି ଝିରକିକେଂ ॥

କୂଅ ବେଙ୍ଗ, କୂଅରେ ଥିବା ବଡ଼ ବେଙ୍ଗକୁ ସବୁଠାରୁ ବଡ଼ ଜନ୍ତୁବୋଲି ଭାବେ, କାରଣ କୂଅ ଭିତରୁ ସମୁଦ୍ରକୁ ଯିବା ପାଇଁ ତାକୁ କେବେହେଲେ ସୁଯୋଗ ମିଳିନାହିଁ । ସେ ଯଦି ତିମି, ତିମିଙ୍ଗଳ ଆଦି ବଡ଼ ବଡ଼ ଜୀବଙ୍କୁ ଦେଖିବ ତାର ଆଖି ଖୋଲିଯିବ । ଜନ୍ତୁ ଛୋଟ ଛୋଟ ମାଛ, ପୋକମାନଙ୍କୁ ଖାଇ ପୌରୁଷ ଦେଖାଇ ନିଜକୁ ଅଧିକ ଶକ୍ତିଶାଳୀ ବୋଲି ଭାବୁଥାଏ । ଯଦି କୌଣସି ବଡ଼ ଜୀବ ଆସି ତା ସହ ମୁକାବିଲା କରି ବସିବ ତାର ଜ୍ଞାନ ଆସିବ ଓ ସେ ଜାଣି ପାରିବ ଯେ ସଂସାରରେ ମଧ୍ୟ ତାଠାରୁ ବଡ଼ ଜୀବ ଅଛନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଆପଣ କହିଲେ ଯମରାଜ ସର୍ବଜ୍ଞ ଅଟନ୍ତି, ସେ କ'ଣ ଜାଣି ନଥିଲେ ଅଜାମିଲର ଏପରି ଦଶା ହେବ ବୋଲି । ଯଦି ସେ ଜାଣିଥିଲେ ଏହି ଜୀବ ବୈକୁଣ୍ଠ ଲୋକର ଅଧିକାରୀ ତେବେ ତାକୁ ଆଣିବା ନିମନ୍ତେ ନିଜର ଦୂତମାନଙ୍କୁ କାହିଁକି ପଠାଇଥିଲେ ? ଯଦି ସେ ଏ ସବୁ ଜାଣି ନଥିଲେ, ତେବେ ସେ ସର୍ବଜ୍ଞ ନୁହନ୍ତି । ଏସବୁ ପ୍ରଶ୍ନର ଉତ୍ତର ମୁଁ ଆପଣଙ୍କୁ ଦେଉଛି । ଜ୍ଞାନ ଓ ସର୍ବଜ୍ଞତାର ଗୋଟିଏ ସୀମା ଅଛି । ମୂର୍ଖ ପଢାଲେଖା କଲେ ସର୍ବଜ୍ଞ ହୁଏ । ତାଠାରୁ ମଧ୍ୟ ଅଧିକ ସିଦ୍ଧ ସର୍ବଜ୍ଞ ଅଛନ୍ତି । ତାଙ୍କଠାରୁ ଦେବତା, ଲୋକପାଳ, ଏବଂ ଏମାନଙ୍କ ଅପେକ୍ଷା ବ୍ରହ୍ମା ସର୍ବଜ୍ଞ ଅଟନ୍ତି । ବ୍ରହ୍ମା ରାଜକୁମାର ପ୍ରିୟବ୍ରତଙ୍କୁ ଉପଦେଶ ଦେଇ ସ୍ପଷ୍ଟ ଭାବରେ କହିଥିଲେ—"ଏହି ସର୍ବ-ଅନ୍ତର୍ଯାମୀ ପ୍ରଭୁଙ୍କ ଚେଷ୍ଟା ଦ୍ୱାରା ମୁଁ, ଭଗବାନ ଇନ୍ଦ୍ର ଆଦି ଦେବତା କାହାକୁହେଲେ ଭଲ ଭାବରେ ଜାଣିବା ନିମନ୍ତେ ସମର୍ଥ ନୁହେଁ । ପ୍ରାଣୀମାନଙ୍କ ପାପପୁଣ୍ୟ ସମ୍ବନ୍ଧରେ ଯମରାଜ ସର୍ବଜ୍ଞ ଅଟନ୍ତି । ସମସ୍ତଙ୍କର ପାପପୁଣ୍ୟ ପ୍ରମାଣ ସହିକାରେ ଲେଖି ରଖନ୍ତି । ସେହି ଅନୁସାରେ ପ୍ରାଣୀମାନଙ୍କୁ ସୁଖ, ଦୁଃଖ, ସ୍ୱର୍ଗ, ନରକ ପ୍ରଦାନ କରନ୍ତି, କିନ୍ତୁ ଭଗବାନ କେବେକେବେ କୌଣସି କାରଣ ବଶତଃ କୌଣସି ପ୍ରାଣୀପ୍ରତି କୃପା କଲେ ତାହା ଲୋକପାଳ ମଧ୍ୟ ଜାଣିପାରନ୍ତି ନାହିଁ ।"

ଏକଥା ଶୁଣି ଶୌନକ ପଚାରିଲେ —"ସୂତ ମହାଭାଗ ! ଭଗବାନଙ୍କର କୃପା ସମସ୍ତଙ୍କ ଉପରେ ସମାନ ଭାବରେ ପଡ଼ୁଅଛି କିନ୍ତୁ ଅଧିକ କୃପା ଦୃଷ୍ଟି ବିଶିଷ୍ଟ ପୁଣ୍ୟାତ୍ମା ଲୋକଙ୍କ ଉପରେ ପଡ଼େ । ପାପୀ ନିଜର ପାପ ନିମନ୍ତେ ଭଗବାନଙ୍କ କୃପା ପାଇବା ପାଇଁ ହକ୍‌ଦାର ନୁହେଁ ।"

ଏହାଶୁଣି ସୂତ କହିଲେ—"ମହାଭାଗ ! ଏକଥା ଠିକ୍, ଭଗବାନ ଧର୍ମମୂର୍ତ୍ତି ଅଟନ୍ତି, ଧର୍ମାତ୍ମାମାନେ ତାଙ୍କର ପରମପ୍ରିୟ । କିନ୍ତୁ ତାଙ୍କର କୃପା ପାଇବା ନିମନ୍ତେ ଧର୍ମାତ୍ମାମାନେ କେବଳ ହକଦାର ଏକଥା ଠିକ୍ ନୁହେଁ । ଯାହାକୁ ସେ ନିଜ ବାହୁରେ ବନ୍ଧନ କରି ରଖନ୍ତି ସେହିହିଁ ଉପଯୁକ୍ତ କୃପାପ୍ରାପ୍ତି ନିମନ୍ତେ ଅଧିକାରୀ । ଏହି ଜନ୍ମରେ ଯେ ପାପୀ ବୋଲି ବିବେଚିତ ପୂର୍ବ ଜନ୍ମରେ ସେ ପୁଣ୍ୟାତ୍ମା ହୋଇ ଥାଇପାରେ । ଭଗବାନ ଗୁଣ ଦ୍ୱାରା ପ୍ରସନ୍ନ ହୁଅନ୍ତି ଏହା ଠିକ୍ ନୁହେଁ । ଯଦି ଶୁଦ୍ଧ ଆଚରଣ, ପବିତ୍ର ଆଚାର ପ୍ରତି ଭଗବାନ ମୁଦ୍ରା ପ୍ରସନ୍ନ ତେବେ ଧର୍ମବ୍ୟାଧ ସିଏତ ପ୍ରତିଦିନ ମାଂସ ବିକ୍ରୟ କରୁଥିଲା...... । ଗୃଧ୍ର, ସେତ ଅତ୍ୟନ୍ତ ମାଂସଭୋଜୀ ଏକ ନିନ୍ଦନୀୟ ପକ୍ଷୀ । ଧର୍ମ ଶାସ୍ତ୍ରରେ ଲେଖା ଅଛି, ଏହି ଗୃଧ୍ରପକ୍ଷୀ ଯେଉଁ ଗୃହ ଉପରେ ବସିଯାଏ ସେହି ଗୃହର ଆଉଥରେ ସଂସ୍କାର କରାଯିବା ଦରକାର ପଡ଼େ । ଯଦି ଭଗବାନଙ୍କ କୃପା ନିମନ୍ତେ ପ୍ରାଣୀ ବିଦ୍ୱାନ ପଣ୍ଡିତ ହେବା ଉଚିତ୍ତ ତେବେ ଭାଲୁ ବାନର କେଉଁ ପାଠଶାଳାରେ

ପାଠ ପଢ଼ିଥିଲେ ? ଗଜେନ୍ଦ୍ର କେଉଁ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିଲେ ? ଏହିସବୁ କାରଣରୁ ଏହା ସିଦ୍ଧାନ୍ତ ହୋଇଛି ଯେ ଭଗବାନଙ୍କ କୃପା ପାଇବା ନିମନ୍ତେ କୌଣସି ନିୟମ ବାଧ୍ୟବାଧ ଭାବରେ ନାହିଁ । କେତେବେଳେ କେଉଁ ପ୍ରାଣୀ ଉପରେ କିପରି କୃପା ହୋଇଯାଏ ଏହାର ବିଚାର ଯମଦୂତମାନେ କିପରି ଜାଣିବେ । ତାଙ୍କର ପ୍ରଭୁ ଯମରାଜ ମଧ୍ୟ ଏହା ଜାଣିବାକୁ ସମର୍ଥ ନୁହଁନ୍ତି । ଅଜାମିଳର ଇତିହାସ ଶୁଣନ୍ତୁ, ଏହା ବହୁତ ପୁରୁଣା କଥା । ମୁଁ ଆପଣଙ୍କୁ ଏହି କଳିଯୁଗର ସବୁଠାରୁ କମ୍‌ଦିନର ଏକ ସତ୍ୟ ଘଟଣା ଶୁଣାଉଛି, ଏଥିରୁ ଆପଣ ଜାଣିପାରିବେ ଯେ, ଭଗବାନ ହଠାତ୍ କାହାପ୍ରତି କିପରି କୃପା କରନ୍ତି ।''

ପଞ୍ଚନଦ ଦେଶର ଗୁଲେର ନାମରେ ଏକ ଛୋଟିଆ ରାଜ୍ୟ ଅଛି । ଏହି ରାଜ୍ୟରେ ଜଣେ ପରମ ଧାର୍ମିକ ଭଗବତ ପ୍ରେମୀ ରାଜା ରାଜୁତି କରୁଥିଲେ । ତାଙ୍କ ପାଖରେ ଗୋଟିଏ ଚାକର ଥିଲା । ତାର ଧର୍ମ ପ୍ରତି ସେତେ ଆଗ୍ରହ ନ ଥିଲେହେଁ ସ୍ୱଭାବତଃ ସେ ଥିଲା ଜଣେ ଭକ୍ତ । ସେ ରାଜାଙ୍କ ଆଦେଶରେ ଦୋଷୀମାନଙ୍କୁ ଧରି ଆଣି ଦଣ୍ଡ ପ୍ରଦାନ କରିବା ଦ୍ୱାରା ଖୁବ୍ ଆନନ୍ଦ ପାଉଥିଲା । ସେ ଥିଲା ଏକ ଉଗ୍ର ସ୍ୱଭାବର ବ୍ୟକ୍ତି । ରାଜାଙ୍କର ଭୃତ୍ୟପ୍ରତି ଅନୁରାଗ ରହିଥିଲା । ସେ ରାଜାଙ୍କ ଦେଉଡ଼ିରେ ଆବଦ୍ଧଥିବା ସେବକମାନଙ୍କ ମଧ୍ୟରେ ଶ୍ରେଷ୍ଠ ଗଣା ଯାଉଥିଲା । କିଛି ଦିନ ପରେ ସେ ମରିଗଲା ।

ଦିନେ ରାଜା ଦେଖିବାକୁ ପାଇଲେ, ସେହି ଚାକର ଭୟଙ୍କରମୂର୍ତ୍ତି ଧାରଣ କରି ଆସି ତାଙ୍କ ସମ୍ମୁଖରେ ଠିଆ ହୋଇଛି । ରାଜାଙ୍କ ମନରେ ପ୍ରଥମେ ବଡ଼ ସନ୍ଦେହହେଲା କିଛି ସମୟପରେ ରାଜା ଚାକରର ନାଁ ଧରି ଡାକିଲେ । ସେ ରାଜାଙ୍କୁ ପ୍ରଣାମ କରି ଉତ୍ତର ଦେଲା । ରାଜା ତାକୁ ପଚାରିଲେ—''ଭାଇ ! ତୁମେ ମରି ଯାଇଥିଲ, ଏଠାକୁ ପୁଣି କିପରି ଆସିଲ ?''

ସେ କହିଲା —''ମହାରାଜ ! ପ୍ରକୃତରେ ମୋର ମୃତ୍ୟୁ ହୋଇଥିଲା । ମରିବା ପରେ ମୁଁ ଯମରାଜଙ୍କର ଦୂତ ପଦଲାଭ କରିଛି । ଯାହାର କାଳ ପୂରି ଯାଉଛି, ମୁଁ ସେହିମାନଙ୍କୁ ଧରି ଯମରାଜଙ୍କ ନିକଟକୁ ନେଇ ଯାଉଛି । ମୋ ସାଙ୍ଗରେ ମଧ୍ୟ ଆଉ ଦୁଇଜଣ ଅଛନ୍ତି । ମୁଁ ଆଜି ସ୍ନେହବଶତଃ ଆପଣଙ୍କ ଦର୍ଶନ ପାଇଁ ଚାଲି ଆସିଲି ।''

ରାଜାଙ୍କ ମନରେ ବଡ଼ କୌତୂହଳ ସୃଷ୍ଟି ହେଲା । ସେ ପୁଣି ତାକୁ ପଚାରିଲେ- ''ଏଠାକୁ ତୁମେ କାହାକୁ ଧରିନେବାକୁ ଆସିଛ ?''

ସେ କହିଲା - ''ମହାରାଜ ! ସେଇ ଯେଉଁ ଅମୁକ ଜମିଦାର ଅଛନ୍ତି, ସେ ବଡ଼ ନିଷ୍ଠୁର ଓ ଦୋଷୀ, ତାଙ୍କୁ ନେବାପାଇଁ ମୁଁ ଆସିଛି ।'' ସେହି ଠାକୁରରାଜାଙ୍କ ପାଖରେ ରହୁଥିଲା । ସେ ସୁସ୍ଥ ସବଳ ଥିବା ରାଜା ଦେଖିଥିଲେ, ଏଣୁ ରାଜା ତା କଥାକୁ ଆଦୌ

ବିଶ୍ୱାସ ନକରି କହିଲେ –"ଠିକ୍ ଅଛି, ତୁମେ ଯଦି ତାକୁ ନେଇଯିବ ତେବେ ତା ସହ ମୋର ସାକ୍ଷାତ ହେବା ଦରକାର ।"

ସେ ବିନୀତ ସ୍ୱରରେ କହିଲା –"ଉତ୍ତମ କଥା, ମହାରାଜାଙ୍କର ଯାହା ଆଦେଶ ।" ଏତିକି କହି ସେ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା ।

କିଛି ସମୟପରେ ସେ ପୁଣି ଆସି ପହଞ୍ଚିଲା । "କ'ଣ ତୁମେ ତାକୁ ନେଇ ଯାଉଛ ?"

ସେହି ଦୂତ କହିଲା—"ମହାରାଜ ! ତାକୁ ନେବାପାଇଁ ମୋର ହାତ ବଳିଲା ନାହିଁ ।"

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ –"କାହିଁକି କ'ଣ ହେଲା ? ତାକୁ ତୁମେ କାହିଁକି ଧରି ପାରିଲ ନାହିଁ ?"

ଦୂତ କହିଲା- "ମହାରାଜ ! ଆଜି ସେ ତା ଘୋଡ଼ା ଉପରେ ବସି କ୍ଷେତକୁ ଯାଉଥିଲା, ସେତେବେଳେ ତାର ମୃତ୍ୟୁ ସମୟ ଆସି ଉପସ୍ଥିତ ହେଲା । ଘୋଡ଼ା ଦୌଡ଼ିଲା ବେଳେ ଘୋଡ଼ା ଉପରୁ ତଳକୁ ଖସିପଡ଼ିଲା । ପଡ଼ିଯିବା ଫଳରେ ତାର ପ୍ରାଣବାୟୁ ଉଡ଼ିଗଲା । ସୁଖର କଥା ଏହିଯେ, ସେ ଯେଉଁ ସ୍ଥାନରେ ତଳକୁ ଖସି ପଡ଼ିଲା, ମାଟିତଳେ ଭଗବାନ ଶାଳଗ୍ରାମଙ୍କ ଦିବ୍ୟ ମୂର୍ତ୍ତିଟିଏ ଥିଲା । ସେହି ଶାଳଗ୍ରାମ ଶିଳା ଉପରେ ତାର ମୃତ୍ୟୁ ହୋଇ ଯାଇଥିଲା, ମୁଁ ତାକୁ କେମିତି ସ୍ପର୍ଶ କରିଥାଆନ୍ତି ! ତାକୁ ବିଷ୍ଣୁ ଦୂତ ମାନେ ସେଠାରୁ ନେଇଗଲେ ଓ ମୁଁ ଫେରି ଆସିଲି ।"

.ଏ କଥା ଶୁଣି ରାଜାଙ୍କ ମନରେ ଆହୁରି କୌତୁହଳ ସୃଷ୍ଟି ହେଲା । ସେ ସାଙ୍ଗେ ସାଙ୍ଗେ ମନ୍ତ୍ରିମାନଙ୍କୁ ନେଇ ସେହି ସ୍ଥାନରେ ଯାଇ ପହଞ୍ଚିଲେ । ଘଟଣାଟି ସତ । ଜମିଦାର ଘୋଡ଼ା ଉପରେ ଯାଇ ସେଇଠି ପ୍ରାଣ ହରାଇଛି । ରାଜା ତତ୍‌କ୍ଷଣାତ୍ ସେଠାରୁ ମାଟି ଖୋଳାଇଲେ । ଏକ ସୁନ୍ଦର ମନୋରମ ଶାଳଗ୍ରାମ ମୂର୍ତ୍ତି ବାହାରିଲା । ରାଜା ଶ୍ରଦ୍ଧା ସହକାରେ ସେହି ମୂର୍ତ୍ତିଟି ନେଇ ସ୍ଥାପନା କରିଦେଲେ । ଗୁଲେରର ରାଜ ଭବନରେ ଅଦ୍ୟାବଧି ସେହି ମୂର୍ତ୍ତି ପୂଜା ପାଉଛନ୍ତି । ଏହା କାହାଣୀ ନୁହେଁ, ଏକ ସତ୍ୟ ଘଟଣା । ଶୁଣନ୍ତୁ କେତେବେଳେ ଯେ କାହାକୁ ଏପରି ସୁଯୋଗ ମିଳେ ତାହାହିଁ କେବଳ ଶ୍ରୀହରି ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ । ଅଜାମିଳ ପ୍ରତି ଭଗବାନଙ୍କର କାହିଁକି କୃପାହେଲା, ମରିବା ସମୟରେ ତା ମୁହଁରୁ କିପରି ଭଗବାନଙ୍କ ନାମ ବାହାରି ପଡ଼ିଲା, ଏହାକୁ ଭଗବାନଙ୍କ କୃପା ବ୍ୟତୀତ ଆଉ କ'ଣ କୁହାଯାଇପାରେ ?

ଶୌନକ କହିଲେ- "ହଁ ସୂତ ମହାଭାଗ ! ଆପଣ ସତକଥା କହୁଛନ୍ତି । ଏହା ଭଗବାନଙ୍କ ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ । ବର୍ତ୍ତମାନ ଆପଣ ଆଗ କଥା

ଶୁଣାଇବା ହୁଅନ୍ତୁ ।'' ଏହାପରେ ସୂତ କହିଲେ—''ମହାଭାଗ ! ଶୁଣନ୍ତୁ ଯେଉଁ ଭଳି ଭାବରେ ମୋର ଗୁରୁଦେବ ଭଗବାନ ଶୁକଦେବଙ୍କଠାରୁ ରାଜା ପରୀକ୍ଷିତ ଭବିଷ୍ୟତ ବୃତ୍ତାନ୍ତମାନ ପଚାରି ବୁଝିଥିଲେ ତାହା ମୁଁ ଆପଣଙ୍କ ଆଗରେ କହୁଛି ।''

ରାଜା ପରୀକ୍ଷିତ ଶୁକଦେବଙ୍କୁ ପଚାରିଲେ- ''ଭଗବାନ ! ଯେଉଁ ଦେବଶ୍ରେଷ୍ଠ ଧର୍ମରାଜଙ୍କ ଅଧୀନରେ ଏହି ସମ୍ପୂର୍ଣ୍ଣ ସଂସାର ରହିଅଛି, ଯେତେବେଳେ ତାଙ୍କ ଆଦେଶର ଅବମାନନା ହେଲା ତଥା ତାଙ୍କର ଦୂତମାନେ ବିଷ୍ଣୁପାର୍ଷଦମାନଙ୍କ ଦ୍ୱାରା ଖରାପ ଭାବରେ ବିତାଡ଼ିତ ହୋଇ ଆସିଲେ, ସେତେବେଳେ ଯମରାଜା ତାଙ୍କର ଦୂତମାନଙ୍କୁ କ'ଣ କହିଲେ ? ସେ ବିଷ୍ଣୁପାର୍ଷଦମାନଙ୍କ ବିରୁଦ୍ଧରେ କାହିଁକି ଶାନ୍ତିଭଙ୍ଗ କାରଣରୁ ଭଗବାନଙ୍କ ଉଚ୍ଚନ୍ୟାୟାଳୟରେ ମାନହାନି ଦାଏର କଲେନାହିଁ ? ଭଗବାନ ! ମୋତେ ଏସବୁ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି । ଯମରାଜଙ୍କ ଆଦେଶର ଅବମାନନା ଘଟିବା କଥା ମୁଁ ଆଗରୁ କେବେ ଶୁଣିନଥିଲି । ମହାରାଜ ! ଆପଣ ହିଁ ମୋର ଏହି ସନ୍ଦେହକୁ ଖୁବ୍ ସରଳ ଭାବରେ ମୋଚନ କରିବା ନିମନ୍ତେ ସମର୍ଥ ଅଟନ୍ତି କାରଣ ଆପଣ ଜଣେ ସର୍ବଜ୍ଞ ପୁରୁଷ ।''

ଏକଥା ଶୁଣି ହସି ହସି ଭଗବାନ ଶୁକଦେବ କହିଲେ-''ରାଜା ! ଶୁଣନ୍ତୁ ! ଯମଦୂତମାନେ ବିଷ୍ଣୁପାର୍ଷଦମାନଙ୍କ ଦ୍ୱାରା ମାଡ଼ଖାଇ ବିତାଡ଼ିତ ହୋଇ ଆସି ମୁହଁ ବନ୍ଦକରି, ଦୁଃଖିତ ବଦନରେ ଉଦାସ ଭାବରେ ଯମରାଜାଙ୍କୁ କହିଲେ-''ପ୍ରଭୁ ! ଆମେ ଜାଣିବାକୁ ଚାହୁଁଛୁ କି ପ୍ରାଣୀମାନଙ୍କର ପାପ, ପୁଣ୍ୟ, ତଥା ମିଶ୍ରିତ ସମସ୍ତ ପ୍ରକାର କର୍ମର ଫଳ ପ୍ରଦାନ ନିମନ୍ତେ ପ୍ରକୃତରେ କେତେଜଣ ଶାସକ ଅଛନ୍ତି ?''

ଯମରାଜ ନିଜର ଦୂତମାନଙ୍କ ମୁହଁରୁ ହଠାତ୍ ଏପରି ପ୍ରଶ୍ନ ଶୁଣି ଭ୍ରମୀଭୂତ ହୋଇଗଲେ । ଏମାନେ ଆଜି ବିଚିତ୍ର ପ୍ରଶ୍ନ ପଚାରୁଛନ୍ତି, ଏପରି ପ୍ରଶ୍ନତ ସେମାନେ ପୂର୍ବରୁ କେବେହେଲେ ପଚାରି ନଥିଲେ ।''

ଯମରାଜ ଅତି ଆଶ୍ଚର୍ଯ୍ୟ ସହକାରେ ପଚାରିଲେ-''କାହିଁକି, କଥା କ'ଣ ? ତୁମେ-ମାନେ ଏହିପରି ପ୍ରଶ୍ନ ପଚାରିବାର ଉଦ୍ଦେଶ୍ୟ କ'ଣ ?''

ଯମଦୂତମାନେ ଅତି ବିନମ୍ର ସହକାରେ କହିଲେ-''ମହାରାଜ ! ଉଦ୍ଦେଶ୍ୟ ହେଉଛି ଯଦି ପ୍ରଭୁ ଜଣେ ହୁଏ, ତେବେ ନ୍ୟାୟ ଠିକ୍ ମିଳିପାରେ । ଅନେକ ପ୍ରଭୁ ହେଲେ କିଏ ଯେବେ କାହାକୁ ଦଣ୍ଡଦେବା ନିମନ୍ତେ କାହାକୁ ଧରି ଆଣିଥିବ ଅନ୍ୟଜଣେ ତାକୁ ଦୟା ଦେଖାଇ ଛାଡ଼ି ଦେଇପାରେ । ଏହାହେଲେ କେହି ଲୋକ ଅପରାଧ କରି ମଧ୍ୟ ଦଣ୍ଡ ନପାଇପାରେ । କେତେକ ମଧ୍ୟ ବିନା ଅପରାଧରେ ଧରାହୋଇ ଆସି ଅପରାଧୀ ବୋଲି ସାବ୍ୟସ୍ତ ହୋଇ ଯାଇ ପାରନ୍ତି; ପୁଣି କାହାକୁ ସୁଖ ଦୁଃଖ ପ୍ରଦାନ କରାଯିବ କାହାକୁ ନରକକୁ ପଠାଯିବ ଏସବୁର ବିଚାର କିଏ କରିବ ?''

ଯମରାଜ କହିଲେ-"ଭାଇ ! ପାପ ପୁଣ୍ୟ କରୁଥିବା ପ୍ରାଣୀ ବହୁତଅଛନ୍ତି । ଜଣକ ଦ୍ୱାରା ନ୍ୟାୟ ହୋଇ ପାରିବ ନାହିଁ । ଏଣୁ ଅନେକ ବିଚାରକ ନିଯୁକ୍ତ କରାଯାଏ । ଏପରି କିଛି ନିୟମ ନାହିଁ ଯେ ଶାସକ ଅନେକ ନହୋଇ ଜଣେ ଶାସକ ରହିବେ ।

ଯମଦୂତ କହିଲେ-"ମହାରାଜ ! ଶାସକ ରହିବା ଭଲ କିନ୍ତୁ ସେମାନେ ମନଇଚ୍ଛା କାମ କରିବା ଉଚିତ ନୁହେଁ । ସମସ୍ତ ଶାସକ ଜଣେ ମୁଖ୍ୟ ଶାସକଙ୍କ ଅଧୀନରେ ରହିବା ଉଚିତ । ଯାହା ଫଳରେ କି ସେମାନେ ମନମୁଖୀ ଶାସନ କରି ପାରିବେ ନାହିଁ । ଯେପରି ମାଣ୍ଡଳିକ ରାଜା ବହୁତ ଅଛନ୍ତି କିନ୍ତୁ ସମ୍ରାଟଙ୍କର ସମ୍ରାଟ ଜଣେ । ଆମେ ଏପର୍ଯ୍ୟନ୍ତ ବୁଝିପାରିଛୁ ଯେ, ସଂସାରରେ ଯେତେସବୁ ସାଧାରଣ ଶାସକ ଅଛନ୍ତି ସେହି ସମସ୍ତଙ୍କର ପ୍ରଧାନ ଶାସକ ସଚରାଚର ଜୀବମାନଙ୍କର ଶୁଭାଶୁଭ ବିଚାରକ ପ୍ରଭୁ ଆପଣ ଅଟନ୍ତି ।"

ଯମରାଜ ହସିକରି କହିଲେ- ଏପର୍ଯ୍ୟନ୍ତ ତ ଏକଥା ବୁଝି ପାରିଥିଲ ଏବେ ଆଉ କ'ଣ ବୁଝିବାକୁ ଅଛି ?

ଯମଦୂତ କହିଲେ-"ମହାରାଜ ! ବର୍ତ୍ତମାନ ଆମକୁ କିଛି ସନ୍ଦେହ ଲାଗୁଛି । ତେଣୁ ଏଭଳି ପ୍ରଶ୍ନ ପଚାରିଲୁ । ପୂର୍ବରୁ ଏପର୍ଯ୍ୟନ୍ତ ଆମ ମନରେ ଏଭଳି ସନ୍ଦେହ ଦେଖାଦେଇ ନଥିଲା, ଆଜି ଯେପରି ଏକ ଘଟଣା ଘଟିଛି ।

ଯମରାଜ ପଚାରିଲେ- "ସେ କ'ଣ ? ଏହିପରି ଘଟଣା ଘଟିଛି ?

ଯମଦୂତ କହିଲେ- "ମହାରାଜ ! କ'ଣ ଆଉ କହିବୁ ? ଆଜି ଆମେ ଗୋଟିଏ ପାପୀକୁ ଆପଣଙ୍କ ଆଦେଶ ବଳରେ ବାନ୍ଧି ଆଣୁଥିଲୁ । ଏହି ସମୟରେ ଚାରିଜଣ ଅଦ୍ଭୁତ ଦିବ୍ୟପୁରୁଷ ହଠାତ୍ ଆସି ତାକୁ ବଳପୂର୍ବକ ଆମଠାରୁ ଛଡ଼ାଇ ନେଇଗଲେ ଏବଂ ଆମ-ମାନଙ୍କୁ ଏପରି ମାଡ଼ ଦେଲେ, ପ୍ରଭୁ ! ଆମର ପିଲାଦିନର କଥାମନେ ପଡ଼ିଗଲା । ଯଦି ସେପରି ମାଡ ଆଉଥରେ ଆମେ ଖାଇବୁ ତେବେ ଆମ ହାଡ଼ ଗୋଡ଼ ଭାଙ୍ଗିଯିବ । ଏଣୁ ମହାରାଜ ! ଏହି ନିଅନ୍ତୁ ଆମର ଇସ୍ତଫା ପତ୍ର, ଏଭଳି କାମ ଆମଦ୍ୱାରା ଆଉହୋଇ ପାରିବ ନାହିଁ ।"

ଯମରାଜ କହିଲେ-"ଭାଇ ! କଥା କ'ଣ କୁହ । ସେମାନେ କୌଣସି କଥାବାର୍ତ୍ତା ନକରି ତୁମଠାରୁ ଛଡ଼ାଇ ନେବା ସାହସ କେହି କରିପାରିବ ? ସେ ମରଣ ସମୟରେ କ'ଣ କିଛି କହିଥିଲେକି ?

ଯମଦୂତମାନେ ଉପେକ୍ଷା ସ୍ୱରରେ କହିଲେ- "ହଁ ମହାରାଜ ! ସେମାନେ କହିଲେ କ'ଣ ପଥର ! ତାର ନିଜର ଚେତା ନଥିଲା, ନିଜର ପାପଗୁଡ଼ିକୁ ସ୍ମରଣ କରି ସେ ଅତ୍ୟନ୍ତ ଭୟଭୀତ ତଥା ସଙ୍କୁଚିତ ଭାବରେ ପଡ଼ିଥିଲା । କେବଳ 'ନାରାୟଣ

ନାରାୟଣ' ଏହିପରି ରଡ଼ି ଛାଡ଼ୁଥିଲା । ଠିକ୍ ଏହି ସମୟରେ ସେହି ଗୃଧ୍ରଗଣ ଯେପରି ଚାଲି ମାଂସ ଖଣ୍ଡକୁ ଟେଡ଼ିଯାଆନ୍ତି ସେହିପରି ସେମାନେ ଏକ ସଙ୍ଗରେ ଦୌଡ଼ି ଆସି ଖୁବ୍ ଉଚ୍ଚସ୍ୱରରେ କହିଲେ-"ଭୟ କରନାହିଁ, ନିର୍ଭୟରେ ରୁହ ।" "ମହାରାଜ ! ଆମେ ସବୁ ଅବାକ୍ ହୋଇ ରହିଗଲୁ । ସେମାନେ ଆମର ସମସ୍ତ ଚେଷ୍ଟା ବିଫଳ କରିଦେଲେ । ଏଣୁ ପ୍ରଭୁ ! ଆମକୁ ଦୟାକରି କୁହନ୍ତୁ ସେହିସବୁ ଅଦ୍ଭୁତ ପୁରୁଷଗଣ କିଏ, ସେମାନେ କାହାର ଦୂତ, 'ନାରାୟଣ' ଶବ୍ଦ ଶୁଣି ସେମାନେ କେଉଁଠୁ ଆସି ପହଞ୍ଚିଲେ ? ସେମାନେ ସେହିପାପୀକୁ ଆମଠାରୁ ବଳପୂର୍ବକ କାହିଁକି ଛଡ଼ାଇ ନେଇଗଲେ ?"

ଶ୍ରୀ ଶୁକଦେବ କହିଲେ-"ରାଜନ ! ଏସବୁ କଥା ଦୂତମାନଙ୍କ ମୁହଁରୁ ଶୁଣି ଯମରାଜଙ୍କ ଆଖିରୁ ପ୍ରେମ ଅଶ୍ରୁ ବାହାରି ପଡ଼ିଲା । 'ନାରାୟଣ' ଶବ୍ଦ ଶୁଣିବା ମାତ୍ରକେ ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗ ପୁଲକିତ ହୋଇ ଉଠିଲା । ସେ ଭଗବାନଙ୍କ ଚରଣ କମଳକୁ ଧ୍ୟାନ କରି ପ୍ରେମ ଅଶ୍ରୁକୁ ପୋଛିବାକୁ ଲାଗିଲେ ଏବଂ ଦୂତମାନଙ୍କର ପ୍ରଶ୍ନର ଉତ୍ତର ଦେବାପାଇଁ ପ୍ରସ୍ତୁତ ହୋଇ ପଡ଼ିଲେ ।"

## ଛପ୍ପୟ

ଶଙ୍ଖ ଚକ୍ର ବନମାଲ ଗଦାଭୃତ ସେବକ କିନକେ ।
କାଟକେ ହୈଂ ଓ୍ୱେ ଦୂତ କୌନ ସ୍ୱାମୀ ହୈଂ ତିନକେ ।।
ସବକେ ଶାସକ ଆପ ଜୀବ ପ୍ରାନନ କେ ହର୍ତ୍ତା ।
ଶାସନ ସବକୋ କରେଂ, ଶୁଭାଶୁଭ ନିର୍ଣ୍ଣୟ କର୍ତ୍ତା ।।
ଇତନେ ପୈ ଉ ଆପ କୀ, ଆଜ୍ଞା ଉଲ୍ଲଂଘନ ଭଈ ।
ବିନା ବାତ କେ ବୀଚ ମେଂ, ହମରି ଦୁର୍ଗତି ହୈ ଗଈ ।।



# ଯମରାଜାଙ୍କ ଦ୍ୱାରା ଦୂତମାନଙ୍କ ପ୍ରଶ୍ନର ଉତ୍ତରପ୍ରଦାନ

ପରୋ ମଦନ୍ୟୋ ଜଗତସ୍ତସ୍ଥୁଷଶ୍ଚ
ଓତଂ ପ୍ରୋତଂ ପଟବଦ୍ ଯତ୍ର ବିଶ୍ୱମ୍ ।
ଯଦଂଶତୋଽସ୍ୟ ସ୍ଥିତିଜନ୍ମନାଶା
ନସ୍ୟୋତବଦ୍ୟସ୍ୟ ବଶେ ଚ ଲୋକଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୩ୟ ଅଧ୍ୟାୟ ॥ ୧୨-ଶ୍ଳୋକ ]

'ନାରାୟଣ' ହେ ମନ୍ତ୍ର ଜନ୍ତ୍ର ଓ୍ୱା ଜାଦୁ ଟୌନା ।
କାହୁ ନରନେ ମୃତ୍ୟୁ ସମୟ ଜିହ୍ୱ ନାମ କହ୍ୟୋ ନା ॥
ସୁନ ନାରାୟନ ନାମ ଭୟୋ ତନ ପୁଲକିତ ଯମ କୋ ।
ପ୍ରେମ ମଗ୍ନ ହୈ କର୍ୟୋ ଧ୍ୟାନ ଭଗବତ୍ ଚରନନ କୋ ॥
ଜଲଦ ସରିସ ଅତି ବିମଲବର, ଜୋ ହରି ନିତ୍ୟ ନବୀନ ହୈଂ ।
ଶିବ ବିରଞ୍ଚି ଇନ୍ଦ୍ରାଦି ହମ, ତିନକେ ନିତ୍ୟ ଅଧୀନ ହୈଂ ॥

ନିଜର ପ୍ରିୟତମର ଗୁଣଗାନ କୌଣସି କାରଣରୁ ହୋଇଗଲେ ପ୍ରେମୀ ଏଥିରେ ଆନନ୍ଦପାଏ ଏବଂ ପ୍ରେମାସ୍ପଦଙ୍କର ସମ୍ବନ୍ଧରେ ନିଜେ ଉଦ୍‌ଗୀରଣ କରି ଆନନ୍ଦିତ ହୁଏ । ସଂସାରରେ ଯେତେ ସବୁ ଶ୍ରବଣୀୟ ପ୍ରେମ ବାକ୍ୟ ଅଛି ତାହା ସବୁଠାରୁ ପ୍ରିୟ ଓ ପ୍ରେମାସ୍ପଦ କଥା । ସଂସାରରେ ଯେତେ ସବୁ ଗାୟନ ଯୋଗ୍ୟ ବସ୍ତୁଅଛି ତନ୍ମଧ୍ୟରେ ସୁଖଦ, ସୁନ୍ଦର ଏବଂ ହୃଦୟକୁ ତନ୍ମୟ କରିଦେବା ଇଷ୍ଟ ଦେବଙ୍କର ପ୍ରେମାସ୍ପଦ ଗୌରବମୟ ଗୁଣଗାଥା ହିଁ ଶ୍ରେଷ୍ଠ ।

ଶ୍ରୀ ଶୁକଦେବ କହିଲେ -"ରାଜନ ! ଜଣାଯାଉଛି ଯମରାଜାଙ୍କର ଦୂତମାନେ ଥିଲେ ନୂତନ ଦୂତ । ଆଉରି ପ୍ରମାଣିତ ହେଉଛି ଯେ, ସେମାନେ ଭଗବଦ୍‌ଭକ୍ତ ପ୍ରତି ମଧ୍ୟ

ଅନଭିଜ୍ଞଥିଲେ । ଆଜି ସେମାନଙ୍କ ମୁହଁରୁ ନାରାୟଣଙ୍କ ମହିମା ଶ୍ରବଣକରି ଯମରାଜ ଅତ୍ୟନ୍ତ ଆନନ୍ଦ ହୋଇପଡ଼ିଲେ । ଭଗବାନଙ୍କର ସୁମଧୁର ତ୍ରୈଲୋକ୍ୟ ପାବନ ନାରାୟଣ ନାମ ଶ୍ରବଣ କରି ତାଙ୍କର ସମଗ୍ର ଶରୀର ରୋମାଞ୍ଚିତ ହୋଇ ଉଠିଲା । ପ୍ରେମର ଆବେଗରେ ସେ ତନ୍ମୟ ହୋଇ କିଛି ସମୟ ପରେ ଦୂତଙ୍କୁ କହିଲେ—ଆହେ ଦୂତଗଣ ! ତୁମେ ମୋତେ ସବୁ କ'ଣ ବୁଝାଉଛ ? ଏପରି ଭାବରେ ମୋତେ ବୁଝାଇବା ତୁମମାନଙ୍କର ମହାଭ୍ରମ । ମୁଁ ଏହି ସଚରାଚର ବ୍ରହ୍ମାଣ୍ଡର ପ୍ରଭୁ ନୁହେଁ । ଏହି ଜଗତକୁ ପିତାମହ ବ୍ରହ୍ମା ସୃଷ୍ଟି କରିଛନ୍ତି । ସେ ହେଉଛନ୍ତି ସମସ୍ତଙ୍କର ପ୍ରଭୁ । ସମଗ୍ର ବିଶ୍ୱର ପାଳନ ଭଗବାନ ଶ୍ରୀବିଷ୍ଣୁ କରନ୍ତି, ଏଣୁ ସେ ପାଳନ କର୍ତ୍ତା । ତ୍ରିନେତ୍ର ରୁଦ୍ର ପରିଶେଷରେ ସମସ୍ତଙ୍କୁ ସଂହାର କରୁଥିବାରୁ ତାଙ୍କୁ ସଂହାର କର୍ତ୍ତା ବୋଲି କୁହାଯାଏ । ଏହି ତିନିଜଣ ଯାହାଙ୍କ ଅଂଶରୁ ଜାତ ହୋଇଛନ୍ତି ସେ ହେଉଛନ୍ତି ନାରାୟଣ । ସେ ହେଉଛନ୍ତି ସମସ୍ତଙ୍କର ଗତି ମୁକ୍ତିଦାତା । ସେ ହେଉଛନ୍ତି ଗୁରୁମାନଙ୍କର ଗୁରୁ । ସମସ୍ତ ଶାସକଙ୍କର ସମ୍ରାଟ । ତାଙ୍କର ଆଦେଶ ପାଳନକାରୀ ଭାବରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ଅନ୍ୟାନ୍ୟ ଦେବତାମାନେ ଅଛନ୍ତି । ସେ ସାରା ବିଶ୍ୱରେ ଏପରି ଭାବରେ ଓତଃ ପ୍ରୋତ ଭାବରେ ଜଡ଼ିତ ଯେପରି କି, ଘଟ ସହିମାଟି, ସୁବର୍ଣ୍ଣ ସହି କୁଣ୍ଡଳ ଓ ଲୁଗାସହି ସୂତା ଜଡ଼ିତ ହେଲାପରି ରହି ଥାଆନ୍ତି । ସେହି ସର୍ବେଶ୍ୱର ସକଳ ପ୍ରାଣୀଙ୍କୁ ପରିଚାଳିତ କରନ୍ତି ।

ଦୂତଗଣ ପଚାରିଲେ "ମହାରାଜ ! ସେ କିପରି ସମସ୍ତଙ୍କୁ ପରିଚାଳିତ କରୁଛନ୍ତି ।"

ଯମରାଜ କହିଲେ – ସେ କିପରି ପରିଚାଳିତ କରନ୍ତି ତାହା ମଧ୍ୟ ଏକ ପ୍ରଶ୍ନ । କେଳା ମାଙ୍କଡ଼ଟିକୁ ନଚାଉଛି । ମାହୁନ୍ତ ହାତୀକୁ ଧରି ବୁଲାଉଛି । ଓଟବାଲା ଓଟର ନାକରେ ରସିବାନ୍ଧି ଯେଉଁଆଡ଼େ ଇଚ୍ଛା ସିଆଡ଼େ ନେଇ ଯାଉଛି । କୃଷକ ବଳଦମାନଙ୍କୁ ମନଇଚ୍ଛା ବ୍ୟବହାର କରିପାରୁଛି । ଏହିଭଳିରେ ବର୍ଣ୍ଣାଶ୍ରମ ରୂପନାମରେ ବେଦରୂପକ ରସିରେ ବାନ୍ଧି ନାରାୟଣ ରୂପକ ସ୍ୱାମୀ ପ୍ରାଣୀକୁ ଯେଉଁଆଡ଼େ ଇଚ୍ଛା ସିଆଡ଼େ ନେଇ ଯାଆନ୍ତି । ସମସ୍ତ ପ୍ରାଣୀ ବିବଶ ହୋଇ ତାଙ୍କ ନିର୍ଦ୍ଦେଶରେ ନାଚକରନ୍ତି । ତାଙ୍କ ଇଚ୍ଛା ବିରୁଦ୍ଧରେ ତିଳେ ପ୍ରମାଣ କେହି କେଉଁ ଆଡ଼େ ଯାଇ ପାରନ୍ତି ନାହିଁ ।"

ଦୂତମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ତେବେ କ'ଣ ଆପଣ ତାଙ୍କର ଆଦେଶରେ ପ୍ରାଣୀମାନଙ୍କୁ ଧରି ଆଣନ୍ତି । ଆପଣ କ'ଣ ସ୍ୱାଧୀନ ନୁହଁନ୍ତି ?"

ଯମରାଜା ଏହିକଥା ଉପରେ ଜୋର ଦେଇ କହିଲେ – "ଆରେ ଭାଇ ! ମୁଁ କ'ଣ ? ଇନ୍ଦ୍ର, ବରୁଣ, କୁବେର, ଅଗ୍ନି, ଶିବ, ବାୟୁ, ଚନ୍ଦ୍ର, ସୂର୍ଯ୍ୟ, ବ୍ରହ୍ମା, ଦ୍ୱାଦଶ

ଆଦିତ୍ୟ, ବିଶ୍ୱେଦେବ, ବସୁଗଣ, ମରୁତ ଗଣ, ସାଧ୍ୟଗଣ, ସିଦ୍ଧଗଣ ତଥା ରୁଦ୍ର ଦେବଗଣ ଏମାନଙ୍କ ବ୍ୟତୀତ ତମୋଗୁଣରହିତ ଭୃଗୁ ଆଦି ମହର୍ଷି, ପ୍ରଜାପତି, ବୈବଶ୍ୱତ ଆଦି, ମନୁତଥା ସତ୍ୟପ୍ରଧାନ ଦେବତାଗଣ କେହି ହେଲେ ତାଙ୍କର ଲୀଳା ଜାଣନ୍ତି ନାହିଁ, ସେହି ସମସ୍ତଙ୍କର ପ୍ରଭୁ ।"

ଦୂତମାନେ ପଚାରିଲେ "ପ୍ରଭୋ ! ସେ କେଉଁଠାରେ ଅବସ୍ଥାନ କରନ୍ତି ଓ ତାଙ୍କର ଦର୍ଶନ କିପରି ମିଳିବ ?"

ଯମରାଜା ହସି କହିଲେ - "ଆରେ ଭାଇ ! ସେ କୌଣସି ଗୋଟିଏ ସ୍ଥାନରେ ରହିନ୍ତି ନାହିଁ, ସେ ସର୍ବଜ୍ଞ, ସର୍ବବ୍ୟାପକ । ସେ ଜୀବ ମାତ୍ରକେ ସମସ୍ତଙ୍କ ହୃଦୟରେ ସାକ୍ଷୀ ରୂପରେ ବିଦ୍ୟମାନ ଅଛନ୍ତି । ପ୍ରାଣୀ ଇନ୍ଦ୍ରିୟ, ମନ, ପ୍ରାଣ, ବଚନ ଆଦି କୌଣସି ଦ୍ୱାରା ତାଙ୍କୁ ଜାଣିବା ପାଇଁ ସକ୍ଷମ ନୁହଁନ୍ତି ।"

ଦୂତମାନେ ପଚାରିଲେ –"ପ୍ରଭୁ ! ଯଦି ସମସ୍ତ ପ୍ରାଣୀ ତାଙ୍କ ପ୍ରକାଶ ଦ୍ୱାରା ପ୍ରକାଶିତ ତେବେ ପ୍ରାଣୀ ତାଙ୍କୁ ଦେଖିପାରୁ ନାହିଁ କାହିଁକି ?

ଯମରାଜ କହିଲେ—"ଆରେ ଭାଇ ! ଏତ ବଡ଼ ଗହନ କଥା । ଅତିଦୂରରେ ତଥା ଅତି ନିକଟରେ ଥିବା ବସ୍ତୁକୁ ଦେଖି ହୁଏ ନାହିଁ । ପ୍ରୟାଗଠାରେ ଆମେ ଅଛେ ଆଉ ବାରଣାସୀଠାରେ କ'ଣ ହେଉଛି ଏହାକୁ ସୂର୍ଯ୍ୟ ଓ ଚକ୍ଷୁଥିବା ଲୋକମାନେ ମଧ୍ୟ ଦେଖି ପାରିବେ ନାହିଁ । ଯେଉଁ ଚକ୍ଷୁ ସମସ୍ତଙ୍କୁ ଦେଖି ପାରୁଛି ସେଇ ଆଖି ଲଗାଇଥିବା କଜ୍ଜଳକୁ ଦେଖିପାରେ ନାହିଁ । ଯେଉଁ ନେତ୍ର ଇନ୍ଦ୍ରିୟ ଦ୍ୱାରା ସବୁ ପ୍ରତ୍ୟକ୍ଷ ଭାବରେ ଦେଖି ପାରୁଛି ସେହି ଚକ୍ଷୁ ତାକୁ ପ୍ରକାଶ କରୁଥିବା ଚକ୍ଷୁ ଇନ୍ଦ୍ରିୟକୁ ବଳ ରୂପବାନ ପଦାର୍ଥକୁ ଦେଖିବାକୁ ସମର୍ଥ ନୁହେଁ । ଏହିପରି ସମସ୍ତଙ୍କ ହୃଦୟରେ ସେ ସ୍ଥିତବାନ ହୋଇ ମନ ବୁଦ୍ଧି ତଥା ଇନ୍ଦ୍ରିୟମାନଙ୍କ ଦ୍ୱାରା ଦେଖା ଯାଆନ୍ତି ନାହିଁ ।"

ଦୂତମାନେ କହିଲେ "ତେବେ ପ୍ରଭୁ ! ସେ ଏକ ନା ଅନେକ ? ଆମ ସମ୍ମୁଖରେ ଯେଉଁ ପରମ ମନୋହର ଅତ୍ୟନ୍ତ ରୂପବାନ୍ ସର୍ବଗୁଣ ସମ୍ପନ୍ନ ତଥା ସୁନ୍ଦର ସ୍ୱଭାବ ବିଶିଷ୍ଟ ଚାରିଜଣ ମହାପୁରୁଷ ପ୍ରକଟ ହୋଇଥିଲେ; ସେମାନେ ସମସ୍ତେ କ'ଣ ନାରାୟଣ, ନା ସେଥି ମଧ୍ୟରୁ କିଏ ଜଣେ ନାରାୟଣ ଅଥବା ଏହି ଚାରିଜଣଙ୍କ ବ୍ୟତୀତ ଆଉ ଅନ୍ୟକିଏ ନାରାୟଣ ଅଛି ?"

ଯମରାଜ ହସି କହିଲେ —"ଆରେ ପାଗଳ ! ସେମାନେ ସବୁ ଶ୍ରୀମନ୍ନାରାୟଣଙ୍କ ପାର୍ଷଦ ଥିଲେ । ସେହି ଲୋକମାନେ ଭଗବାନଙ୍କପରି ଚତୁର୍ଭୁଜରେ ଶଙ୍ଖ, ଚକ୍ର ଗଦାପଦ୍ମ ଧାରଣ କରନ୍ତି । ବନମାଳା ପରିହିତ କରି, ପୀତାମ୍ବର ପରିଧାନ କରି, ଦିବ୍ୟ ବିମାନରେ ବିହରଣ କରିଥାନ୍ତି ।"

ଦୂତମାନେ ପଚାରିଲେ –"ମହାରାଜ ! ଆମେ ସେଠାରେ ଯେତେବେଳେ ଯାଇ ପହଞ୍ଚିଲୁ ସେଠାରେ ତ ସେମାନେ ନଥିଲେ । ଯେତେବେଳେ ଆମେ ସେହି ପାପୀକୁ ବାନ୍ଧିକରି ଆଣିବାକୁ ଆରମ୍ଭ କଲୁ, ସେତେବେଳେ ପାପୀ ମୁହଁରୁ 'ନାରାୟଣ' ଏହି ଚାରି ଅକ୍ଷର ଶୁଣିବା ମାତ୍ରେ ହଠାତ୍ କେଉଁଠାରୁ ଆସି ପହଞ୍ଚିଗଲେ ?"

ଯମରାଜ ହସି କରି କହିଲେ -"ଭାଇ ! ତାଙ୍କର ଯିବା ଆସିବା, ରହିବା କଣ ଥାଏ, ସେମାନେ ସବୁବେଳେ ସଂସାର ମଧ୍ୟରେ ଘୂରି ବୁଲୁଥାଆନ୍ତି ।"

ଯମଦୂତମାନେ ପଚାରିଲେ— "ପ୍ରଭୁ ! ଏମାନେ ଏଭଳି ବିଶ୍ୱରେ ଭ୍ରମଣ କରିବାର କାରଣ କ'ଣ ?

ଯମରାଜ କହିଲେ—ଦେଖ ଭାଇ ! ବିଷ୍ଣୁଭକ୍ତମାନଙ୍କର କେଉଁଠି ସତ୍ତା ରହିଛି କି ନାହିଁ ଓ ସେମାନେ କଷ୍ଟ ପାଉଛନ୍ତି ନା ଭଲରେ ଅଛନ୍ତି, ଏ ସବୁ ଜାଣିବାପାଇଁ ବ୍ରହ୍ମାଣ୍ଡ ଯାକ ବୁଲି ବୁଲି ଦେଖିବା ସେମାନଙ୍କର କର୍ତ୍ତବ୍ୟ । ସେମାନେ ଦେବବନ୍ଦିତ ସ୍ୱରୂପ ବିଷ୍ଣୁଦୂତ ଭଗବଦ୍ ଭକ୍ତ ମନୁଷ୍ୟଙ୍କୁ, ପଶୁ ପକ୍ଷୀମାନଙ୍କୁ, ମୋତେ, ତଥା ଅଗ୍ନି ଆଦି ମାରକ ବସ୍ତୁ ସମସ୍ତଙ୍କୁ ରକ୍ଷା କରନ୍ତି ।"

ଦୂତମାନେ ପଚାରିଲେ—"ସେହି ଭଗବାନଙ୍କୁ ଆମ୍ଭେ ଇନ୍ଦ୍ରିୟ ମାନଙ୍କ ଦ୍ୱାରା ଦେଖି ପାରୁନାହୁଁ ତେବେ ତାଙ୍କର ଗୁଣ କର୍ମକୁ ଅନ୍ୟ କୌଣସି ସାଧନ ଦ୍ୱାରା ଜାଣିହେବ କି ନାହିଁ ?

ଏହାପରେ ଯମରାଜା କହିଲେ—"ତାଙ୍କ ସମ୍ବନ୍ଧରେ ମୁଁ କୌଣସି ସଠିକ୍ କଥା କହିବାକୁ ସମର୍ଥ ନୁହେଁ । ଋଷି, ଦେବତା,ସିଦ୍ଧ ପୁରୁଷଗଣ, ଯେତେସବୁ ସତ୍ୟସାଧକ ପ୍ରଧାନ ଜ୍ଞାନୀ ପୁରୁଷମାନେ ମଧ୍ୟ ତାଙ୍କ ବିଷୟରେ "ଏଇଟା ଠିକ୍ କଥା" ଏହିକଥା ଦୃଢ଼ତା ସହକାରେ କହିବାକୁ ସମର୍ଥ ନୁହଁନ୍ତି ! ତମୋଗୁଣ ପ୍ରଧାନ ଅସୁର, ରାକ୍ଷସ, ଦୈତ୍ୟଦାନବ, ଗୁହ୍ୟକ ଚାରଣ, ବିଦ୍ୟାଧର ତଥା ମନୁଷ୍ୟ ଆଦି ଏହା କପରି କହି ପାରିବେ ।"

ଯମଦୂତମାନେ କହିଲେ - "ତେବେ ପ୍ରଭୁ ! ଏ ପର୍ଯ୍ୟନ୍ତ ସଂସାରରେ କେହି କ'ଣ ପରମ ଦୁରୁହ ଦୁର୍ଭେଦ୍ୟ ଭାଗବତଧର୍ମକୁ ଜ୍ଞାତ ହୋଇ ନାହାନ୍ତି ? ଯଦି କେହି ତାଙ୍କୁ ଜାଣି ନାହାନ୍ତି ତେବେ ତାଙ୍କ ସମ୍ବନ୍ଧରେ କ'ଣ କହି ପାରିବେ ଓ କପରି ପ୍ରଚାର କରିପାରିବେ ?"

ଯମରାଜ ଦୃଢ଼ତା ସହକାରେ କହିଲେ—"କାହିଁକି ? କାହିଁକି ଜଣାନାହିଁ । ପୂର୍ଣ୍ଣଭାବରେ ନହେଉ ହେଲେ ଏହି ଧର୍ମ ଜାଣିଥିବା କେତେକ ଲୋକ ଅଛନ୍ତି ।

ବାର.ଜଣଙ୍କର ନାମ ମୁଁ ଜାଣିଛି, ଏହି ଧର୍ମକୁ ଜାଣିଥିବା ଲୋକ ପରମ ଭାଗବତ ପବିତ୍ର ବୈଷ୍ଣବ ।"

ଯମଦୂତ ପଚାରିଲେ—"ମହାରାଜ ! ଯଦି ଏହା ଶୁଣିବା ନିମନ୍ତେ କୌଣସି ଗୋପନୀୟତା ନାହିଁ ଓ ଆମ୍ଭେ ଏହାକୁ ଶୁଣିବା ନିମନ୍ତେ ଅଧିକାରୀ ଅଟୁ ତେବେ ଆମେ ଶୁଣିବାକୁ ଇଚ୍ଛାକରୁ ଯେ, ଭାଗବତଧର୍ମକୁ ଜାଣିଥିବା ସେହି ବ୍ୟକ୍ତିମାନେ କିଏ ? ସେମାନଙ୍କର ନାମ ଆମକୁ କହିପାରିବେ କି ?"

ଯମରାଜ କହିଲେ—"ଶୁଣ ! ଲୋକପିତାମହ ଭଗବାନ ବ୍ରହ୍ମା, ବୀଣାଧାରୀ ଦେବର୍ଷିନାରଦ, ରାମନାମର ପ୍ରଧାନ ଉପାସକ ଶ୍ରୀଶିବ ଉର୍ଦ୍ଧ୍ୱରେତା, ମାୟାପ୍ରପଞ୍ଚ ଠାରୁ ସର୍ବଦା ଦୂରରେ ରହିଥିବା ସନତ୍ କୁମାର, ଜ୍ଞାନାବତାର ଭଗବାନ କପିଲ, ଆଦିରାଜ ଭଗବାନ ସ୍ୱୟଂଭୂମନୁ, ଅଗ୍ରଗଣ୍ୟ ଭକ୍ତ ଅସୁର ବଂଶୋଦ୍ଭବ ଶ୍ରୀପ୍ରହ୍ଲାଦ, ଜୀବନ ମୁକ୍ତ ରାଜର୍ଷି ଜନକ, ବାଳବ୍ରହ୍ମଚାରୀ ଗଙ୍ଗା ପୁତ୍ର ଭରତବଂଶୋଦ୍ଭବ ଶ୍ରୀ ଭୀଷ୍ମପିତାମହ, ଅବଧୂତ ଶିରୋମଣି ପରମହଂସ ବଂଶୋଦ୍ଭବ ଶ୍ରୀ ଶୁକଦେବ, ମହା ପରାକ୍ରମଶାଳୀ ବଳି ରାଜା ଓ ମୋତେ ମିଶାଇ ଏହିପରି ବାରଜଣ ଏହିଧର୍ମକୁ ଭଲଭାବରେ ଜାଣିଛନ୍ତି ।"

ଯମଦୂତ ପଚାରିଲେ—"ତେବେ ପ୍ରଭୁ ! ଆପଣ ମଧ୍ୟ ବୈଷ୍ଣବ ଅଟନ୍ତି ?"

ଯମରାଜା କହିଲେ—"ମୁଁ ବୈଷ୍ଣବ ବୋଲି କେମିତି କହିବି ଭାଇ ! ଶ୍ରୀବିଷ୍ଣୁ ଭଗବାନ ମୋର ଆରାଧ୍ୟ ଦେବତା, ଲୋକେ ମୋତେ ସେଥିପାଇଁ ବୈଷ୍ଣବ ବୈଷ୍ଣବ ବୋଲି କହନ୍ତି ।"

ଯମଦୂତ କହିଲେ—"ପ୍ରଭୁ ! ବୈଷ୍ଣବ ତ କେବେ କାହାକୁ କଷ୍ଟ ପ୍ରଦାନ କରନ୍ତି ନାହିଁ । ଆପଣ ତ ପ୍ରାଣୀମାନଙ୍କୁ ଯାତନା କଷ୍ଟ ଦେଉଛନ୍ତି, ପୁଣି ଆପଣ ଯଦି ବୈଷ୍ଣବ ତେବେ ଆପଣଙ୍କର ମୁକ୍ତି କାହିଁକି ହେଉ ନାହିଁ ? ଆପଣ ଏପରି ହିଂସାମୟ ଭିତରେ କାହିଁକି ରହିଛନ୍ତି ?"

ଏହାଶୁଣି ଗମ୍ଭୀର ହୋଇ ଯମରାଜ କହିଲେ—"ଦେଖ ଭାଇ ! ବୈଷ୍ଣବ ନିଜପାଇଁ କିଛି କରେ ନାହିଁ । ସେ ଯାହାକରେ ଭଗବାନଙ୍କ ସେବା ଭାବି କରିଥାଏ । ଭଗବାନ ତାକୁ ଯେଉଁ କାର୍ଯ୍ୟରେ ନିଯୁକ୍ତ କରନ୍ତି, ତାହା ତାଙ୍କର ସେବା ବୋଲି ଭାବି ସେ ସମ୍ପାଦନ କରିଥାଏ । ଏ ସବୁ ମୁକ୍ତିର କଥା । ବୈଷ୍ଣବ ତ ବନ୍ଧା ହୋଇ ରହିନାହିଁ । ଯିଏ ବନ୍ଧାହୋଇଥାଏ ସେତ ମୁକ୍ତି କାମନା କରେ । ଏହି ବିଶ୍ୱବ୍ରହ୍ମାଣ୍ଡ ସେହି ଶ୍ରୀମନ୍ନାରାୟଣଙ୍କ ଲୀଳା ଓ ବିଳାସ । ଭଗବାନ ତାଙ୍କ ଭକ୍ତକୁ ଯେଉଁଠାରେ ରଖିବାକୁ ଚାହାଁନ୍ତି ସେଇଠି ଭକ୍ତ ରହିଥାଏ । ସେହି ଭଗବାନଙ୍କର ଆଜ୍ଞା ପାଳନ କରିବା ପରମ-ଧର୍ମ ବୋଲି ଭକ୍ତ ଜାଣେ ।"

ଯମଦୂତ କହିଲେ—"ଭଗବାନ୍ ! ଆମକୁ ଭାଗବତ ଧର୍ମର ତତ୍ତ୍ୱ ବିଷୟରେ ଯତ୍‌କିଞ୍ଚିତ କହିବା ହୁଅନ୍ତୁ ।"

ଏହାପରେ ଯମରାଜା କହିଲେ –"ଭାଇ ! ଭଗବାନଙ୍କ ନାମ ଉଚ୍ଚାରଣ ଆଦି ସହିତ କରାଯାଇଥିବା ଭକ୍ତି ଯୋଗ ହିଁ ମନୁଷ୍ୟ ପକ୍ଷେ ପ୍ରଧାନ ଧର୍ମ ବୋଲି ବିବେଚିତ । ତୁମମାନଙ୍କୁ ଅଧିକ କିଛି କହିବାର ଆବଶ୍ୟକତା ନାହିଁ । ତୁମେମାନେ ଆଜି ସ୍ୱ ଚକ୍ଷୁରେ ଦେଖିଅଛ ଯେ, କେତେବଡ଼ ମହାପାପୀ ଅଜାମିଳ ଭଗବାନଙ୍କ ନାମ ଉଚ୍ଚାରଣ ଦ୍ୱାରା ମୃତ୍ୟୁଠାରୁ ମୁକ୍ତିଲାଭ କରି ପରମପବିତ୍ର ତଥା ପୂଜନୀୟ ଆସନ ଲାଭ କଲା । ଏଣୁ ପାପକୁ ସମୂଳେ ବିନାଶ କରିବା ନିମନ୍ତେ ଭଗବାନଙ୍କ ଗୁଣ, କର୍ମ ସମ୍ବନ୍ଧୀୟ ନାମକୀର୍ତ୍ତନ କରିବା ବ୍ୟାପକ ସାଧନା ଅଟେ । ଏହାଠାରୁ ବଳି ଆଉ କିଛି ଧର୍ମ ନାହିଁ ଓ ପାପର ପ୍ରାୟଶ୍ଚିତ ନିମନ୍ତେ ଆଉ କୌଣସି ଅବ୍ୟର୍ଥ ଔଷଧ ନାହିଁ । ଏଣୁ ଯେଉଁମାନେ ଭଗବାନଙ୍କ ଧର୍ମରେ ଦୀକ୍ଷିତ ହୁଅନ୍ତି ସେମାନେ ସମସ୍ତେ ଯତ୍ନ ସହକାରେ ଭଗବାନଙ୍କ ନାମକୀର୍ତ୍ତନ କରିବା ଦରକାର । ନାମକୀର୍ତ୍ତନରେ ଯେ ବିଘ୍ନ ଘଟାଏ ସେ ସବୁଠାରୁ ପ୍ରିୟ ହେଲେ ମଧ୍ୟ ତାକୁ ତ୍ୟାଗ କରିବା ଉଚିତ । ଯେଉଁ ସ୍ଥାନରେ ଭଗବାନଙ୍କ ନାମସଂକୀର୍ତ୍ତନ ନିମନ୍ତେ ବାଧା ଉପୁଜେ ତାହା ଯେତେ ସୁବିଧା ସ୍ଥାନ ହେଲେ ମଧ୍ୟ ତାକୁ ପରିତ୍ୟାଗ କରିବା ଉଚିତ । ଯେଉଁ ଲୋକ ନାମସଂକୀର୍ତ୍ତନରେ ସହଯୋଗ କରେ ନାହିଁ ବା ପ୍ରେମୀମାନଙ୍କ ସହ ସମ୍ପର୍କ ରଖିବାପାଇଁ ଇଚ୍ଛା କରେ ନାହିଁ ସେମାନଙ୍କ ସହ ଆଦୌ ସମ୍ପର୍କ ରଖିବା ଉଚିତ ନୁହେଁ । ନାମ ହିଁ କର୍ତ୍ତବ୍ୟ, ନାମ ହିଁ ଜୀବନର ଆଧାର, କୃଷ୍ଣକୀର୍ତ୍ତନ ପ୍ରଧାନ ଆହାର, ନାମ ସଂକୀର୍ତ୍ତନ ଭକ୍ତର ସର୍ବସ୍ୱ ଅଟେ । ଭଗବାନଙ୍କୁ ଛାଡ଼ି ଶବ୍ଦ ଉଚ୍ଚାରଣ କରିବା ଉଚିତ ନୁହେଁ । ଏହାହିଁ ଭାଗବତଧର୍ମ । ଭଗବାନଙ୍କ ନାମକୀର୍ତ୍ତନ ଓ ତାଙ୍କର ସରସ ମଧୁମୟ କଥାମୃତ ପ୍ରତ୍ୟହ ନିୟମ ଅନୁସାରେ ଶ୍ରବଣ କରିବା ଉଚିତ । ତାଙ୍କୁ ନିଜର ସମସ୍ତ ଅର୍ପଣ କରିବା ପରମ ଧର୍ମ ଅଟେ । ଏ ସବୁ ପ୍ରାଣୀ ମାତ୍ରଙ୍କେ କରିବା ପ୍ରଧାନ କର୍ତ୍ତବ୍ୟ ।"

ଏହାପରେ ଯମଦୂତମାନେ କହିଲେ—"ମହାରାଜ ! ଯଦିଓ ଭଗବାନଙ୍କ ନାମର ଏତେ ବଡ଼ ମାହାତ୍ମ୍ୟ ରହିଛି, ତେବେ ବଡ଼ ବଡ଼ ଋଷି ମହର୍ଷି ସଂକୀର୍ତ୍ତନକୁ ସେତେ ପରିମାଣରେ ଆଦର ନ କରି ବଡ଼ ବଡ଼ ଯାଗ ଯଜ୍ଞ କାହିଁକି କରୁଛନ୍ତି ?"

ଯମରାଜ ଉଦାସୀନ ଭାବରେ କହିଲେ—"ଭାଇ ! ଏସବୁ ଖୁବ୍ ବଡ଼ ଗହନ କଥା । ଏ ବିଷୟରେ ମୁଁ କ'ଣ କହିବି ! ଏତିକି କହିପାରେ ଏହି ପ୍ରାୟଶ୍ଚିତ ବିଧାନ କରୁଥିବା ମହାଜନମାନଙ୍କ ବୁଦ୍ଧି ଭଗବାନଙ୍କ ଦୁରୂହ ମାୟାରେ ମୋହିତ ହୋଇଥାଏ । ଆହୁରି ମଧ୍ୟ ଏହା ସମ୍ଭବ ଯେ, ଭଗବାନଙ୍କ ନାମସଂକୀର୍ତ୍ତନର ଏତେ ବଡ଼ ମାହାତ୍ମ୍ୟ ସହିତ ସେମାନେ ପରିଚିତ ନୁହଁନ୍ତି । ଏଣୁ ସେମାନେ ସ୍ୱର୍ଗାଦି ଅନିତ୍ୟ

ଫଳକୁ ଖୁବ୍ ରମଣୀୟ ବେଦ ବାକ୍ୟରେ ଲେଖି ଭଗବାନଙ୍କ ନାମ ସଂକୀର୍ତ୍ତନକୁ ଲୋକେ ତ୍ୟାଗକରି ବଡ଼ ବଡ଼ ଯାଗ ଯଜ୍ଞାଦି କଷ୍ଟଦାୟକ କାର୍ଯରେ ମନ ବଳାଇଥାଆନ୍ତି । ଏଣୁକରି ମୁଁ କହୁଛି ଯେ ଭଗବାନଙ୍କ ନାମସଂକୀର୍ତ୍ତନ ବ୍ୟତୀତ ଭଗବାନପ୍ରାପ୍ତିର ଆଉ କୌଣସି ସୁଗମ ସହଜ ପନ୍ଥାନାହିଁ ।

ଭଗବାନଙ୍କ ନାମ ସଂକୀର୍ତ୍ତନର ସବୁ ଯୁଗରେ ସମାନ ମାହାତ୍ମ୍ୟ ରହିଅଛି କିନ୍ତୁ କଳିଯୁଗରେ ଏପରି ଅନ୍ୟ କୌଣସି ସୁବିଧା ସାଧନ ନାହିଁ । ଏଣୁ ଯେଉଁମାନେ ଭଗବାନଙ୍କ ନାମକୀର୍ତ୍ତନ କରୁଛନ୍ତି ସେମାନେ ସମସ୍ତେ ମୋ ଶାସନର ବାହାରେ । ସେମାନେ ମୋର ପ୍ରଭୁଙ୍କର ସମ୍ପର୍କୀୟ ଅଟନ୍ତି । ସେମାନଙ୍କ ପାଖକୁ ତୁମେ କେବେ-ହେଲେ ଭୁଲରେ ଯିବା ମଧ୍ୟ ଉଚିତ ନୁହେଁ ।”

ଯମଦୂତମାନେ କହିଲେ “ପ୍ରଭୁ ! ଏହା ତ ବଡ଼ ଗଣ୍ଡଗୋଳିଆ କଥା । ଆମକୁ ଆପଣ ଏକ ତାଲିକା କରିଦିଅନ୍ତୁ କାହାପାଖକୁ ଆମେ ଯିବୁ ଓ କାହା ପାଖକୁ ଯିବୁନାହିଁ । କାହାକୁ ବାନ୍ଧିକରି ଆଣିଆସିବୁ ଆଉ କାହାକୁ ଦୂରରୁ ପ୍ରଣାମ କରି ଚାଲି ଆସିବୁ ।” କାହିଁକି ନା ଏପରି ଏକ ତାଲିକା ପାଖରେ ନ ରହିଲେ ଆମପ୍ରତି ବିପଦ ହେବ, ବିନା-ଦୋଷରେ ଆମେ ମଧ୍ୟ ମାଡ଼ ଖାଇଯିବୁ ।”

— ଛପ୍ପୟ —

ଗୁହ୍ୟ ଭାଗବତ ଧର୍ମ ଦେବତା ସିଦ୍ଧ ନ ଜାନେଂ ।
ଫିର ନର ଦାନବ ଦୈତ୍ୟ ତାହି କୈସେ ପହିଚାନେଂ ॥

ଅଜ ଶିବ ନାରଦ କପିଲ ଜନକ ମନୁ ବଲି ଶୁକ ଜ୍ଞାନୀ ।
ଭୀଷ୍ମହୁ ସନତ କୁମାର, ଧର୍ମ ପ୍ରହ୍ଲାଦ ଅମାନୀ ॥

ଜାନି ଭାଗବତ ଧର୍ମକୂଁ, ପରମ ଭାଗବତ ସ୍ୱୈ ଭୟେ ।
ଅନ୍ୟ ଭକ୍ତ ହୁଁ ଭକ୍ତିତେଂ, ନାମ ଲିୟେ ହରିପୁର ଗୟେ ॥



# ଯମଦୂତ କାହାପାଖକୁ ଯିବେ କାହା ପାଖକୁ ଯିବେ ନାହିଁ

ଜିହ୍ଵା ନ ବକ୍ତି ଭଗବଦ୍‌ଗୁଣନାମଧେୟମ୍ ।
ଚେତଶ୍ଚ ନ ସ୍ମରତି ତଚ୍ଚରଣାରବିନ୍ଦମ୍ ॥
କୃଷ୍ଣାୟ ନୋ ନମତି ଯଚ୍ଛିର ଏକଦାପି ।
ତାନାନୟଧ୍ଵମସତୋଽକୃତବିଷ୍ଣୁକୃତ୍ୟାନ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୩ୟ ଅଧ୍ୟାୟ ॥ ୨୮-ଶ୍ଳୋକ ]

ଛପ୍‌ପୟ

ଦୂତ କହେ ଅବ ନାଥ ! ନିୟମ ହମକୁଁ ବତଲାୱେଂ ।
ଜାଇଁ ନ କିନକେ ପାସ, ପକରି କିନକୁଁ ହମ ଲାୱେଂ ॥
ଧର୍ମରାଜ ତବ କହେଂ, ନାମ ହରି କେ ନ ଉଚ୍ଚରେଂ ।
ଚିତ ମେଂ କବହୁଁ ଚରନ କମଲ ହରିକେ ନହିଁ ଧାରେ ॥
ନହୀଂ ନୱେଂ ସିର କୃଷ୍ଣକୂଁ, ହରି ଚର୍ଯ୍ୟାତେଂ କେ ବିମୁଖ ।
ଲାଓ ତିନକୁଁ ପକରିକେଂ, ଆଇ ଉଠାୱେଂ ନରକ ଦୁଖ ॥

ଯେଉଁଠାରେ ଆଲୋକ ପହଞ୍ଚିପାରେ ନାହିଁ ସେଠାରେ ଅନ୍ଧକାର ଘୋର ରହେ । ଯେତେ ଗମ୍ଭୀର ଅନ୍ଧକାର ରାତ୍ରି ହେଉ, ଯେତେ ବଡ଼ ଅନ୍ଧକାର ଗୃହ ହେଉ ସେଠାରେ ଆଲୋକ ପ୍ରବେଶ କଲେ ଯାଇ ତାହା ଉଜ୍ଜ୍ଵଳମୟ ହୁଏ । ହାତରେ ଦୀପଧରି ଘରର କୋଣଅନ୍ଧେ ବୁଲିଆସିଲେ ଘରର କେଉଁଠାରେ ହେଲେ ଅନ୍ଧକାର ରହିବ ନାହିଁ । ସେହିପରି ମନୁଷ୍ୟ ଦେହରେ ପାପ ପୂରି ରହିଥାଏ । (ଭଗବାନଙ୍କ ନାମ ଗାୟନ କରି ନଥିବା) । ଯେତେବେଳେ ଭଗବାନଙ୍କ ନାମ କାନଦ୍ଵାରା ହୃଦୟରେ ପ୍ରବେଶ କରେ, ଜିଭ ଦ୍ଵାରା ଉଚ୍ଚାରିତ ହୁଏ ସେତେବେଳେ ପାପ ତା ଦେହରୁ ଦୂରନ୍ତ

ଶୁଦ୍ଧ ହୁଏଯାଏ । ନାରାୟଣ ନାମ ସର୍ବଦା ଜପିବା ଫଳରେ ପାପ ଦୂରେଇଯାଏ, ଏହା ବଡ଼ ଆଶ୍ଚର୍ଯ୍ୟର କଥା । ଯେଉଁମାନେ ଭଲ ଭାବରେ ନାମ ଉପରେ ଆଶ୍ରୟ ଗ୍ରହଣ କରନ୍ତି, ସେମାନଙ୍କ ଦ୍ୱାରା ପାପ ସାଧିତ ହୁଏ ନାହିଁ, ଯଦି କେବେ ଭୁଲରେ ପାପ ହୋଇଯାଏ ତତ୍‌କ୍ଷଣାତ ତାହା ନାମ ଉଚ୍ଚାରଣ ଦ୍ୱାରା ନଷ୍ଟହୋଇ ଯାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଯେତେବେଳେ ଯମରାଜା ତାଙ୍କର ଦୂତମାନଙ୍କୁ ନାରାୟଣ ନାମର ମାହାତ୍ମ୍ୟ ବୁଝାଇଲେ ସେତେବେଳେ ଦୂତମାନେ କହିଲେ, "ପ୍ରଭୁ ! ଯଦି ଭଗବାନ ନାମର ଏପରି ମାହାତ୍ମ୍ୟ ରହିଛି ତେବେ ଲୋକେ ଭଗବାନଙ୍କ ନାମ କାହିଁକି ନେଉ ନାହାନ୍ତି ? ସେମାନେ ଦୁଃଖ କାହିଁକି ଭୋଗ-କରୁଛନ୍ତି ?"

ଏହାପରେ ଅତ୍ୟନ୍ତ ଦୁଃଖର ସହ ଯମରାଜ କହିଲେ—ଭାଇ ! ମୁଁ ଏହି ବିଷୟରେ କ'ଣ କହିବି ? ଏତିକି ମାତ୍ର କହିପାରେ ଏହା ଜୀବମାନଙ୍କର ଦୁର୍ଭାଗ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ । ନଚେତ୍ ଭଗବାନଙ୍କର ଯେତେ ସବୁ ନାମ ଅଛି ସେଗୁଡ଼ିକ କେତେ ସରଳ ନାମ ରହିଛି ଯଥା—ରାମ, କୃଷ୍ଣ, ହରି, ଗୋବିନ୍ଦ, ମଧୁସୂଦନ, ମୁରାରି, ମାଧବ, ମୋହନ, ରଘୁନନ୍ଦନ, ଯଦୁନନ୍ଦନ, ଶ୍ୟାମସୁନ୍ଦର, ଏକରୁ ଆରେକ ମନୋହର । ଜିହ୍ୱା ସେମାନଙ୍କ ନିକଟରେ ଅଛି କେଉଁଠୁ ମାଗି ଆଣିବାକୁ ମଧ୍ୟ ପଡ଼ିବ ନାହିଁ । ନାମ ନେବା ପାଇଁ ଦେଶ, କାଳ, ପାତ୍ର କୌଣସି ପ୍ରକାର ନିୟମ ନାହିଁ । ସଦା ସର୍ବଦା, ସର୍ବତ୍ର ସବୁ ଅବସ୍ଥାରେ ଭଗବାନଙ୍କ ନାମ ଉଚ୍ଚାରଣ କରାଯାଇ ପାରେ । ଏତେ ସବୁ ସୁବିଧା ଥାଇ ମଧ୍ୟ ଲୋକେ ଭଗବାନଙ୍କ ନାମ ନନେଇ ନରକର ଜ୍ୱାଳାରେ ପଡ଼ି ଛଟପଟ ହେଉଛନ୍ତି । ଯେଉଁ ବ୍ୟକ୍ତି ଅନନ୍ତ ଭଗବାନଙ୍କ ନାମ ନିଏ ସେ ମୋର ଦଣ୍ଡ ପାଇବା ପାଇଁ ହକଦାର ନୁହେଁ । ଯିଏ ଭଗବାନଙ୍କ ଶରଣାଗତ, ସାଧୁଜନ, ଏହି-ଭଳି ସାଧୁପୁରୁଷମାନଙ୍କର ପବିତ୍ର ଚରିତ୍ର ଦେବତାମାନେ ମଧ୍ୟ ଗାନ କରନ୍ତି । ଏମାନଙ୍କ ଜୀବନ କାହାଣୀକୁ ସ୍ୱର୍ଗରେ ଥିବା ଦେବତାମାନେ ସଦା ସର୍ବଦା ପ୍ରଶଂସା କରନ୍ତି । ଏଭଳି ଭକ୍ତମାନଙ୍କୁ ସଦା ସର୍ବଦା ଶ୍ରୀହରି ତାଙ୍କ ଗଦାଦ୍ୱାରା ରକ୍ଷାକରନ୍ତି । ଏମାନଙ୍କୁ କେବେ କୌଣସି କଷ୍ଟ ହୁଏ ନାହିଁ । ସେମାନଙ୍କର ରକ୍ଷାପାଇଁ ଭଗବାନ ସଦା ସର୍ବଦା ତାଙ୍କ ପାର୍ଷଦମାନଙ୍କୁ ଆକାଶମଣ୍ଡଳରେ ଗୁପ୍ତ ଭାବରେ ବିଚରଣ କରିବା ନିମନ୍ତେ ଆଦେଶ ପ୍ରଦାନ କରିଛନ୍ତି । ଏଣୁ ଏହି ଭଗବାନଙ୍କ ଭକ୍ତମାନଙ୍କ ପାଖକୁ ଭୁଲରେ ସୁଦ୍ଧା ତୁମେମାନେ ଯିବା ଉଚିତ ନୁହେଁ । ସେମାନଙ୍କ ପାଖକୁ ଗଲେ ତୁମେ ଏହିଭଳି ହଇରାଣ ହେବ, ଏଥିରେ ସନ୍ଦେହ ନାହିଁ ।

ଏସବୁ କଥା ଶୁଣି ଯମରାଜାଙ୍କ ଦୂତମାନେ ବ୍ୟତିବ୍ୟସ୍ତ ହୋଇ ଭୟରେ କହିଲେ—"ମହାରାଜ ! ଏବେ ଆମେ କାନ ଧରୁଛୁ । ଆପଣ କହିଛନ୍ତି ଯେ, ଆପଣ ସମସ୍ତଙ୍କର ସ୍ୱାମୀ ନୁହଁନ୍ତି, ତେବେ କହନ୍ତୁ ଆପଣ କାହାର ସ୍ୱାମୀ ?"

ଶ୍ରୀ ଶୁକଦେବ କହିଲେ "ରାଜନ ! ତୁମେ ସବୁ ଠିକ୍ ବୁଝି ପାରୁଥିବ । ମୂର୍ଖମାନଙ୍କର ଏତକ ସ୍ଥାନକାଳ ଜ୍ଞାନ ନଥିଲା । ବିରାଟ ସଭାରେ, ଯେଉଁଠାରେ ସହସ୍ର ଅପରାଧୀ ଦଣ୍ଡ ପାଇବା ନିମନ୍ତେ ଉପସ୍ଥିତ, ଚିତ୍ରଗୁପ୍ତ ବହୁସଂଖ୍ୟକ ଭୃତ୍ୟ ପରିବୃତ ଉପସ୍ଥିତ, ସେହି ସମୟରେ, ସେହି ସ୍ଥାନରେ ଏତେବଡ଼ ଲୋକପାଳଙ୍କୁ ସେମାନେ ଏପରି ପ୍ରଶ୍ନ ପଚାରି ଅପମାନିତ କରୁଥିଲେ । କିନ୍ତୁ ଯମରାଜ ଆଉ କ'ଣ କରନ୍ତେ ସେହି ମୂର୍ଖମାନେ ତ କିଛି ନଜାଣି ନଶୁଣି ଏପରି ସବୁ ପ୍ରଶ୍ନ ପଚାରି ଦେଇ-ଥିଲେ । ଦୂତମାନେ ନିଜ ନିଜ ହାତରେ ପାପୀମାନଙ୍କୁ ଧରି ପାଖକୁ ଆଣି ଆସିଲେ । ସେମାନଙ୍କୁ ହାତରେ ସଙ୍କେତ ଦେଇ ଯମରାଜା ପାଖକୁ ଡାକି କହିଲେ "ଦେଖ ଭାଇ ! ମୁଁ ସମସ୍ତଙ୍କର ପ୍ରଭୁ, କିନ୍ତୁ ଭଗବତ୍ ଭକ୍ତ ବୈଷ୍ଣବମାନଙ୍କର ସ୍ୱାମୀ ନୁହେଁ । ମୁଁ ସେମାନଙ୍କର ଦାସାନୁଦାସ ।"

ଏକଥା ଶୁଣି ଯମଦୂତଗଣ ଚମକି ପଡ଼ି କହିଲେ—"ମହାରାଜ ! ଆପଣ ଆମକୁ ଏକ ତାଲିକା ତିଆରି କରି ଦିଅନ୍ତୁ ଯେଉଁଥିରେ କି ସୂଚୀତ ହୋଇଥିବା ଲୋକଙ୍କୁ ଆଉ ଧରି ଆଣିବୁ ନାହିଁ ।"

ଏକଥା ଶୁଣି ଅତ୍ୟନ୍ତ ଗମ୍ଭୀର ଭାବରେ ଯମରାଜା କହିଲେ—"ଠିକ୍ କଥା, ତୁମେମାନେ ତୁମର ଦୈନନ୍ଦିନ ତଥା ମାସିକ ଲେଖା ବାହାରକରି ଓ ଯାହା ସବୁ କହୁଛି ତାକୁ କମାନ୍ୱୟରେ ଲେଖି ରଖ ।"

ଏକଥା ଶୁଣି ସମସ୍ତେ ନିଜନିଜର ଦୈନନ୍ଦିନ ତଥା ମାସିକ ଟିପାଖାତା ବାହାର କରି ହାତରେ ଲେଖନୀ ଧରି ବସିଗଲେ । ଏମାନେ ସମସ୍ତେ ଅତି ସାବଧାନତା ସହକାରେ ଲେଖିବା ଆଗ୍ରହ ଦେଖି ଧର୍ମରାଜା କହିଲେ—"ଦେଖ ! ମୁଁ ତୁମମାନଙ୍କୁ ବିସ୍ତୃତ ଭାବରେ କିଛି କହିବାକୁ ଚାହୁଁ ନାହିଁ, ସଂକ୍ଷିପ୍ତ ଭାବରେ କହୁଛି । ଏଥିରୁ ତୁମେ ଅନୁମାନକରି ସମସ୍ତ କଥା ବୁଝି ପାରିବ, ଲେଖ, ୧-ଯିଏ ଭଗବଦ୍ଭକ୍ତ, ୨-ଭଗବାନଙ୍କ ନାମ ଗୁଣ କୀର୍ତ୍ତନକରେ, ୩-ଭଗବାନଙ୍କ ଅନୁପମରୂପକୁ ଧ୍ୟାନକରେ, ୪-ଭଗବାନ ଶରଣାଗତ ତଥା ସମଦର୍ଶୀ ସାଧୁ – ଏହିସବୁ ଭଗବଦ୍ଭ ପରାୟଣ ପୁରୁଷମାନଙ୍କ ପାଖକୁ ତୁମେମାନେ କେବେହେଲେ ଭୁଲରେ ଯିବାଯିବା ଉଚିତ ନୁହେଁ ।"

ସମସ୍ତ କଥା ଲେଖିସାରି ସେମାନଙ୍କ ମଧ୍ୟରୁ ଜଣେ ଦୂତ କହିଲା—"ଆଜ୍ଞା ! ଯେଉଁମାନଙ୍କୁ ନଆଣିବା କଥା ସେସବୁ ଆମେ ବୁଝିପାରିଲୁ, କିନ୍ତୁ ଟିକିଏ କଥା ରହିଯାଇଛି । ଏବେ କହନ୍ତୁ ଯେ କାହାକୁ ଆମେ ଧରି ଆଣିବୁ ।"

ଏହାପରେ ଯମରାଜା କହିଲେ—"ଠିକ୍ ଅଛି ଲେଖ, ସେହିଲୋକଙ୍କୁ ବାନ୍ଧି-କରି ବଳ ପୂର୍ବକ ମୋ ପାଖକୁ ଆଣି ଆସିବ, ୧-ଯେଉଁମାନେ ପରମକୋମଳ ଅରୁଣ ଚରଣ କମଳଙ୍କର ମଧୁମୟ ମାଧୁରୀକୁ ପରିତ୍ୟାଗ କରି ସର୍ବଦା ପାନରତ ।

୨-ଯେଉଁମାନେ ନରକ ଦ୍ୱାର ରୂପକ ଘର ପ୍ରତି ମୋହ ମମତା ସହକାରେ ସର୍ବଦା ଆସକ୍ତ, ୩-ଯାହାର ମୁହଁରୁ କେବେ ହେଲେ ଭଗବାନଙ୍କ ସୁମଧୁର ନାମ ତଥା ତାଙ୍କର ତ୍ରୈଲୋକ୍ୟ ପାବନ ଗୁଣ ଗାନ ହୁଏ ନାହିଁ, ୪-ଯେଉଁମାନଙ୍କର ମନ ଚତୁର୍ଭୁଜଙ୍କର ଚାରୁଚରଣ ପ୍ରତି ଧ୍ୟାନ ନଥାଏ, ୫-ଯାହାଙ୍କର ମସ୍ତକ ଥରେ ହେଲେ ଭଗବାନଙ୍କର ଅଚଳ ପୂଜା ବିଗ୍ରହ ପ୍ରତି ଏବଂ ଚଳନ୍ତି ପ୍ରତିମା ଭକ୍ତରୂପୀ ବିଗ୍ରହ ପ୍ରତି ଥରେ ମାତ୍ର ନତ ହୁଏ ନାହିଁ, ୬-ଯେଉଁମାନେ ହାତରେ ଭଗବାନଙ୍କ ପୂଜା ନିମନ୍ତେ ପୁଷ୍ପ ଆଣିବା, ମାଳା ତିଆର କରିବା, ନୈବେଦ୍ୟ ପଦାର୍ଥ ଯୋଗାଇବା, ମନ୍ଦିରରେ ଝାଡୁକରିବା, ଧୋଇବା, ଲିପିବା, ଭଗବାନଙ୍କ ପାର୍ଷଦଙ୍କୁ ମାଲିସ୍ କରିବା, ପୂଜା ସାମଗ୍ରୀ ଯୋଗାଇବା ଆଦି କାର୍ଯ୍ୟ କରନ୍ତି ନାହିଁ — ଏ ସମସ୍ତଙ୍କୁ ତୁମେ ନିର୍ଭୟରେ ବାନ୍ଧିକରି ମୋ ପାଖକୁ ନେଇ ଆସିବାରେ କୌଣସି ଅସୁବିଧା ନାହିଁ ।

ଏସବୁ ଶୁଣି ଯମଦୂତମାନେ କହିଲେ—"ତେବେ ମହାରାଜ ! ଆମର ଏକ ବଡ଼ ଅପରାଧ ହୋଇଗଲା । ଏବେ ତାର ପ୍ରାୟଶ୍ଚିତ୍ତ କିପରି କରାଯିବ ?"

ଯମରାଜ କହିଲେ —"ଦେଖ ଭାଇ ! ସେବକମାନଙ୍କର ବାରପଣିଆ, କାପୁରୁଷ, ସାଧୁତା, ଦୁଷ୍ଟତା ଆଦି ଉତ୍ତର ଦାୟିତ୍ୱ ସ୍ୱାମୀଙ୍କ ଉପରେ ନ୍ୟସ୍ତ । ଏଣୁ ତୁମେସବୁ ଯାଇ, ହାତଗୋଡ଼ ଧୋଇ ହୋଇ ଜଳପାନକର, ମୁଁ ତୁମମାନଙ୍କର ଅପରାଧ ନିମନ୍ତେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି ।"

ନିଜର ପ୍ରଭୁଙ୍କ ଆଦେଶରେ ଯମଦୂତମାନେ ପ୍ରଣାମକରି ପ୍ରଫୁଲ୍ଲ ଚିତ୍ତରେ ନିଜ ନିଜର ସ୍ଥାନକୁ ଚାଲିଗଲେ । ସେମାନେ ଧର୍ମରାଜ ମୁହଁରୁ ନାମ ମାହାତ୍ମ୍ୟ ଶୁଣି ଭାରି ଖୁସି ହୋଇ ଯାଇଥିଲେ । ଭଗବାନଙ୍କ ନାମର ଏତେ ବଡ଼ ମହିମା ଏ ସବୁ କଥା ଚିନ୍ତାକରି ସେମାନଙ୍କୁ ଖୁବ୍ ଆଶ୍ଚର୍ଯ୍ୟ ଲାଗିଲା । ସେହିଦିନ ଠାରୁ ସେମାନେ ଭାରି ସତର୍କରେ ରହିଲେ । ଯାହାକୁ ସବୁ ଧରି ଆଣୁଥିଲେ ସେମାନଙ୍କୁ ବଡ଼ ସାବଧାନତା ସହକାରେ ନିରୀକ୍ଷଣ କରୁଥିଲେ, ସେମାନଙ୍କ ଦେହରେ କୌଣସି ବୈଷ୍ଣବର ଚିହ୍ନ ଅଛି କି ନାହିଁ । ଯାହାକୁ ସେମାନେ ଜାଣୁଥିଲେ ଯେ ଏ ହେଉଛି ଭଗବାନଙ୍କ ଆଶ୍ରୟ ଗ୍ରହଣକାରୀ ପୁରୁଷ; ତା ପାଖକୁ ଭୁଲରେ ସୁଦ୍ଧା ଯାଉନଥିଲେ । ସେମାନଙ୍କୁ ଦୂରରୁ ପ୍ରଣାମ କରି ଦୌଡ଼ି ଚାଲି ଆସୁଥିଲେ ।

ନିଜର ଦୂତମାନେ ଚାଲିଯିବା ପରେ ଯମରାଜ ହାତ ଯୋଡ଼ି ଗଦ୍ ଗଦ୍ କଣ୍ଠରେ ଭଗବାନଙ୍କୁ ପ୍ରାର୍ଥନା କଲେ । ଦୂତମାନଙ୍କର ଭୁଲକୁ ସ୍ମରଣ କରି ସେ ଯୋଡ଼ହସ୍ତ ହୋଇ କହିଲେ ହେ ପୁରାଣ ପୁରୁଷ ! ହେ ନାରାୟଣ ! ହେ ପ୍ରଭୋ ! ମୋର

ଭୃତ୍ୟମାନଙ୍କ ଦ୍ୱାରା ଯେଉଁ ଅପରାଧ ହୋଇଛି ସେ ସବୁ ଆପଣ ଦୟାଳୁ ଗୁଣ ଦ୍ୱାରା କ୍ଷମା କରି ଦିଅନ୍ତୁ । ହେ ଦୀନବନ୍ଧୋ ! ଆମେ ସବୁ ଆପଣଙ୍କର ସେବକ, ଆପଣଙ୍କ ସେବା ନିମନ୍ତେ କରଯୋଡ଼ି ବିଦ୍ୟମାନ । ଆପଣ ଆପଣଙ୍କର ଅଜ୍ଞାନ ଅନୁଚର-ମାନଙ୍କର ଅପରାଧ ପ୍ରତି ଆଦୌ ଦୃଷ୍ଟି ପ୍ରଦାନ କରନ୍ତୁ ନାହିଁ । ଆପଣଙ୍କର ପାଦ-ପଦ୍ମରେ ଆମର ବାରମ୍ବାର ନମସ୍କାର ।"

ଶ୍ରୀ ଶୁକଦେବ କହିଲେ—"ରାଜନ ! ଏବେ ଆପଣ ନିଶ୍ଚୟ ବୁଝିପାରିଥିବେ, ଭଗବାନଙ୍କ ନାମର କେତେ ଗୁରୁତ୍ୱପୂର୍ଣ୍ଣ ମାହାତ୍ମ୍ୟ ରହିଛି । ସଂସାରରେ ନାମସଂକୀର୍ତ୍ତନ-ଠାରୁ ଅଧିକ କୌଣସି ସୁନ୍ଦର ସୁଗମ ସରଳ ସାଧନ ଆଉ ନାହିଁ ।"

—ଛପ୍ପୟ—

ନାମ ଗାନ ସମ ଜଗତ ମାଁହିଁ ସାଧନ ନାହିଁ ଦୂଜୋ ।
କରେ ଯଜ୍ଞ ବ୍ରତ ଦାନ ଭଲେ ପ୍ରେତନକୁଁ ପୂଜୋ ॥
ନାମ ଉଚାରତ ତୁରତ ମଳିନତା ମନ କୀ ଜାଓଁ ।
ମାୟା ମୋହ ନସାୟ ପ୍ରେମ ପ୍ରଭୁ କୋ ହିୟ ଆଓଁ ॥
ନାମ କୀରତନ ଜେ କରେଂ, ଜାଉ ନ ତିନକେ ସଁଗ କବହୁଁ ।
ପହିଲେ ପାପୀ ରହେ ଓ୍ୱେଂ, ଆଓ୍ୱେଂ ମମ ଗୃହ ନହିଁ ତବହୁଁ ॥



# ଭଗବାନଙ୍କ ନାମର ମାହାତ୍ମ୍ୟ

ଶୃଣ୍ୱତାଂ ଗୃଣତାଂ ବୀର୍ଯ୍ୟାଣ୍ୟୁଦ୍ଧାମାନି ହରେର୍ମୁହୁଃ ।
ଯଥା ସୁଜାତୟା ଭକ୍ତ୍ୟା ଶୁଦ୍ଧ୍ୟେ ନ୍ନାତ୍ମା ବ୍ରତାଦିଭିଃ ।।

[ ଶ୍ରୀ ଭାଗବତ ।। ୬ଷ୍ଠ ସ୍କନ୍ଦ ।। ୩ୟ ଅଧ୍ୟାୟ ।। ୩୨ ଶ୍ଳୋକ ]

—ଛପ୍ପୟ—

କୃଷ୍ଣ କୀର୍ତ୍ତନ ଗୁଣ ଗୌରବ ଜେ ଗାନ କରହିଁ ନର ।
ତେଉ କବହୁଁ ନହିଁ ଭୁଲି ନିହାରେଂ ନୀରସ ମମ ଘର ।।
ସବ ପାପନ କୋ ଏକ ପ୍ରାଇଶଚିତ ମୁନିନ ବଖାନୋଂ ।
ହୋୟଁ ନାମ କେ ରସିକ ଉନ୍ହେ ମେରେ ଗୁରୁ ମାନୋଂ ।।
ଯମ ଆଜ୍ଞା ଦୂତନ ସୁନୀ, ଶିରୋଧାର୍ଯ୍ୟ ସବନେ କରୀ ।
ହରି କୀର୍ତ୍ତନ କରିକେ ଚଲେ, ସବ ମିଲି ବୋଲେ ଜୟ ହରୀ ।।

ଯେଉଁ ବିଷୟ ଆମେ ଜାଣିନାହୁଁ ସେଥିପ୍ରତି ଆମେ ଆକୃଷ୍ଟ ହେଉନାହୁଁ, ଆକୃଷ୍ଟ ନହେବା ଫଳରେ ସେଥିପ୍ରତି ପ୍ରୀତିଭାବ ଜାଗ୍ରତ ହୁଏ ନାହିଁ । ଏଣୁ ଶ୍ରବଣକୁ ଆଦିଭକ୍ତି ବୋଲି କୁହାଯାଏ । ଭଗବାନଙ୍କର ନାମ ମାହାତ୍ମ୍ୟ ଶୁଣିବା ଫଳରେ ନାମରୁ ଭକ୍ତି ଜାତହୁଏ । କେତେକ ଭାଗ୍ୟବାନ ସହଜ ସ୍ୱଭାବର ବ୍ୟକ୍ତି ଅଛନ୍ତି ସେମାନେ ଜନ୍ମ ଜନ୍ମାନ୍ତର ଭକ୍ତି ଭାବରେ ପରିଚିତ । କେତେକ ମଧ୍ୟ ଅଛନ୍ତି ଶୁଣି ଶୁଣି ସେମାନଙ୍କର ନାମ ଗୁଣ କୀର୍ତ୍ତନରେ ଅନୁରାଗ ଆସିଥାଏ ।

ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ କହିଲେ "ରାଜନ ! ଯେତେବେଳେ ଜୀବ ମାୟା ଗୁଣରେ ଆବଦ୍ଧ ହୋଇ ଅନିତ୍ୟକୁ ନିତ୍ୟ ଓ ଅସତ୍ୟକୁ ସତ୍ୟ ଭାବରେ ବିବେଚିତ-କରେ ସେତେବେଳେ ସେ ପାପ ଅର୍ଜନ କରେ । ଯେ ଶ୍ରୀକୃଷ୍ଣଙ୍କ ଚରଣାରବିନ୍ଦ ରସକୁ ରୂପକରି ଥରେ ଜିହ୍ୱାରେ ରଖିଦେଲେ ସେତେବେଳେ ତାର ପାପୋତ୍ପାଦକ ମାୟାଗୁଣ ଅତି ତୁଚ୍ଛରେ ପରିଣତ ହୋଇପଡ଼େ । ନାମପ୍ରେମୀ ଭଗବାନଙ୍କ ଭକ୍ତର ଆଉ ପାପ ହୁଏନାହିଁ, ପୂର୍ବରୁ କରିଥିବା ପାପ ନାମର ପ୍ରଭାବରେ ଭସ୍ମୀଭୂତ ହୋଇଯାଏ ।

ଭଗବାନଙ୍କ ନାମରେ ପ୍ରେମ ନାହିଁ, ଏହା କେତେକ ଦୁର୍ବଳମନା ଲୋକେ ଚନ୍ଦ୍ରାୟଣ ନିଜର ପାପ ଓ ଦୋଷର ମାର୍ଜନା ନିମନ୍ତେ ଚାନ୍ଦ୍ରାୟଣ ଆଦି କେତେକ ବ୍ରତ ରୂପକ କର୍ମରେ ପ୍ରବୃତ୍ତ ହୁଅନ୍ତି । ଏହା କରିବା ଦ୍ୱାରା ସେମାନଙ୍କର ସେହି ପାପ ନଷ୍ଟ ହୋଇଯାଏ । କିନ୍ତୁ ବାସନା ଜାଗ୍ରତ ହୋଇ ସେମାନଙ୍କ ଦ୍ୱାରା ପୁନର୍ବାର ପାପ ଓ ଦୋଷ ଉତ୍ପତ୍ତି ହୋଇଥାଏ । ଏଣୁ ଏପରି ଏକ ଚେଷ୍ଟା କରିବା ଉଚିତ ଯେପରି କି ମରିବା ସମୟରେ ମୁହଁରୁ ଭଗବାନଙ୍କ ନାମ ବାହାରିବ ।"

ଏହାପରେ ଶୌନକ ପଚାରିଲେ— "ମହାରାଜ ! ଏ କଥା ତ ଠିକ୍, କିନ୍ତୁ ମୃତ୍ୟୁର ସମୟ ଠିକ୍ ନାହିଁ ଯେ ମଣିଷ ଏହି ସମୟରେ ମରିବ । ଏହି ଯେଉଁ ପ୍ରତ୍ୟେକ ସମୟରେ ହିକ୍କା ଆସୁଛି ତାର ବି କୌଣସି ଠିକଣା ନାହିଁ । ପ୍ରତ୍ୟେକ ହିକ୍କା ପରେ ମରିବା ସନ୍ଦେହଜନକ । ଆମେ ଗୋଟିଏ ହିକ୍କା ପରେ ମରିଯିବା ବୋଲି ଭାବୁଛେ । ହିକ୍କା ବେଳେ ବେଳେ ପୁଣି ଲେଉଟି ଆସି ପ୍ରଶ୍ୱାସ ଫେରିଆସେ, ବୁଝିନିଅନ୍ତୁ ଏହି ସମୟରେ ଜୀବନ ଲେଉଟି ଆସିଲା । ହିକ୍କା ସହ ପ୍ରାଣ ଛାଡ଼ିଯିବା କିଛି ଗୋଟିଏ ଆଶ୍ଚର୍ଯ୍ୟର କଥା ନୁହେଁ । ଏଣୁ ପ୍ରତ୍ୟେକ ହିକ୍କା ପରେ ମରିବା ପାଇଁ ଉଦ୍ୟତ ହୋଇ ରାମନାମ ଧରିବାକୁ ହେବ ।

"ମରିବା ସମୟରେ ନାମ ଉଚ୍ଚାରଣ କଥା ଯଦି ଏହା ପ୍ରଥମରୁ ଅଭ୍ୟାସ ନଥିବ ତେବେ ମରିବା ସମୟରେ ନାମ କିପରି ଉଚ୍ଚାରଣ ହେବ । ଝିଅ ଯେତେବେଳେ ବାହାହୋଇ ଶ୍ୱଶୁର ଘରକୁ ବୋହୂ ହୋଇଯାଏ, ସେ ପହଞ୍ଚିବାରେ ଦଶ କୋଡ଼ିଏ ଜଣ ସ୍ତ୍ରୀଲୋକ ଏକାଠି ହୋଇ ଦେଖିବାକୁ ଆସନ୍ତି, ଯେ ନୂଆବୋହୂ କେମିତି ଖାଇବା ପିଇବା ତିଆରି କରୁଛି । ତାର ରନ୍ଧା ଭଲ ହେଲେ ଶାଶୁ, ନଣନ୍ଦ, ଦିଅର ସମସ୍ତେ କହନ୍ତି ବୋହୂ ସାକ୍ଷାତ୍ ଲକ୍ଷ୍ମୀ, କେମିତି ସୁନ୍ଦର ଭୋଜନ ରାନ୍ଧିଛି । ଏହି ସବୁ ସୁନ୍ଦର ପ୍ରକାରର ଭୋଜନ ତ ସେ ଶ୍ୱଶୁର ଘରକୁ ଆସିଲା ପରେ ଶିଖି ନାହିଁ । ନିଜ ବାପ ଘରେ ସେ ଯେତେବେଳେ ଛୋଟପିଲା ଥିଲା, ସେତେବେଳୁ ତା ମା ତାକୁ ଶିଖାଇଥିଲା । ଡାଲି ଏମିତି ବଘାରି ଯିବ, ଶାଗ ଏମିତି ଭଜା ହେବ, ରାଇରେ ଏତିକି ବେସର ଦିଆଯିବ, ପକୁଡ଼ି ଏମିତି ତିଆରି ହେବ, ଏହିପରି ସେ ପିଲାଦିନରୁ ଶିଖି ଶିଖି ସେ ଯେତେବେଳେ ଶ୍ୱଶୁର ଘରେ ଯାଇ ପହଞ୍ଚେ ସେଠାରେ ଭଲ ଖାଦ୍ୟପଦାର୍ଥ ତିଆରି କରିବା ଦ୍ୱାରା ତାର ଶ୍ରମ ସଫଳ ହୋଇଥାଏ ।"

"ଜଣେ ଛାତ୍ର ସେ ଜାଣିଛି ଯେ ପ୍ରଶ୍ନପତ୍ରର ଉତ୍ତର ତାକୁ ପରୀକ୍ଷାରେ ଲେଖିବାକୁ ପଡ଼ିବ ଓ ସେହିଦିନ ଲେଖାରେ ସେ ଉତ୍ତୀର୍ଣ୍ଣ ଲାଭକରେ । ତେବେ ରାତ୍ରି ଦିନ ପରିଶ୍ରମ କରିବା ତାର କ'ଣ ଆବଶ୍ୟକତା ରହିଛି, ଏପରି ଚିନ୍ତା କରୁଥିବା ଛାତ୍ର କେବେହେଲେ ପରୀକ୍ଷାରେ କୃତକାର୍ଯ୍ୟ ଲାଭ କରିବ କି ? କେବେ ନୁହେଁ, ଆଦୌ

ନୁହେଁ । ପରୀକ୍ଷାର ବହୁଦିନ ପୂର୍ବରୁ ତାକୁ ଅଭ୍ୟାସ କରିବାକୁ ହେବ । ଫଳରେ ପରୀକ୍ଷା ଦିନ ଠିକ୍ ଠିକ୍ ଭାବରେ ସେ ପ୍ରଶ୍ନର ଉତ୍ତର ଦେଇ ପାରିବ । ଯଦି ଅଭ୍ୟାସ କରି ନଥିବ ତେବେ ସେ ପରୀକ୍ଷା ଦିନ କିଛି ଲେଖି ପାରିବ ନାହିଁ । ଏହିପରି ଯେଉଁମାନେ ମୂଳରୁ ଭଗବାନଙ୍କ ନାମ ନିୟମାନୁସାରେ ଉଚ୍ଚାରଣ କରି ନଥିବେ ଶେଷ ସମୟରେ ସେମାନଙ୍କ ମୁହଁରୁ ଭଗବାନଙ୍କ ନାମ ବାହାରି ପାରିବ ନାହିଁ ।"

ଏହାପରେ ଶୌନକ କହିଲେ - "ଅଜାମିଳ କେବେ ପୂର୍ବରୁ ଅଭ୍ୟାସ କରିଥିଲା ?"

ସୂତ ଶୁଣିକରି ଅତ୍ୟନ୍ତ ବିନୟ ଭାବରେ କହିଲେ—"ମହାଭାଗ ! ଆପଣ ଏପରି କଥା କୁହନ୍ତୁ ନାହିଁ । ଦେଖନ୍ତୁ ତାର ଏଇ ପୁଅଟି ଯେଉଁଦିନ ନୂଆହୋଇ ଜନ୍ମନେଲା, ସାଧୁ ପୁରୁଷ ମାନଙ୍କ ଆଦେଶରେ ନାରାୟଣ ବୋଲି ତାର ନାମକରଣ କରାହେଲା । ସେହିଦିନଠାରୁ ଅଜାମିଳ ସର୍ବଦା 'ନାରାୟଣ-ନାରାୟଣ' ଏହି ନାମକୁ କୀର୍ତ୍ତନ କରିବାକୁ ଲାଗିଲା । ମୋ ନାରାୟଣ, ଆସ ନାରାୟଣ, ଖା ନାରାୟଣ, ଯା ନାରାୟଣ, ଶୋଇପଡ଼ ନାରାୟଣ, ବସ ନାରାୟଣ, ଇତ୍ୟାଦି । ଗଣିହେବ ନାହିଁ ମହାରାଜ ! ସେ ଗର୍ବି ଦିନ ନାରାୟଣ ନାମକୁ ଏଭଳି ଉଚ୍ଚାରଣ କରିବାକୁ ଲାଗିଲା । ଏଣୁ ଶେଷ ସମୟରେ ତା ମୁହଁରୁ ନାରାୟଣ ନାମ ବାହାରି ପଡ଼ିଲା ।"

ଏହାପରେ ଶୌନକ କହିଲେ ସେ ଭଗଦାନ ନାରାୟଣଙ୍କ ନାମ ତ ନେଇ ନାହିଁ, ତାର ପୁଅ ନାରାୟଣକୁ ଡାକଥିଲା ।

ଏହାପରେ ସୂତ ଟିକଏ କ୍ରୋଧ ହୋଇ କହିଲେ "ମହାଭାଗ ! ପରୀକ୍ଷା ଥର ମୁଁ ଏହି ପ୍ରଶ୍ନର ଉତ୍ତର ଦେଇ ସାରିଛି । ପୁଅକୁ ଡାକିବା ସମୟରେ ସେ କ'ଣ ଏ କଥା ଜାଣି ନଥିଲା ଯେ ନାରାୟଣ ଭଗବାନ ବିଷ୍ଣୁଙ୍କର ନାମ ବୋଲି । ସେ ମୂର୍ଖ ନଥିଲା, ସେ ଥିଲା ବେଦଜ୍ଞ ବ୍ରାହ୍ମଣ । ସେ ମଧ୍ୟ ଥିଲା କ୍ଷମୀ, ଧ୍ୟାନୀ, ତଥା ତପସ୍ୱୀ । ସେ ଯେତେବେଳେ ସାଧୁମାନେ ଭଗବାନଙ୍କ ପୂଜା କରୁଥିବାର ଦେଖିଲା, ତାର ସେହି ପ୍ରବୃତ୍ତିରେ ମନ ବଳିଲା । ମୁନିଶ୍ରେଷ୍ଠ ! ମନୁଷ୍ୟ ଯେପରି ଈଶ୍ୱର ବିମୁଖ ହେଉନା କାହିଁକି ତା ମନ ଭିତରେ ଆତ୍ମସମର୍ପଣର ବାସନା ଲୁଚି ରହିଥାଏ । ତାହା ହେଲା କୌଣସି ଅବ୍ୟକ୍ତ ଶକ୍ତିର ସାନ୍ନିଧ୍ୟ ଲାଭପାଇଁ । କିଏ ଆସ୍ତିକ ଭାବରେ ତ କିଏ ନାସ୍ତିକ ଭାବରେ ଏପରି ସମସ୍ତ ସର୍ବଦା ଭଗବାନଙ୍କୁ ଡାକିଥାଆନ୍ତି । ମଣିଷ ଭଗବାନଙ୍କ ଚିନ୍ତା ନ କରି ରହିପାରେ ନାହିଁ । କାହା ମନରେ ଏହି ବାସନା ପ୍ରବଳ ଭାବରେ ତ, କାହାମନରେ ସାଧାରଣ ଭାବରେ ଓ କାହାମନରେ ଶିଥିଳ ଭାବରେ ଜାଗ୍ରତ ହୋଇଥାଏ । ଅଜାମିଳ ମନରେ ଭଗବାନଙ୍କ ଚିନ୍ତା ଅଜଣା ଭାବରେ ଲୁଚିକରି ରହିଥିଲା । ସାଧୁମାନଙ୍କୁ ଦର୍ଶନ ଲାଭକରି ତାହା ଖୋଲି ଯାଇଥିଲା । ସେ ସାଧୁମାନଙ୍କର ଶରଣ ନେଲା । ମହାରାଜ !

ଯେଉଁ ପାପୀ ବ୍ୟକ୍ତି ହୃଦୟରେ ନିଜକୁ ପାପୀ ବୋଲି ମାନିଯାଏ ସେ ଉଦ୍ଧାର ପାଇଯାଏ; କିନ୍ତୁ ଯିଏ ପାପ କରିବା ପରେ ମଧ୍ୟ ନିଜକୁ ମହାନ ଧର୍ମାତ୍ମା ବୋଲି ଭାବିଥାଏ, ନାମ ଉଚ୍ଚାରଣ କରି ପାପରୁ ମୁକ୍ତି ପାଇବାର ସହଜ ଉପାୟ କଥା ଭାବି ପାପ କରିବାକୁ ଡରେ ନାହିଁ । ସେପରି ମହାପାପୀର ଉଦ୍ଧାର ବହୁତ କଷ୍ଟରେ । ଅଜାମିଳ ନିଜକୁ ପାପୀବୋଲି ଭାବୁଥିଲା । ସାଧୁମାନଙ୍କର ପବିତ୍ର ଭାବ ଏବଂ ନିଜର ବେଶ୍ୟା, ଦାସୀ, ତକାୟତ, ଜୁଆ, ହତ୍ୟା ଆଦି ଗୁଣକୁ ଲକ୍ଷ୍ୟକରି ସେ ଭାବୁଥିଲା ଯେ ସେ ଭଗବାନଙ୍କ ଭଜନ କରିବାର ଅଧିକାରୀ ନୁହେଁ ଏବଂ ସେ ସାଧୁମାନଙ୍କୁ ପ୍ରାର୍ଥନା କରି କହିଥିଲା ମୋତେ କୌଣସି ଅନ୍ୟ ଉପାୟ ବତାଇ ଦିଅନ୍ତୁ । ସାଧୁମାନେ ତାକୁ କହିଲେ—ସେହି ପରମାତ୍ମା ପରମ ପୁରୁଷଙ୍କୁ ଭଜନ କରିବାକୁ ହେବ । ଏଣୁ ଶେଷ ସମୟରେ ତା ମୁହଁରୁ ଭଗବାନଙ୍କ ନାମ ବାହାରି ପଡ଼ିଥିଲା । ଏକଥା ପୂର୍ବରୁ ମୁଁ କେତେଥର ଆପଣଙ୍କୁ କହିଛି ଯେ ନାମ ସହି ତାର ଅର୍ଥ ରହିଅଛି । ଦୁଧ ସାଙ୍ଗରେ ଧବଳତା, ଅଗ୍ନି ସହି ଦହନ ଓ ଗୋ ଶବ୍ଦ ସହି ଯେପରି 'ଗୋ' ର ସମ୍ପୂର୍ଣ୍ଣ ଭାବ ନିହିତ ଥାଏ ଠିକ୍ ସେହିପରି ନାରାୟଣ ନାମ ସହି ନାରାୟଣଙ୍କର ସଂପୂର୍ଣ୍ଣ ଭାବ ଓ ଅର୍ଥ ସଯୋଗ ହୋଇ ରହିଥାଏ । ତେଣୁ ନାମରୁ ଫଳ ମିଳେ ।''

ଏହାପରେ ଶୌନକ କହିଲେ—''ସୂତ ମହାଭାଗ ! ଆପଣ ଆପଣଙ୍କ କଥାକୁ ପକ୍କା କରିଦେବା ନିମନ୍ତେ ଅର୍ଥକୁ ଅନର୍ଥ କରୁଛନ୍ତି । ମୁଁ ମାନୁଛି ଯେ ଶବ୍ଦ ସହି ଏହାର ଅର୍ଥ ରହିଛି । ଅଜାମିଳ 'ନାରାୟଣ' ଶବ୍ଦ କହୁଛି, ତେଣୁ ନାରାୟଣ ଶବ୍ଦର ଅର୍ଥ ହେଲା, ଦୁଇଟି ହାତ, ଦୁଇ ଗୋଡ଼ ତଥା ହସ ହସ ମୁଖ ସୁନ୍ଦର ବାଳକଟି ଯେ ବେଶ୍ୟାର ପୁତ୍ର । ଅଜାମିଳର ଦଶମ ପୁତ୍ର । ତାହା ମାୟା ପଦାର୍ଥ । ଏହି ମାୟା ବାଳକ ଦ୍ୱାରା ମାୟାତୀତ ଶ୍ରୀମନ୍ନାରାୟଣଙ୍କର ପ୍ରାପ୍ତି କିପରି ଘଟିବ । ନାମର ମହିମା ଏହାକୁ କୁହାଯାଏ ।''

ସୂତ କହିଲେ ''ମୁନିବର ! ଏହି କଥାକୁ ଆପଣ ଗମ୍ଭୀର ଭାବରେ ଚିନ୍ତା କରନ୍ତୁ । ସେହି ବେଶ୍ୟାର ଅନ୍ୟ ନଅଟି ପୁତ୍ରମାନଙ୍କର ନାମ ଖିଜୁ, ବଜୁ, ରଜୁ ଧୁରଇ ଆଦି ନାମ ଥିଲା । ସବୁ ନାମର ଯଦି ଏକ ପ୍ରକାର ଅର୍ଥ ହୋଇଥାଆନ୍ତା ତେବେ ସାଧୁ କାହିଁକି ତାର ଦଶମ ପୁତ୍ରର ନାମ 'ନାରାୟଣ' ରଖିବାକୁ ଆଦେଶ ଦେଲେ । ନାରାୟଣର ଅର୍ଥ ସେ ଜାଣିଥିଲେ ଯେ ଏହା ଭଗବାନଙ୍କର ନାମ । ଅଜାମିଳର ମୁହଁରୁ ଏହି ନାରାୟଣ ନାମ ଉଚ୍ଚାରଣ ହୋଇ ପାରିବ । ଅଜାମିଳ ମଧ୍ୟ ନିଶ୍ଚିତ ଭାବରେ ଜାଣିଥିଲା ଯେ, 'ନାରାୟଣ' ଭଗବାନଙ୍କର ନାମ ଅଟେ । କାରଣ ସଂସାରର ଲୋକମାନେ ନିଜର ପୁଅଝିଅମାନଙ୍କର ନାମ ରାମ, କୃଷ୍ଣ, ନୃସିଂହ, ହରି, ଦୁର୍ଗା, ରମା, ଭବାନୀ, କମଳା ଆଦି ନାମ ଦେଇ ମୂଳରୁ ଭଗବାନଙ୍କ ନାମର ଚିନ୍ତା କରିବା ନିମନ୍ତେ ପ୍ରୟାସୀ ହୋଇଥାଆନ୍ତି । ଏଣୁ ନାରାୟଣ ଶବ୍ଦର ଅର୍ଥ ଅଜାମିଳର ପୁତ୍ର ନାମ

ନୁହେଁ । ନାରାୟଣ ଶବ୍ଦର ଅର୍ଥ ନାରାୟଣ ଅଟେ । ଯାହାଫଳରେ କି ଅଜାମିଳ ଏତେ ବଡ଼ ପାପୀ ହୋଇ ମଧ୍ୟ ସଦ୍‌ଗତି ଲାଭ କରି ପାରିଲା ।''

ଏହାପରେ ଶୌନକ କହିଲେ, ''ମହାଭାଗ ! ଅଜାମିଳର ତ ମୁକ୍ତି ହୋଇଗଲା, ହେଲେ ଆପଣ ଏ ଯେଉଁ କଥା କହିଲେ ତଦ୍ଦ୍ୱାରା ସଂସାରରେ ଅନର୍ଥ ଘଟିବାର ସମ୍ଭାବନା ରହିଛି, କାରଣ ପାପ କରିବା ନିମନ୍ତେ ଲୋକଙ୍କୁ ଏତଦ୍ଦ୍ୱାରା ଉତ୍ସାହ ମିଳିବ ।''

ଆଶ୍ଚର୍ଯ୍ୟ ସହକାରେ ସୂତ କହିଲେ—''ଭଗବାନ ! ଆପଣ ଏ କ'ଣ କହୁଛନ୍ତି ? ମୁଁ ନାମର ମାହାତ୍ମ୍ୟ କୀର୍ତ୍ତନ କରି ଭଗବାନଙ୍କ ନାମର ମାହାତ୍ମ୍ୟ ପ୍ରକଟିତ କଲି । ପ୍ରତ୍ୟେକଙ୍କ ଘରେ ପ୍ରଚାର କରିବା ନିମନ୍ତେ ଇଚ୍ଛା ପ୍ରକାଶ କରୁଛି, ଆଉ ଆପଣ କହୁଛନ୍ତି ଏହା ପାପର ପ୍ରୋତ୍ସାହନ ନିମନ୍ତେ ସହାୟକ ହେବ । ଏହା କିପରି କଥା ?''

ଶୌନକ କହିଲେ—''ଏଥିରୁ ଲୋକେ ଭାବି ପାରନ୍ତି, ଯଦି ନାମର ଏପରି ପ୍ରଭାବ ରହିଛି ତେବେ ଆମେ କାହିଁକି ମନଇଚ୍ଛା ପାପ ନକରିବା, ଦିନଯାକ ପାପରେ ପ୍ରବୃତ୍ତ ହୋଇ ରାତିରେ ନାମ ଜପ କରିବା । ନାମ ଜପ ମଣିଷର ପାପ ଭସ୍ମୀଭୂତ ହୋଇଯିବ ବୋଲି ନାମମାହାତ୍ମ୍ୟ ଶୁଣିବା ପରେ ଲୋକମାନେ ପୂର୍ବ ଅପେକ୍ଷା ଅଧିକ ପାପ କରି-ପାରନ୍ତି, କାରଣ ପାପର ବିନାଶ ପାଇଁ ତାଙ୍କୁ ଉପାୟ ମିଳିଗଲା । ଏଣୁ ଆପଣ କୁହନ୍ତୁ, ଏହାଦ୍ୱାରା ନାମର ପ୍ରଚାର ହେଲା ନା ପାପର ପ୍ରସାର ଘଟିଲା ?

ଏକଥା ଶୁଣି ସୂତ ମହାଭାଗ ଟିକିଏ ଗମ୍ଭୀର ହୋଇ କହିଲେ ମୁନିବର ! ଆପଣ ଯାହା କହୁଛନ୍ତି ତାହା ଠିକ୍ । ପାପୀମାନେ ନିଜର ପାପକୁ ଲୁଚାଇ ନିଜକୁ ଶ୍ରେଷ୍ଠ ଭାବରେ ବିବେଚିତ କରିବାକୁ ମହାପୁରୁଷମାନଙ୍କର ପ୍ରମାଣକୁ ଖୋଜି ବୁଲନ୍ତି । ଯଦି ସେମାନଙ୍କ ପାଇଁ କୌଣସି ଅନୁକୂଳ ପ୍ରମାଣ ମିଳିଗଲା ତେବେ ସେମାନେ ପୂର୍ବାପର ସଙ୍ଗତି ଛାଡ଼ି, ତାହା ନିଜ ଆଡ଼କୁ ଟାଣି ଆଣନ୍ତି । ଏପରି ପାପୀ-ମାନଙ୍କ ପାଇଁ ଶାସ୍ତ୍ରୀୟ ଉପଦେଶ ନାହିଁ । ଅତ୍ୟନ୍ତ ଜ୍ଞାନୀ, ଅତ୍ୟନ୍ତ ପାପୀ, ମୂଢ଼ ବ୍ୟକ୍ତିମାନଙ୍କ ପାଇଁ ଶାସ୍ତ୍ରୀୟ ସାଧନ ନାହିଁ । ସାଧନା ପରେ ଜ୍ଞାନୀ ଭାବରେ ବିବେଚିତ ହୋଇ ଆଆନ୍ତି । ସେ ପୁନର୍ବାର ସାଧନ ନିମନ୍ତେ ଅପେକ୍ଷା କରି ରହେନାହିଁ । ଯେଉଁ-ମାନେ ସବୁଠାରୁ ମୂଢ଼, ପାପକର୍ମ ଲିପ୍ତ, ସାଂସାରିକ କର୍ମରେ ସର୍ବଦା ବ୍ୟସ୍ତ ସେମାନଙ୍କ ପାଇଁ ଶାସ୍ତ୍ରୀୟ ସାଧନର ଦରକାର ନାହିଁ । ଯିଏ ଶୋଷୀ ନୁହେଁ ତା ପାଇଁ ଜଳ ବୃଥା । ଯାହାର ମୁହଁ ନାହିଁ ତାର ଖାଦ୍ୟ ଦରକାର ନାହିଁ । ଯେ ପାପ ପୁଣ୍ୟ ବିଚାର କରି ପାପକୁ ତ୍ୟାଗ କରି ପୁଣ୍ୟକୁ ଗ୍ରହଣ କରେ ସେହି ସାଧକ ନିମନ୍ତେ ସାଧନା ଦରକାର ପଡ଼େ । ଏହିପରି ଲୋକ କେବେହେଲେ ପାପ କରିବାକୁ ଇଚ୍ଛା ପ୍ରକାଶ କରିବ ନାହିଁ । ସେ ଭୁଲରେ କେତେବେଳେ ପାପ କରି ବସିଲେ ତା ମନରେ

ଘୋର ଅନୁତାପ ଜାତ ହୁଏ । ସେ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରି କହେ ଭଗବାନ ! ମୋ ଦ୍ୱାରା ଆଉ ଏପରି ପାପ କାର୍ଯ୍ୟ ନହେଉ । ଏହିପରି ଭାବନା ତା ମନରେ ଜାଗ୍ରତ ହୋଇ ସେ ନାମକୀର୍ତ୍ତନ ଜପକରେ । କ୍ରମେ କ୍ରମେ ତା ମନରୁ ପାପ ପ୍ରବୃତ୍ତି ଦୂରେଇଯାଏ । ଯେତେବେଳେ ମନରେ ଆଦୌ ପାପ କର୍ମର ଅଭିଳାଷ ରହେ ନାହିଁ ସେତେବେଳେ ଭଗବାନଙ୍କ ପ୍ରତି ପ୍ରବଳ ଅନୁରାଗ ଆସିଲା ବୋଲି ଜାଣିବାକୁ ହେବ । ଯେତେବେଳ ପର୍ଯ୍ୟନ୍ତ ପାପ କର୍ମ ଭଲ ଲାଗିଥିବ ସେପର୍ଯ୍ୟନ୍ତ ଭଗବାନଙ୍କ ପ୍ରତି ଅନୁରାଗ ଆସି ନାହିଁ ବୋଲି ଜାଣିବାକୁ ହେବ ।''

ଏହାପରେ ଶୌନକ କହିଲେ—''ମହାଭାଗ ! ଏକଥା ଠିକ୍ ଯେ ପ୍ରଥମେ ହୃଦୟକୁ ପବିତ୍ର କରି ଭଗବାନଙ୍କ ନାମ ନିଅ, ତାହାହେଲେ ଏହା ସାର୍ଥକ ହେବ । ଏହାଦ୍ୱାରା ମଧ୍ୟ ଫଳ ମିଳିବ । ଅଶୁଦ୍ଧମନରେ ନାମ ନେଲେ ତାହା ବ୍ୟର୍ଥରେ ପରିଣତ ହେବ ।''

ଏହାପରେ ସୂତ କହିଲେ—''ନା ମହାରାଜ ! ଏହା ମୋର ଅଭିପ୍ରାୟ ନୁହେଁ । ମୁଁ ବାରମ୍ବାର ଦୃଢ଼ତା ସହ କହୁଛି ଯେ ଯେକୌଣସି ପ୍ରକାରେ ନାମ ନେଲେ ତାହା ବ୍ୟର୍ଥରେ ପରିଣତ ହେବ ନାହିଁ । କିନ୍ତୁ ପାତ୍ର ଭେଦରେ ଫଳ ମିଳିବାରେ ତାରତମ୍ୟ ହେଇପାରେ । ଭଗବାନଙ୍କ ନାମ କଳ୍ପତରୁ ଅଟେ । ଯେଉଁ ଲୋକ ନାମର ସାଧନ ଜାଣି ନପାରି କେବଳ ନିଜର ପାପକୁ ଘୋଡ଼ାଇବା ସକାଶେ ନାମକୁ ଅସ୍ତ୍ର ଭାବରେ ବ୍ୟବହାର କରେ, ଯିଏ ନାମର ଆଶ୍ରୟ ଗ୍ରହଣ କରି ଶାସ୍ତ୍ର ବିହିତ ଧର୍ମ କର୍ମକୁ ଆଳସ୍ୟ ଭାବରେ ପରିତ୍ୟାଗ କରେ ସେ ହେଉଛି ନାରକୀୟ ଜୀବ । ସେ ନାମର ଆଶ୍ରୟ ଗ୍ରହଣ କରି ନିଜ ପାପର ପ୍ରାୟଶ୍ଚିତ ଇଚ୍ଛା-କଲେ ମଧ୍ୟ ଏହାଦ୍ୱାରା ତାର ପାପ ବଢ଼ିଥାଏ । ଭଗବାନଙ୍କ ନାମନେଇ ଧର୍ମସ୍ଥାନ ମାନଙ୍କରେ ବସି ଭିକ ମାଗିବା ବ୍ୟକ୍ତି ଚିନ୍ତାମଣିରତ୍ନକୁ ଶୌଚାଳୟରେ ଲଗାଇ ବ୍ୟବହାର କରିବା ପରି କଥା । ଶୌଚାଳୟରେ ଲଗାଇ ଦେଲେ ତାର ଉପକାର ଅଛି କିନ୍ତୁ ଏହା ରତ୍ନର ଯଥାର୍ଥ ଉପଯୋଗୀ ନୁହେଁ । ଭଗବାନଙ୍କ ନାମ ବ୍ୟର୍ଥରେ ପରିଣତ ହୁଏ ନାହିଁ । ପାତ୍ର ଭେଦରେ, ଏହା ନିଶ୍ଚୟ ଫଳପ୍ରଦ ହୁଏ କିନ୍ତୁ ଯୋଗ୍ୟପାତ୍ର ଦ୍ୱାରା ଉତ୍ତମରୁ ଉତ୍ତମ ଫଳ ମିଳିଥାଏ । ସୂର୍ଯ୍ୟଦେବ ଉଦୟ ହେବା ଦ୍ୱାରା ଚାରିଆଡ଼ୁ ଅନ୍ଧକାର ନାଶହୁଏ କିନ୍ତୁ ଯେଉଁଠା ଅଧିକ ଖୋଲାସ୍ଥାନ ତାହା ଅଧିକ ମାତ୍ରାରେ ଆଲୋକିତ ହୋଇ ଉଠେ । ଯେଉଁସ୍ଥାନ ଅଧିକ ଅନ୍ଧକାର ତାହା କମ୍ ଆଲୋକିତ ହେବ । ପାପୀ ନାମ ଉଚ୍ଚାରଣ କରିଲେ ଆସ୍ତେ ଆସ୍ତେ ତାର ପାପ କ୍ଷୟ ହୋଇଯାଏ । ତା ପାପର ଗ୍ଲାନି ଘଟେ, ନିଜର କୃତକର୍ମ ନିମନ୍ତେ ଦୁଃଖ ଭୋଗ କରେ । ମନରେ ଅନୁତାପ ଦେଖାଦିଏ । ହୃଦୟ ଭିତରେ ପ୍ରକୃତ ଅନୁତାପ ଆସିଲେ ପାପ ଆଉ ମନକୁ ସ୍ପର୍ଶକରି

ପାରେ ନାହିଁ । ଯେତେବେଳ ପର୍ଯ୍ୟନ୍ତ ସେ ପାପ କର୍ମରେ ଲିପ୍ତ ଥାଏ ସେତେବେଳ ପର୍ଯ୍ୟନ୍ତ ନାମଠାରୁ ପାପ ଅଧିକ ପ୍ରିୟ ବୋଲି ସେ ଭାବେ । ଭଗବାନଙ୍କ ଅପେକ୍ଷା ବିଷୟ ବାସନାରେ ସେ ଅଧିକ ପ୍ରୀତ ହୁଏ । ଶାସ୍ତ୍ରର କୌଣସିଠାରେ ଏକଥା ଲେଖା ନାହିଁ ଯେ, ମନ ଖୋଲି ପାପ କର ଓ ତାପରେ ଭଗବାନଙ୍କ ନାମ ନିଅ । ବାରମ୍ବାର ଏକଥା କୁହାଯାଉଛି ଯେ, ଯଦି ତୁମେ ଭୁଲରେ ପାପ କରିଛ ତାର ପ୍ରାୟଶ୍ଚିତ ନିମନ୍ତେ ହୃଦୟରେ ଅନୁତାପ କର ଓ ଭଗବାନଙ୍କ ନାମ ଭଜନ କର । ଭଗବାନ ଓ ତାଙ୍କ ନାମ ଭଜନ କଲେ ତୁମର ସମସ୍ତ ପାପ ନାଶ ହେବ । ପାପ କରିବାର ପ୍ରବୃତ୍ତି ରଖ ନାହିଁ । ଏହି ଅଜାମିଲ ପିତା ମାତାଙ୍କର ଅତ୍ୟନ୍ତ ଭକ୍ତ ଥିଲା । ସେ ପୂର୍ବଜନ୍ମର ସଂସ୍କାରରେ ବଶୀଭୂତ ହୋଇ ପଡ଼ିବା ଫଳରେ ତାଠାରେ କୁସଂସ୍କାର ଉଦୟ ହେଲା ଯାହାଫଳରେ କି ସେ ବେଶ୍ୟାପାଲରେ ପଡ଼ିଯାଇଥିଲା । ଭଗବାନଙ୍କ ନାମ 'ନାରାୟଣ', ଏହା ସେ ଭଲଭାବରେ ଜାଣିଥିଲା । ଯାହାଫଳରେ କି ସେ ନାରାୟଣ ନାମ ଉଚ୍ଚାରଣ କରି କିଛି ପୁଣ୍ୟ ଅର୍ଜନ କରିଥିଲା । ଭକ୍ତକୁ ଅସହାୟ ଦୁର୍ବଳ ହୋଇ ପଡ଼ିଥିବାର ଜାଣିପାରି ଅଠାଅଣୀ ପାର୍ଷଦ ଦୌଡ଼ିକରି ଆସି ନାମର ମହିମା ସ୍ଥାପନ କରିବା ଉଦ୍ଦେଶ୍ୟରେ ଭଗବାନ ଅଜାମିଲକୁ ନିଜର କରି ନେଇ ତା ଉପରେ କୃପା ବାରି ବର୍ଷି ଦେଇଥିଲେ । ଏଣୁ ରାଜନ ! ପ୍ରାୟ ସମସ୍ତ ପୁରାଣ ଶାସ୍ତ୍ରରେ ଲେଖା ହୋଇଛି ଯେ ନାମକୀର୍ତ୍ତନ କରିବା ନିମନ୍ତେ କୌଣସି ନିୟମ ନାହିଁ । ଜାତି, ବର୍ଣ୍ଣ, ସମୟ, କାଳ, ସ୍ଥାନ ପାତ୍ର ନିର୍ବିଶେଷରେ ଭଗବାନଙ୍କ ନାମ ଉଚ୍ଚାରଣ କରାଯାଇ ପାରେ ।"

ଏହାପରେ ଶୌନକ ପଚାରିଲେ, "ସୂତ ମହାଭାଗ ! ପୁରାଣରେ ଦଶଟି ପ୍ରକାରର ନାମ ଅପରାଧ ବର୍ଣ୍ଣିତ ହୋଇଅଛି ଯଥା; (୧) ମହାପୁରୁଷ, ସାଧୁସନ୍ଥ ମାନଙ୍କର ନିନ୍ଦା (୨) ଯେଉଁ ଲୋକ ନାମମାହାତ୍ମ୍ୟ ଶୁଣିବାକୁ ଇଚ୍ଛା କରେ ନାହିଁ ତାକୁ ଶୁଣାଇବା (୩) ଶିବ ଓ ବିଷ୍ଣୁଙ୍କ ମଧ୍ୟରେ ପ୍ରଭେଦ ସୃଷ୍ଟି (୪ ଗୁରୁଙ୍କର ଆଦେଶ ନମାନିବା (୫) ସ୍ମୃତି-ଶାସ୍ତ୍ରର ଆଜ୍ଞା ପାଳନ ନ କରିବା (୬) ଆଚାର୍ଯ୍ୟଙ୍କ ବାଣୀକୁ ଅବିଶ୍ୱାସ ଓ ଅବଜ୍ଞା (୭) ନାମମାହାତ୍ମ୍ୟକୁ ଅର୍ଥବାଦ ବୋଲି ଗ୍ରହଣ କରିବା (୮) ନାମର ଆଶ୍ରୟ ଗ୍ରହଣ କରି ଶାସ୍ତ୍ର ବିହିତ ଧର୍ମ କର୍ମ ଇତ୍ୟାଦି ପରିତ୍ୟାଗ (୯, ଶାସ୍ତ୍ର ନିଷେଧ କର୍ମ ଗ୍ରହଣ (୧୦) ନାମ ଜପକୁ ଅନ୍ୟ ଧର୍ମ ସହିତ ତୁଳନା କରିବା । ଏହି ଦଶ ଅପରାଧଠାରୁ ଦୂରରେ ରହି ଯିଏ ନାମ ସଂକୀର୍ତ୍ତନ କରେ ତାହାର କୀର୍ତ୍ତନ ଓ ନାମ ଉଚ୍ଚାରଣ ସାର୍ଥକ ହୁଏ କିନ୍ତୁ ଯିଏ ନାମ ଅପରାଧଠାରୁ ଦୂରରେ ନରହି ନାମ ସଂକୀର୍ତ୍ତନ କରେ ତାର ନାମ ସଂକୀର୍ତ୍ତନ ବ୍ୟର୍ଥରେ ପରିଣତ ହୁଏ । ସେ ନରକ ରୂପକ ଅଗ୍ନିରେ ନିକ୍ଷିପ୍ତ ଭାବରେ ପଡ଼ି ହଲସଲ ହୁଏ ।" ଯଦି ଏହାହୁଏ ତେବେ ନାମସଂକୀର୍ତ୍ତନ ସରଳ, ସୁଗମ, ସର୍ବୋପଯୋଗୀ ସାଧନ ହୋଇ ରହେ ନାହିଁ । ତେବେ ନାମ ଅପରାଧର ଅଧୀନ

ହେବାକୁ ହୁଏ । ସଂସାରରେ ଉକ୍ତ ନାମ ଅପରାଧଠାରୁ କିଏ ସମ୍ପୂର୍ଣ୍ଣ ଭାବରେ ବିରତ ହୋଇ ରହିଛି ? ହେଲେ ମଧ୍ୟ ସେ ନାମ ସଂକୀର୍ତ୍ତନର ଅଧା ଅଧିକାଂଶ ହୋଇ ପାରିବ । ଶୁଣାଯାଏ ନାମ ଅପରାଧୀର କୌଣସି ପ୍ରାୟଶ୍ଚିତ ନାହିଁ । ଏହା ଭାରି ତଥା ବଡ଼ ପାପ ଭାବରେ ବିବେଚିତ । ତେବେ ନାମସଂକୀର୍ତ୍ତନ ଦ୍ୱାରା କିପରି ଉଦ୍ଧାର ପାଇବ ?"

ଏକଥା ଶୁଣି ସୂତ ମହାଶୟ କହିଲେ—ମହାରାଜ ! ଏପରି କଥା ବାଳକ ବୁଦ୍ଧି ସମ୍ପନ୍ନ ଲୋକେ କହିଥାଆନ୍ତି, ଯେଉଁମାନଙ୍କର ବୁଦ୍ଧି ସକାମ ଜନିତ କର୍ମକାଣ୍ଡ ଦ୍ୱାରା ପରିଚାଳିତ । ଭଗବାନ ! ନାମ ଅପରାଧ ଠାରୁ ଦୂରରେ ରହି ନାମକୀର୍ତ୍ତନ କରିବା ସବୁଠାରୁ ଶ୍ରେଷ୍ଠ କର୍ମ ; କିନ୍ତୁ ତାର ଅର୍ଥ ନୁହେଁ ଯେ, ଯାହାଠାରେ ନାମ ଅପରାଧ ଜାତ ହୁଏ ସେ ନାମକୀର୍ତ୍ତନ ବନ୍ଦ କରିଦେବା ଉଚିତ । ଏହା ଆଦୌ ଠିକ୍ ନୁହେଁ । ନାମକୀର୍ତ୍ତନ କରିବା ପାଇଁ ପାପାତ୍ମା, ପୁଣ୍ୟାତ୍ମା, ଅପରାଧି ନିରପରାଧ ସମସ୍ତଙ୍କର ଅଧିକାର ରହିଛି । ଏକଥା ଠିକ୍ ଯେ ନାମ ଅପରାଧ ସବୁଠାରୁ ବଡ଼ ପାପ, କିନ୍ତୁ ଏହି ମହାନ ପାପର ଯଦି କୌଣସି ପ୍ରାୟଶ୍ଚିତ ଥାଏ, ତେବେ ତାହା ହେଉଛି ଏହି ପୁଣ୍ୟ କାର୍ଯ୍ୟ ନାମକୀର୍ତ୍ତନ । ନାମ ଅପରାଧକୁ ଦୂରୀକରଣ କରିବାକୁ ହେଲେ ତାହା ଭଗବାନଙ୍କ ନାମକୀର୍ତ୍ତନ କରିବା ଦ୍ୱାରା ହିଁ ସମ୍ଭବ । ଏଣୁ ନାମ ଅପରାଧୀ ନିମନ୍ତେ ନିରନ୍ତର ନାମସଂକୀର୍ତ୍ତନ କରିବା ସବୁଠାରୁ ଶ୍ରେୟସ୍କର ।

"ମହାଭାଗ ! ନାମ ଦ୍ୱାରା କେବେ କୌଣସି ଅପରାଧ ହୋଇଥାଏ କି ? ନାମର ମାହାତ୍ମ୍ୟ ବଢ଼ାଇବା ନିମନ୍ତେ ନାମ ଅପରାଧର ବର୍ଣ୍ଣନା କରାଯାଇଛି । ଯେପରି ଆମେ ଇନ୍ଦ୍ରଙ୍କୁ ସବୁଠାରୁ ବେଶି ପ୍ରଶଂସା କରୁ । ତାଙ୍କର ଐଶ୍ୱର୍ଯ୍ୟର ଅତ୍ୟଧିକ ବର୍ଣ୍ଣନା କରି ଆମେ ଶେଷରେ କହିଦେଉ ଯେ, ଏହି ଇନ୍ଦ୍ର ମଧ୍ୟ ବିଷ୍ଣୁଙ୍କ ଚରଣ ଧୂଳି ପାଇବା ନିମନ୍ତେ ସର୍ବଦା ଲାଳାୟିତ । ଏଣୁ ଇନ୍ଦ୍ରଙ୍କର ଏତେ ପ୍ରଶଂସା କରିବାର ଫଳ କିଛି ନାହିଁ । ଏଠାରେ କୌମୁତଙ୍କ ନ୍ୟାୟରେ ଭଗବାନଙ୍କ ମହିମା ବଖାଣିବାର ଅଭିପ୍ରାୟ ଅଛି । ଏହିପରି ଭାବରେ ପ୍ରଥମେ ନାମ ଅପରାଧର ମହାନ ପାପ କୁହାଗଲା । ବ୍ରହ୍ମହତ୍ୟାର ପ୍ରାୟଶ୍ଚିତ ଶାସ୍ତ୍ରମାନଙ୍କରେ ଲେଖା ହୋଇଅଛି । କିନ୍ତୁ ନାମ ଅପରାଧର କୌଣସି ପ୍ରାୟଶ୍ଚିତ ନାହିଁ । ଏହିଭଳି ଘୋର ପାପ ଭଗବାନଙ୍କ ନାମକୀର୍ତ୍ତନ ଦ୍ୱାରା ଦୂର ହୋଇଥାଏ, ତାର ମହିମା କ'ଣ ବର୍ଣ୍ଣନା କରିବି । ପୁରାଣରେ ସ୍ପଷ୍ଟ ଭାବରେ କୁହାଯାଇଛି ଯେ, ଭୂଲ ବଶତଃ ନାମ ଅପରାଧ ଜାତ ହେଲେ, ଏକମାତ୍ର ପ୍ରଭୁଙ୍କଠାରେ ଶରଣ ଯାଇ ସଦାସର୍ବଦା ନାମ ସଙ୍କୀର୍ତ୍ତନ କରିବା ଉଚିତ ଯାହାଦ୍ୱାରା କି ନାମ ଅପରାଧ ଦୋଷ ଦୂର ହୋଇ ପାରିବ ।"

ଯେଉଁ ଲୋକ ନାମ ଅପରାଧ ଉପରେ ଅତ୍ୟଧିକ ଜୋର ଦେଇ ନାମ ସଙ୍କୀର୍ତ୍ତନ କରୁଥିବା ଲୋକମାନଙ୍କୁ ବାଧା ପ୍ରଦାନ କରେ ସେମାନଙ୍କ ନିମନ୍ତେ

ମୁଁ ଏତକ କହିପାରେ ଯେ, ସେହି ଲୋକ ଭଗବାନଙ୍କ ମାୟା ମୋହିତ ଏକ ଜୀବ ମାତ୍ର । ଏହି ଲୋକ ନାମ କୀର୍ତ୍ତନକୁ ଶ୍ରେଷ୍ଠ ବୋଲି ନ ଭାବି ନାମ ଅପରାଧକୁ ଶ୍ରେଷ୍ଠ ବୋଲି ଜ୍ଞାନ କରେ । ଭଗବାନଙ୍କ ନାମକୁ ନାମ ଅପରାଧର ଅଧୀନ ବୋଲି ଜ୍ଞାନକରି ଭଗବାନଙ୍କ ନାମର ପ୍ରଚାର ନ କରି ନାମ ଅପରାଧର ପ୍ରଚାର କରେ । ଏହି ନାମ ଅପରାଧ ହିସାବର ତାତ୍ପର୍ଯ୍ୟ ହେଲା ସ୍ୱଧର୍ମ ପାଳନପୂର୍ବକ ଶୁଦ୍ଧ ଚିତ୍ତରେ ଦୁର୍ଗୁଣ ପରିତ୍ୟାଗ କରି ନାମ ସଂକୀର୍ତ୍ତନ କରିବା ଉଚିତ ।"

ଏହାପରେ ଶୌନକ କହିଲେ— "ମହାଭାଗ ! ମୋର ସନ୍ଦେହ ଦୂରୀଭୂତ ହୋଇଗଲା ।"

ଏହା ଶୁଣି ହସିକରି ସୂତ ମହାଭାଗ କହିଲେ — ମହାଭାଗ ! ଆପଣଙ୍କ ମନରେ କି ସନ୍ଦେହ ଜାତ ହୋଇଥିଲା ଆପଣ କେବଳ ଲୋକମାନଙ୍କ ହିତ ନିମନ୍ତେ ସନ୍ଦେହମାନ ଉପସ୍ଥାପିତ କରିଥିଲେ । ଭଗବାନଙ୍କ ନାମ ମାହାତ୍ମ୍ୟ ସମ୍ପର୍କରେ ମୋର ଗୁରୁଦେବ ରାଜା ପରୀକ୍ଷିତଙ୍କୁ ଏହି ପବିତ୍ର ଅଜାମିଳ ଆଖ୍ୟାନ କହିଥିଲେ । ଏହି ଆଖ୍ୟାନର ପ୍ରାଚୀନତା ଏବଂ ପରମ୍ପରା ଶୁଣିବା ଅଭିପ୍ରାୟରେ ରାଜା ପରୀକ୍ଷିତ ଶୁକଦେବଙ୍କୁ ପଚାରିଥିଲେ—"ଭଗବାନ ! ଆପଣ ଏହି ଇତିହାସ କେଉଁଠାରୁ ଶୁଣିଥିଲେ । କୌଣସି ପ୍ରସିଦ୍ଧ ବ୍ୟକ୍ତିଙ୍କ ଠାରୁ ଶୁଣିଥିଲେ ନା ଏଇ କଥା କାହାଣୀ କହୁଥିବା ଲୋକଙ୍କଠାରୁ ଶୁଣିଥିଲେ ?"

ଏକଥା ଶୁଣି ଶୁକଦେବ କହିଲେ— "ମହାରାଜ ! ମୁଁ ଏହି ଇତିହାସ ଏମିତି ସେମିତି ଲୋକମାନଙ୍କଠାରୁ ବା କଥା ଛଳରେ କେଉଁଠାରୁ ଶୁଣିନାହିଁ । ଯିଏ ସବୁ ଋଷି-ମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ, ଯିଏ ଦକ୍ଷିଣ ଦେଶର ପ୍ରଭୁ, ଯିଏ କି ମହା ସମୁଦ୍ରର ଅଥଳ ଜଳକୁ ଗୋଟିଏ ଚଳୁରେ ପାନ କରି ଦେବାକୁ ସକ୍ଷମ ସେହି ମହାନ୍ ମହାପୁରୁଷ ଭଗବାନ ଅଗସ୍ତିଙ୍କ ମୁହଁରୁ ମୁଁ ଏହି ପୁଣ୍ୟମୟ ଇତିହାସ ଶୁଣିଥିଲି ।"

ରାଜା ପଚାରିଲେ – "ପ୍ରଭୁ ! ଦେଶରେ ମଧ୍ୟ ତ ଏହାର ପ୍ରଭାବ ପଡ଼ିଥିବ । କାରଣ ଆପଣ ଏହାକୁ ଦେଶ ଭିତରେ କେଉଁଠାରେ ଶୁଣିଥିବେ ?"

ଏହାପରେ ରାଗିଯାଇ ଶୁକଦେବ କହିଲେ—"ନା ରାଜା ! ମୁଁ ପୁଣ୍ୟାଢ୍ୟ ପୁଣ୍ୟ ମଳୟ ପର୍ବତରେ ବସି ତାଙ୍କଠୁଁ ଏହି ପବିତ୍ର କାହାଣୀ ଶୁଣିଥିଲି ।"

ଏହାପରେ ରାଜା ପୁଣି କହିଲେ – "ଭଗବାନ ଏତେ ବଡ଼ ମହାପୁରୁଷ କାହିଁକି ଦେଶ ଭିତରେ କୌଣସି ଜାଗାରେ ନ କହି ସେଠି କହିଲେ ? ଯଦି ଉଚିତ ସମୟରେ କହି ନ ଥିବେ ତେବେ ତାର ମହତ୍ତ୍ୱ କିଛି ନ ଥିବ । ମୁଁ ନ ଜାଣି ହସି ହସି କେତେ ଅସତ୍ୟ କଥା ମଧ୍ୟ କହି ଦେଇଥାଏ ଯଦି ଏହିପରି ହାସ ବିନୋଦରେ ଏହି ଚରିତ ଆପଣଙ୍କୁ ଖୁସି କରିବା ପାଇଁ ଅଗସ୍ତି କହିଥାଆନ୍ତି, ତେବେ ତାର କିଛି ମୂଲ୍ୟ ନାହିଁ !

ଏହାପରେ ଶ୍ରୀ ଶୁକଦେବ କହିଲେ—"ନା ରାଜା ! ଏହା ଠିକ୍ ନୁହେଁ । ଭଗବାନ ଅଗସ୍ତି ପରମ ପବିତ୍ର ମଳୟ ପର୍ବତରେ ବସି ଗମ୍ଭୀର ଭାବରେ ଏହି ଇତିହାସ କହିଥିଲେ । ସେ ସମୟରେ କି ସେ ଭଗବାନଙ୍କ ପୂଜା କରୁଥିଲେ । ଭଗବାନ ଶାଳଗ୍ରାମକୁ ହାତରେ ଧରି କଥାର ସତ୍ୟତା ନେଇ ଶପଥ କରି ଏହି ସବୁକଥା ସେ ପ୍ରକାଶ କରିଥିଲେ । ଏଥିରେ ଅବିଶ୍ବାସ କରିବାର କିଛି କାରଣ ନାହିଁ ।"

ଏହା ଶୁଣି ମହାରାଜ ପରୀକ୍ଷିତ କହିଲେ—"ଭଗବାନ୍ ! ଏହି ନାମ ମାହାତ୍ମ୍ୟ-ବର୍ଦ୍ଧକ ଇତିହାସ ଶୁଣି ମୋରଅନ୍ତର ଖୁବ୍ ଶାନ୍ତି ପାଇଲା । ଘୋର ବ୍ରହ୍ମଶାପରୁ ମୋତେ ଉଦ୍ଧାର ମିଳିଯିବ ବୋଲି ମୋର ବିଶ୍ୱାସ ହେଲା । ଭଗବାନ ପ୍ରଥମେ ଆପଣ ସୃଷ୍ଟିର କ୍ରମବିକାଶ ଅତ୍ୟନ୍ତ ସଂକ୍ଷେପ ଭାବରେ ବର୍ଣ୍ଣନା କରିଥିଲେ । ଏବେ ମୁଁ ଏହାକୁ ବିସ୍ତୃତ ଭାବରେ ଶୁଣିବାକୁ ଇଚ୍ଛା କରୁଅଛି । ଯଦି ମୁଁ ଏହା ଶୁଣିବା ପାଇଁ ପ୍ରକୃତ ଅଧିକାରୀ ତେବେ ଦୟା କରି ମୋତେ ତାହା କହିବା ହୁଅନ୍ତୁ ।"

ଏହାଶୁଣି ଶ୍ରୀ ଶୁକଦେବ ବଡ଼ ଆନନ୍ଦିତ ହେଲେ । ରାଜାକୁ ଅଭିନନ୍ଦନ ମଧ୍ୟ ଜଣାଇଲେ । ତାଙ୍କର ପ୍ରଶଂସା ଗାନକରି ମେଘ ଗମ୍ଭୀର ବାଣୀରେ କହିଲେ—"ରାଜନ୍ ! ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବି । ଆପଣ ମନଦେଇ ଏହି ପୁଣ୍ୟ ପ୍ରସଙ୍ଗ ଶୁଣନ୍ତୁ ।"

—ଛପ୍ପୟ—

କହେଂ ପରୀକ୍ଷିତ ପ୍ରଭୋ ! ସୁନାଈ ସରସ କହାନୀ ।
କଥା ଅଜାମିଲ ସୁନୀ ନାମ ମହିମାହୁ ଜାନୀ ॥
ତାପ ଶାପ ସଂତାପ ନାମ ଧ୍ୱନି ସୁନୀ ଭଗି ଜାଓେଂ ।
ସବ ମିଲି ଐସେ ଭଗେଂ ଲୌଟିକେ ଫିର ନହିଁ ଆଓେଂ ॥
ସୁନୀ ନାମ ମହିମା ପ୍ରଭୋ ! ପ୍ରକୃତ କଥା ଗୃଲୁ କରୋ ।
ସୃଷ୍ଟି-ପ୍ରସଙ୍ଗ ସନାଇକେଂ, ମେରେ ସବ ସଂଶୟ ହରୋ ॥



# "ପ୍ରଚେତାଙ୍କ ପୁତ୍ର ଦକ୍ଷଙ୍କର ପ୍ରଜାବୃଦ୍ଧି ପାଇଁ ତପସ୍ୟା"

ତ ମବୃହିତ ମାଲୋକ୍ୟ ପ୍ରଜାସର୍ଗ ପ୍ରଜାପତିଃ ।
ବିନ୍ଧ୍ୟପାଦାନୁପବ୍ରଜ୍ୟ ସୋଽଚରଦ୍ ଦୁଷ୍କର ତପଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୪ର୍ଥ ଅଧ୍ୟାୟ ॥ ୨୦-ଶ୍ଳୋକ ]

## ଛପ୍‌ପୟ

ବୋଲେ ଶୁକ—ଶୁନୁ ନୃପତି ! ଦକ୍ଷ ପ୍ରାଚେତସ ପ୍ରକଟେ ।
କରୀ ସୃଷ୍ଟି ତନ ବିବିଧ ଦେବ ନର କମନ ଲିପଟେ ॥
ତଉ ସୃଷ୍ଟି ନହିଁ ବଢ଼ୀ ଦକ୍ଷ ଅତିଶୟ ଘବରାୟେ ।
ବିନ୍ଧ୍ୟାଚଲ କେ ନିକଟ ତପସ୍ୟା ହିତ ତବ ଆୟେ ॥
ଅଘ ମର୍ଷଣ ଇକ ବିମଲବର, ତୀର୍ଥ ତାହି ତଟ ଜାଇକେଂ ॥
କୀନ୍ହୋ ତପ ଅତି ଉଗ୍ର ତହଁ, କନ୍ଦମୂଲ ଫଲ ଖାଇକେଂ ॥

ଭଗବାନ ଯେଉଁ ବ୍ୟକ୍ତିକୁ ଯେଉଁ କାର୍ଯ୍ୟପାଇଁ ପଠାଇଛନ୍ତି ସେହି କାର୍ଯ୍ୟ ପାଇଁ ତାର ବଡ଼ ଆସକ୍ତି ଜାତହୁଏ । ଯାହାର ଜନ୍ମୁକ୍ତ ଅଧର୍ମ ପ୍ରଚାର ପାଇଁ ଉଦ୍ଦିଷ୍ଟ ସେ ନାନା ଯୁକ୍ତି ଦର୍ଶାଇ ଅଧର୍ମକୁ ଧର୍ମ କହି ଲୋକମାନଙ୍କ ନିକଟରେ ପ୍ରକାଶ କରେ । ଯଦି ଏହି ପ୍ରକାରରେ ଜୀବର କର୍ମ ପ୍ରତି ଆସକ୍ତି ନ ରହେ ତେବେ ସେ ସୃଷ୍ଟିର ଆଗକୁ ଚାଲି ପାରିବ ନାହିଁ କିନ୍ତୁ ଏହି ସୃଷ୍ଟି ଅନାଦି କାଳରୁ ଅଚଳ ଅଟଳ ଓ ଏହା ଅନନ୍ତ କାଳ ନିମନ୍ତେ ମଧ୍ୟ ଏପରି ରହିଥିବ । କାରଣ ଏହା ଭଗବାନଙ୍କ ଖେଳାଭୂଇଁ । ପ୍ରାଣୀମାନେ ତାଙ୍କର ଖେଳନା । ଶୁଭାଶୁଭ କର୍ମର ଆସକ୍ତି ଦ୍ୱାରା ଏହି ସଂସାରରୂପକ ଚକ୍ର ଚାଲିଅଛି ।

ଶ୍ରୀ ସୂତଜୀ କହିଲେ—"ଶୁଣନ୍ତୁ ! ରାଜା ପରୀକ୍ଷିତ ଆଦି ରାଜା ମହାରାଜା ସ୍ୱୟଂ-ଭୂମନୁଙ୍କର ବଂଶ ବିସ୍ତାର କଥା ପଚାରିଲେ । ମୋର ଗୁରୁ ଶୁକଦେବ ତାଙ୍କୁ ମନୁଙ୍କ ପୁତ୍ର

ପ୍ରିୟବ୍ରତ ଉତ୍ତାନପାଦଙ୍କ ବଂଶ ଏବଂ ବଂଶଭୁକ୍ତ ମୁଖ୍ୟ ତଥା ପ୍ରସିଦ୍ଧ ରାଜାମାନଙ୍କର ବର୍ଣ୍ଣନା କରିଥିଲେ । ପ୍ରିୟବ୍ରତଙ୍କ ବଂଶ ବର୍ଣ୍ଣନାଠାରୁ ଆରମ୍ଭ କରି ସେହି ବଂଶର ରାଜା ଭରତଙ୍କ ବଂଶଚରିତ ପର୍ଯ୍ୟନ୍ତ ଶୁଣାଇଥିଲେ । ମହାରାଜ ଉତ୍ତାନପାଦଙ୍କର ପୁତ୍ର ପରମ ଭାଗବତ ଧାର୍ମିକ ଧ୍ରୁବ ଅଟନ୍ତି । ସେ ମହାନ୍ ଭଗବଦ୍ ଭକ୍ତ ଥିଲେ । ସେ ଏ ପର୍ଯ୍ୟନ୍ତ ଧ୍ରୁବ-ଲୋକରେ ନିବାସ କରି ମହାରାଜ ଉତ୍ତାନପାଦଙ୍କର ଯଶବର୍ଦ୍ଧନ କରୁଛନ୍ତି । ତାଙ୍କ ପୁଣ୍ୟ ଓ ଯଶର ବର୍ଣ୍ଣନା ନାରଦ ପ୍ରଚେତାଙ୍କ ଯଜ୍ଞରେ କରିଥିଲେ । ଏହାପରେ ମହାରାଜ ପରୀକ୍ଷିତ ପଚାରିଲେ—ମହାରାଜ ! ଏହି ପ୍ରଚେତା କିଏ ଥିଲେ ? ଏହିକଥା ଶୁଣି ଧ୍ରୁବଙ୍କ ଠାରୁ ଆରମ୍ଭକରି ପ୍ରଚେତାଙ୍କ ପର୍ଯ୍ୟନ୍ତ ଉତ୍ତାନପାଦଙ୍କ ବଂଶ ବର୍ଣ୍ଣନା ଭଗବାନ ଶୁକଦେବ କରିଥିଲେ । ଶେଷରେ ସେ କହିଥିଲେ ଏହି ଦଶ ପ୍ରଚେତାଗଣ ସିନ୍ଧୁ ସମୁଦ୍ରର ସଙ୍ଗମ ସ୍ଥାନରେ ତପସ୍ୟା କରୁଥିବା ସମୟରେ ଭଗବାନଙ୍କ ଦର୍ଶନ-ଲାଭ କରିଥିଲେ । ଭଗବାନ ସେମାନଙ୍କୁ ଆଜ୍ଞା ପ୍ରଦାନ କରି କହିଲେ – କଣ୍ଡୁ ମୁନିଙ୍କ ଔରସରୁ ପ୍ରମ୍ଳୋଚା ନାମ୍ନୀ ଅପସରା ଗର୍ଭରୁ ଜାତହୋଇ ଥିବା କନ୍ୟାକୁ ଯିଏ କି ବୃକ୍ଷଙ୍କ ଦ୍ୱାରା ପାଳିତ ହୋଇ ବାର୍କ୍ଷୀ ନାମରେ ପରିଚିତ ତାର ପାଣି ତୁମେ ଗ୍ରହଣ କର । ଭଗବାନଙ୍କ ଆଦେଶରେ ସେମାନେ ଏହି କନ୍ୟାମାନଙ୍କୁ ବିବାହ କଲେ । ସେହି କନ୍ୟା ଗର୍ଭରୁ ପ୍ରଚେତାଙ୍କ ଦ୍ୱାରା ବ୍ରହ୍ମାଙ୍କ ପୁତ୍ର ପ୍ରଜାପତି ଦକ୍ଷ ଶିବଙ୍କ ଅଭିଶାପରେ ଆସି ଜନ୍ମଲାଭ କରିଥିଲେ । ଯାହାଙ୍କ ଦ୍ୱାରା ସାରା ସଂସାର ସୃଷ୍ଟି ହୋଇଥିଲା ଓ ସେ ସଂସାରରେ ଜୀବ ଭରିଦେଇ ଥିଲେ । ଏତିକି କହିସାରି ସେ ଏହି କଥା ପ୍ରସଙ୍ଗର ମୋଡ଼ ବଦଳାଇ ଦେଇଥିଲେ । ବର୍ତ୍ତମାନ ରାଜା ପରୀକ୍ଷିତ ସେହି ପ୍ରଶ୍ନ ଉଠାଇଲେ । ସେ ଶ୍ରୀ ଶୁକଦେବଙ୍କୁ କହିଲେ —"ଭଗବାନ ! ଆପଣ କହିଥିଲେ ଯେ, ଋଷିସ ଯିଏ କି ବ୍ରହ୍ମାଙ୍କ ପୁତ୍ର ଦକ୍ଷ ସେ ଦେବତା, ଅସୁର, ମନୁଷ୍ୟ, ସର୍ପ, ମୃଗ, ପଶୁ, ପକ୍ଷୀ ଆଦି ସୃଷ୍ଟି କରିଥିଲେ । ଏଣୁ ମୁଁ ଏହି ସୃଷ୍ଟିର ବିସ୍ତାର ସମ୍ପର୍କରେ ଶୁଣିବାକୁ ଇଚ୍ଛା କରୁଅଛି । ଆପଣ ପ୍ରଥମେ ଏ ବିଷୟରେ କେବଳ ସାମାନ୍ୟ ଇଙ୍ଗିତ ପ୍ରଦାନ କରିଥିଲେ । ବର୍ତ୍ତମାନ ଏହି ବିଷୟକୁ ବିସ୍ତାରିତ କରି କହନ୍ତୁ ।"

ଏକଥା ଶୁଣି ହସି କରି ଭଗବାନ ଶୁକ କହିଲେ - ରାଜା ! ତୁମେ ବାରମ୍ବାର ସୃଷ୍ଟି ବିଷୟ କାହିଁକି ପଚାରୁଛ ? ଏହି ନିରସ ପ୍ରଶ୍ନର 'ଉତ୍ତର ଶୁଣି ଆପଣ କଣ' ଆନନ୍ଦ ପାଇବେ ?"

ଏ କଥା ଶୁଣି ରାଜା ପରୀକ୍ଷିତ କହିଲେ "ଭଗବାନ ! ନିରସ ହେଉ ବା ସରସ ହେଉ, ଶୋଇବା, ବସିବା, ଉଠିବା ଆଦି ଆଠ ପ୍ରହର । ଏହି ସୃଷ୍ଟି ମୋ ହୃଦୟରେ ନୃତ୍ୟ କରେ । ଏହି ସୃଷ୍ଟି ଚକ୍ରଭାବରେ ଆମକୁ ଘୁରାଉଛି । ଏହାର ମୂଳ କାରଣ ଜାଣି ପାରିଲେ ମୁଁ ଏହି ଚକ୍ରରୁ ଖସି ଆସିବି । ପୁଣି ଭଗବାନ ସୁନ୍ଦର

ଚତ୍ତ୍ୱାକର୍ଷକ ବାଳକଟିଏ ଦେଖିଲେ ତାର ମାତା ସମ୍ପର୍କରେ ଜାଣିବାପାଇଁ ଇଚ୍ଛା ପ୍ରକାଶ ପାଇବା ସ୍ୱଭାବକ । ଆମର ଏହି ଚନ୍ଦ୍ର ବଚନ ରଙ୍ଗମୟ ହୃଦୟ ଆମକୁ ଆକର୍ଷଣ କରୁଥିବା ସୃଷ୍ଟି ସ୍ୱତଃ ନିଜଠାରୁ ଉତ୍ପନ୍ନ ନୁହେଁ । ଭଗବାନ ଶକ୍ତି ଦ୍ୱାରା ସେ ଉତ୍ପନ୍ନ-ଲାଭ କରି ବଢ଼ିଚାଲିଛି । ସେହି ଶକ୍ତିର ପରିଚୟ ମିଳିଗଲେ ଶକ୍ତିମାନଙ୍କ ପରିଚୟ ମିଳିଯିବ । ଶ୍ରୀହରି ତ ସର୍ବଶକ୍ତିମାନ୍ ଅଟନ୍ତି । ଏଣୁ ମୋର ପ୍ରଶ୍ନ ଏହି ମାଙ୍କଡ଼ ପଥର ହାଡ଼ ମାଂସ ଦେହଧାରୀ ମନୁଷ୍ୟ ସମ୍ବନ୍ଧରେ ନୁହେଁ, ମୁଁ କେବଳ ସୃଷ୍ଟି ପ୍ରଶ୍ନ ଓ ସୃଷ୍ଟିମାନଙ୍କ ବିଷୟରେ ପଚାରୁଛି ।''

ରାଜାଙ୍କର ଏହି କଥା ଶୁଣି ଭଗବାନ ଶୁକ ହସିଦେଇ କହିଲେ—''ରାଜା ! ମୁଁ ସବୁ ଜାଣିପାରୁଛି ଆପଣ କୃଷ୍ଣକଥା ସମ୍ବନ୍ଧୀୟ ପ୍ରଶ୍ନ ବ୍ୟତୀତ ଅନ୍ୟ କୌଣସି ପ୍ରଶ୍ନ ପଚାରିବାକୁ ଇଚ୍ଛା କରୁନାହାନ୍ତି । ଠିକ୍ ଅଛି, ଶୁଣନ୍ତୁ, ମୁଁ ଆପଣଙ୍କୁ ସ୍ୱୟଂଭୂ ସୃଷ୍ଟି-ତତ୍ତ୍ୱ ସଂକ୍ଷେପରେ କହୁଛି । ମହାରାଜ ବିସ୍ତୃତ ଭାବରେ କହିଲେ – ଏତେବଡ଼ ସୃଷ୍ଟିତତ୍ତ୍ୱ ବ୍ରହ୍ମାଙ୍କ ଆୟୁକାଳରେ ମଧ୍ୟ ଶେଷ ହେବ ନାହିଁ । ପ୍ରାଚୀନ କାଳରେ ଯେପରି ମହାରାଜ ! ପ୍ରାଚୀନବର୍ହି ନାରଦଙ୍କୁ ପୁରଞ୍ଜନ ପୁରଞ୍ଜନୀ ଉପାଖ୍ୟାନ ଶୁଣାଇ ଜ୍ଞାନ ପ୍ରଦାନ କରିଥିଲେ ଓ ତାଙ୍କର ଦଶ ପ୍ରଚେତା ପୁତ୍ର ଜାତ ହୋଇଥିଲ । ପିତାଙ୍କ ଆଦେଶରେ ଏହି ଦଶଜଣ ସମୁଦ୍ର ଜଳରେ ପଶି ତପସ୍ୟା କରୁଥିଲେ । ସେମାନଙ୍କ ତପସ୍ୟାରେ ଭଗବାନ ମୁଗ୍ଧ ହୋଇ ବାର୍କ୍ଷୀ କନ୍ୟାଙ୍କୁ ବିବାହ କରିବା ନିମନ୍ତେ ଆଦେଶ ଦେଇଥିଲେ । ଯେତେବେଳେ ସେମାନେ ସମୁଦ୍ର ଜଳରୁ ବାହାରିକରି ଆସିଲେ, ସେତେବେଳେ ଦେଖିବାକୁ ପାଇଲେ ସମ୍ପୂର୍ଣ୍ଣ ପୃଥିବୀ କେବଳ ଅଝାଡ଼ ଜଙ୍ଗଲ ହୋଇ ରହିଛି । ବୃକ୍ଷ ବ୍ୟତୀତ କୌଣସି ଜିନିଷ ଏହି ପୃଥିବୀରେ ନାହିଁ । ଏଣୁ ସେମାନଙ୍କ ମନରେ କ୍ରୋଧ ଜାତ ହେଲା । ନିଜ ତପସ୍ୟା ବଳରେ ଅଗ୍ନି ଉତ୍ପନ୍ନ କରି ସମସ୍ତ ବୃକ୍ଷରାଜିଙ୍କୁ ଜାଳି ପୋଡ଼ି ପାଉଁଶ କରିଦେଲେ । ବହୁତ ବୃକ୍ଷ ଜଳିଗଲା ପୃଥିବୀ ପୃଷ୍ଠରୁ ବହୁତ ବୃକ୍ଷ ଜଳି ନଷ୍ଟ ହୋଇଯିବାରୁ ବାସ କରିବା ନିମନ୍ତେ ଯୋଗ୍ୟ ବିବେଚିତ ହେଲା । କିନ୍ତୁ ପ୍ରଚେତା ସମସ୍ତ ବୃକ୍ଷରାଶିଙ୍କୁ ନଷ୍ଟ କରି ମଧ୍ୟ କେତେକ ବୃକ୍ଷ ସୃଷ୍ଟି କରିଥିଲେ । ତାଙ୍କର ଏପରି ହଠଯୋଗ ଦର୍ଶନ ଲାଭ କରି କେଜେବାପା ବ୍ରହ୍ମା ଧଳାପଗଡ଼ି ବାନ୍ଧି, ଧଳା ଫୁଲମାଳା ପକାଇ, ଧଳା ହଂସରେ ବସି ପ୍ରଚେତାଙ୍କ ନିକଟରେ ଆସି ପହଞ୍ଚି କହିଲେ – ''ଆରେ ରାଜକୁମାରଗଣ ! ତୁମେ-ମାନେ ଏଠାରେ କାହିଁକି ଏପରି ଉପଦ୍ରବ କରୁଛ ? ଛି ଛି ଏପରି କ୍ରୋଧ କରନାହିଁ । ଭାଇମାନେ ! ତୁମେମାନେ ପ୍ରଜାପତି ସୃଷ୍ଟିର ଭର୍ତ୍ତା ଅଟ । ଯେଉଁମାନେ ଭରଣ ପୋଷଣ କରନ୍ତି ତାଙ୍କୁହିଁ ଭର୍ତ୍ତା କୁହାଯାଏ । ଯିଏ ସଙ୍କଟରୁ ଉଦ୍ଧାର କରି ପାଳନ କରେ ତାକୁ ପତି କୁହାଯାଏ, ଯେପରି ପିତାମାତା ବାଳକର ପତି ଅଟନ୍ତି । ପିଲାକୁ ସେମାନେ ଦେଖା-ଶୁଣା କରନ୍ତି ମାତା କଥା ବାହିଁ[illegible] ନ କରିଥିଲେ ମଧ୍ୟ ତାର ଦୃଷ୍ଟି ପିଲାମାନଙ୍କ

ଉପରେ ରହିଥାଏ । ତାର ଗଡବଧି, ପ୍ରତିଧାନ ତାର ପରମ କର୍ତ୍ତବ୍ୟ । ଯେତେବେଳ ପର୍ଯ୍ୟନ୍ତ ପିଲା ହସ ଖୁସିରେ ଖେଳ ବୁଲୁଥାଏ ସେ ପର୍ଯ୍ୟନ୍ତ ମାତା କିଛି କହେନାହିଁ । ଯେତେବେଳେ ପିଲା ସାପ, ବିଛା, ଶସ୍ତ୍ର, ଅଗ୍ନି ଆଦି ସ୍ପର୍ଶ ନ କରି ଏସବୁ ପାଖରେ ଦୌଡ଼ିକରି ପହଞ୍ଚିଯାଏ ମା ଆସି ତାକୁ ରକ୍ଷାକରି କୋଳରେ ଶୋଇ ଶାନ୍ତ୍ୱନା ଦେଇ ଆଦର କରି ଦୁଧ ପିଇବାକୁ ଦିଏ । ଏହିପରି ସ୍ତ୍ରୀର ରକ୍ଷକ ସ୍ୱାମୀ ଅଟେ । ସେ ଘରୁ ବାହାରକୁ ଯେଉଁଆଡ଼େ ଗଲେ ମଧ୍ୟ ତାର ମନରେ ସ୍ତ୍ରୀ କଥା ସବୁବେଳେ ଘାରିହୁଏ । ତାର ଭରଣ ପୋଷଣ, ଅନ୍ନ ବସ୍ତ୍ର, ଚୁଡ଼ି ସମସ୍ତ କଥାର ଚିନ୍ତା ସ୍ୱାମୀକୁହିଁ କରିବାକୁ ପଡ଼େ । ବାବାଜୀ ବୋଲି ଆମେ ଯାହାଙ୍କୁ କହୁଚୁ ସେ ହେଉଛନ୍ତି ସମସ୍ତଙ୍କ ବାପାର ବାପା । ଯେତେବେଳେ ଘର ଛାଡ଼ି ଭିକ୍ଷାମାଗିବା କଥାରମ୍ଭ କରିଦିଏ, ତାଙ୍କୁ ଆମେ ବାବା ବୋଲି ସମ୍ବୋଧନ କରୁ । ଆମର ବାପା ବାବା କହନ୍ତି । ଜେଜେବାପା ମଧ୍ୟ ବାବା ବୋଲି କହନ୍ତି । ଏଣୁ ଏହି ଜଗତରେ ବାବାମାନଙ୍କର ସ୍ୱାମୀ ଗୃହସ୍ଥମାନେ ଅଟନ୍ତି । ସକାଳ ହୋଇଗଲେ ବାବାଙ୍କର ଗୃହସ୍ଥର କଥା ମନେପଡ଼େ । ଯେଉଁଠାକୁ ଗଲେ କି ତାଙ୍କୁ ଭିକ୍ଷା ମିଳିବ ବହୁ ବଡ଼ ବଡ଼ ସାଧୁସେବୀ ଲୋକ ଅଛନ୍ତି ଯେଉଁ ଗୃହସ୍ଥମାନଙ୍କ ଦ୍ୱାରାହିଁ ସାଧୁମାନଙ୍କର ଭରଣ ପୋଷଣ ହୋଇଥାଏ, ଏଣୁ ଗୃହସ୍ଥମାନେ ସମସ୍ତ ଆଶ୍ରମ-ଗୁଡ଼ିକର ଭର୍ତ୍ତା ପାଳନକର୍ତ୍ତା ଅଟନ୍ତି । ଯିଏ ଅଜ୍ଞାନୀ ତାର ସ୍ୱାମୀ ଜ୍ଞାନୀ ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନଙ୍କୁ ସଙ୍ଗରେ ଧରି ଜ୍ଞାନୀ ଗୁରୁଙ୍କ ନିକଟକୁ ଆସେ । ଗୁରୁ ସ୍ନେହ କରି ବେତମାରି ନାଚ କରାନ୍ତି । କେତେବେଳେ ବି ଆଖି ଦେଖାଇ ଧମକ ଦିଅନ୍ତି । କେତେବେଳେ କୌଣସି କାମ କରିବାକୁ ଆଦେଶ ଦିଅନ୍ତି ତ କେତେବେଳେ କୌଣସି କାମ କରିବାକୁ ନିଷେଧ ମଧ୍ୟ କରନ୍ତି । ଏହି କାମ କେବେ କରିବା ଉଚିତ ନୁହେଁ । ଏକଥା ପିଲାମାନେ ଶିଖନ୍ତି । ଏହିପରି ସମସ୍ତ ପ୍ରଜାମାନଙ୍କର ପ୍ରଭୁ ରାଜା ଅଟନ୍ତି । ସମସ୍ତଙ୍କୁ ରକ୍ଷାକରିବା ରାଜାଙ୍କର କର୍ତ୍ତବ୍ୟ । ଏହି ବୃକ୍ଷମାନେ ମଧ୍ୟ ତୁମର ପ୍ରଜା ଅଟନ୍ତି । ସେମାନଙ୍କୁ ପାଳନ ଓ ରକ୍ଷାକରିବା ତୁମର କର୍ତ୍ତବ୍ୟ । ଏମାନଙ୍କୁ ତୁମେ ଅକାରଣରେ କାହିଁକି ଦହନ କରୁଛ ତୁମେମାନେ ଏତେ ତପସ୍ୟା କରି ମଧ୍ୟ ପିଲାଙ୍କଭଳି ହେଉଅଛ । ଦେଖନ୍ତୁଇ ! ସର୍ବାନ୍ତର୍ଯ୍ୟାମୀ ଭଗବାନ ସମ୍ପୂର୍ଣ୍ଣ ସୃଷ୍ଟିରେ ବିଚରଣ କରନ୍ତି ଏଣୁ ସମସ୍ତ ପଦାର୍ଥ ଭଗବାନଙ୍କ ନିବାସ ସ୍ଥାନ ଭାବି ସମସ୍ତଙ୍କର ପୂଜା କର । ଏହା କରିବାଦ୍ୱାରା ଭଗବାନ ସନ୍ତୁଷ୍ଟ ହେବେ । ଦେଖ ଯେଉଁ ପୁରୁଷ ନିଜ ହୃଦୟରୁ ଜାତ ହେଉଥିବା କ୍ରୋଧକୁ ବାହାରକରି ନିଜକୁ ନିଜେ ଶାନ୍ତ କର-ଥାଏ ସେ ତିନିଗୁଣକୁ ଜିତିପାରେ । ଯିଏ କାମ, କ୍ରୋଧ ଓ ଲୋଭର ବଶୀଭୂତ ହୋଇ-ଯାଏ ସେ ଏହି ତ୍ରିଗୁଣମୟ ସଂସାରରେ କଷ୍ଟପାଏ । ଏଣୁ ଏହି ବୃକ୍ଷମାନଙ୍କ ଉପରେ କ୍ରୋଧ କରିବା ତ୍ୟାଗ କର । ଏହାଙ୍କର ବାର୍କ୍ଷି ନାମରେ ଏକ ପାଳିତାକନ୍ୟା ଅଛି ତାକୁ ବିବାହ କର । ବିବାହ କରିସାରିବା ପରେ ଏହି ବୃକ୍ଷମାନେ ତୁମର ଶ୍ୱଶୁର

ହୋଇଯିବେ । ପିତାଙ୍କ ସମାନ ଗୁରୁସ୍ଥାନୀୟ ହୋଇଯିବେ । ତାପରେ ତୁମେ ତାଙ୍କୁ ଆଦର ସତ୍କାର କରିବ ।"

ଲୋକ ପିତାମହ ବୃଦ୍ଧ ବ୍ରହ୍ମାଙ୍କର କଥାରେ ପ୍ରଚେତା ମୁଣ୍ଡ ହଲାଇ ସ୍ୱୀକାର କଲେ । ଏଥିରେ ବ୍ରହ୍ମା ବଡ଼ ଆନନ୍ଦିତ ହେଲେ ଓ ସେମାନଙ୍କ ମଥା ଓ ପିଠିରେ ହାତ ଆଉଁସି ଦେଇ ନିଜ ପୁରକୁ ଚାଲିଗଲେ । ବିବାହ କାର୍ଯ୍ୟ ସରିଲା । ତାଙ୍କର ଗର୍ଭରୁ ପୁରାଣର ବ୍ରହ୍ମପୁତ୍ର ଦକ୍ଷ ଋଷି ସ୍ୱ ଭାବରେ ଜନ୍ମଗ୍ରହଣ କଲେ । ଯେଉଁଠାରେ ଉତ୍ପନ୍ନ ହେଲେ ମଧ୍ୟ ସେ ସୃଷ୍ଟି ବର୍ଦ୍ଧନ ନିମନ୍ତେ ଚିନ୍ତାରେ ନିମଗ୍ନ ହେଲେ । ସୃଷ୍ଟି ବୃଦ୍ଧି ନିମନ୍ତେ ବ୍ରହ୍ମା ତାଙ୍କୁ ଜନ୍ମହେବା ପାଇଁ ଆଦେଶ ପ୍ରଦାନ କରିଥିଲେ । ଏଣୁ ସେ ପୂର୍ବ ଇଚ୍ଛା ଅନୁଯାୟୀ ସୃଷ୍ଟି ବୃଦ୍ଧି ନିମନ୍ତେ ତତ୍ପର ହୋଇ ଉଠିଲେ । ସେ ପ୍ରଥମେ ମନ ମଧ୍ୟରୁ ଦେବତା, ଅସୁର, ମନୁଷ୍ୟ ଆଦି ସୃଷ୍ଟି କଲେ । ତାପରେ ଜଳଚର, ସ୍ଥଳଚର ଜୀବଜନ୍ତୁମାନଙ୍କର ସୃଷ୍ଟି କଲେ । କିନ୍ତୁ ପ୍ରଜାବର୍ଗମାନଙ୍କର ବୃଦ୍ଧି ଘଟିଲା ନାହିଁ ।"

ଶ୍ରୀଶୁକଦେବ କହିଲେ—ହେ ରାଜନ ! ତାଙ୍କ ଇଚ୍ଛାନୁସାରେ ପ୍ରଜାଶକ୍ତି ବୃଦ୍ଧି ହେବାରୁ ସେ ନିଶ୍ଚିତ ଭାବରେ ତପସ୍ୟା ଦ୍ୱାରା ଶକ୍ତିପ୍ରାପ୍ତ ହୋଇ ଏହାର ବୃଦ୍ଧି ନିମନ୍ତେ ତତ୍ପର ହୋଇଥିବେ ।" ଏହା ମନରେ ଭାବି ସେ ବିନ୍ଧ୍ୟାଚଳ ପାହାଡ଼ ତଟଦେଶକୁ ଯାଇ ପରମ ପବିତ୍ର ଅଘମର୍ଷଣ ନାମକ ତୀର୍ଥ ସ୍ଥାନରେ ଘୋର ତପସ୍ୟାରତ ହେଲେ କିଛିଦିନ ପର୍ଯ୍ୟନ୍ତ ସେ ଫୁଲ ଫଳ ଖାଇ ଦିନ ଅତିବାହିତ କଲେ । କିଛିଦିନ ପୁଣି ଜଳ ପାନକରି, କିଛିଦିନ ବାୟୁ ପାନକରି, ସେ ତପସ୍ୟାରତ ହେଲେ । ସେ ତପସ୍ୟାରେ ଦୃଢ଼ ରହି କମଳ ନୟନ ଭଗବାନ ବାସୁଦେବଙ୍କୁ ହଂସଗୁହ୍ୟ ନାମକ ସ୍ତୋତ୍ରଦ୍ୱାରା ସ୍ତୁତି କରିବାକୁ ଲାଗିଲେ ।"

ଏହାପରେ ଶୌନକ ପଚାରିଲେ—"ସୂତ ମହାଭାଗ ! ହଂସଗୁହ୍ୟ ନାମରେ ସେହି ସ୍ତୋତ୍ରଟି କ'ଣ ? ତାହାର ବର୍ଣ୍ଣନା ବ୍ୟାଖ୍ୟା ସହିତ ମୋତେ ଶୁଣାଇବା ହୁଅନ୍ତୁ ।"

ଏହାପରେ ସୂତ ଉତ୍ତର ଦେଲେ—ମହାଭାଗ ! ମୁଁ ଏହି ସବୁ ସ୍ତୋତ୍ର ଅଲଗା ସ୍ଥାନରେ ଏକାଠି କରି ବ୍ୟାଖ୍ୟା କରିବି । ବର୍ତ୍ତମାନ ଆପଣ ଆଗକୁ କୁହାଯାଉଥିବା ଘଟଣା ଶ୍ରବଣ କରନ୍ତୁ ।"

ଏହା ଶୁଣିକରି ଶୌନକ କହିଲେ—"ଠିକ୍ ଅଛି, ଆପଣଙ୍କର ଯାହା ଇଚ୍ଛା । ହେଲେ ସଂକ୍ଷେପରେ କିଛି ସାରକଥା ଶୁଣାଇ ଦିଅନ୍ତୁ । ତା ପରେ କ'ଣ ହେଲା ?"

ସୂତ କହିଲେ—"ଟିକିଏ ଅପେକ୍ଷା କରନ୍ତୁ । ସବୁ କଥା ମୁଁ ଶୁଣାଇ ଦେବ । ହଂସ ଗୁହ୍ୟ ସ୍ତୋତ୍ର ମନେପଡ଼ିଗଲେ ମୋର ଭଗବାନଙ୍କ କଥା ସ୍ମରଣ ହୋଇ ଯାଉଅଛି । ଟିକିଏ ପରେ ଧ୍ୟାନ ଦେଇ ସେହି କଥା କହିବି ।"

—ଛପ୍ପୟ—

କରେଂ ପ୍ରଜାପତି କଠିନ ତପସ୍ୟା ତୀର୍ଥ ବାସ କରି ।
ପ୍ରଜା ସୃଷ୍ଟି କେ ହେତୁ ନାମ ଲେଂ ରାମ କୃଷ୍ଣ ହରି ॥
ହଂସଗୁହ୍ୟ କୋ ପାଠ କରେଂ ତପ ନିୟମନ ସାଧେଂ ॥
ଗୁଣ ଅଭିବ୍ୟଂଜକ ନାମ ଲେଇଁ ଶ୍ରୀହରି ଆରାଧେଂ ॥
ଧର୍ମ ଅର୍ଥ ଅରୁ, ମୋକ୍ଷ ବା, ହୋଇ ବାସନା କାମକୀ ।
ସବ ଇଚ୍ଛା ପୁରନ କରେଂ, ଶରନ ଗହେଂ କେ ରାମକୀ ॥



# ପ୍ରଜାପତି ଦକ୍ଷଙ୍କର ଭଗବଦ୍ଦର୍ଶନ

ଇତି ସ୍ତୁତଃ ସଂସ୍ତୁବତଃ ସ ତସ୍ମିନ୍ନ ଘମର୍ଷଣୋ ।
ଆବିର୍ବଭୂବ କୁରୁଶ୍ରେଷ୍ଠ ଭଗବାନ ଭକ୍ତବତ୍ସଳଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୪ର୍ଥ ଅଧ୍ୟାୟ ॥ ୩୫-ଶ୍ଳୋକ ]

## ଛପ୍‌ପଦ୍ୟ

ଦକ୍ଷ ଭାବକୁଁ ସମୁଝି ଭାଗଗ୍ରାହୀ ବନଓ୍ୱାରୀ ।
ପ୍ରକଟ ଭୁରତ ତହଁ ଭୟେ ବସ୍ତୁ ପୀତାମ୍ବର ଧାରୀ ॥
ମୁକୁଟ କଣ୍ଠକ କର ଅଙ୍ଗୁଳୀୟ କଙ୍କଣ ନୂପୁର ପଗ ।
ତ୍ରିଭୁବନ ମୋହନ ରୂପ ନିରଖି ମୋହିତ ହୋଓ୍ୱେ ଜଗ ॥
ପରେ ଲକୁଟ ସମ ଭୂମି ମହଁ, ଦକ୍ଷ ନିରଖି ଘନଶ୍ୟାମକୁଁ ।
ବାର ବାର ନିରଖେଂ ମୁଦିତ, ଶ୍ରୀହରି ଶୋଭା ଧାମକୁଁ ॥

ଶ୍ରୀ ଭଗବାନ କଳ୍ପଦ୍ରୁମ ସହ ସମାନ ଅଟନ୍ତି, ତାକୁ ଯିଏ ଯେଉଁଭାବରେ ଭଜନ କରେ, ତାକୁ ସେ ସେହି ଭାବରେ ଫଳପ୍ରଦାନ କରନ୍ତି । ଯିଏ ତାଙ୍କୁ ଅର୍ଥ ପାଇବା ଲାଳସାରେ ଭଜନକରେ ସେ ଅର୍ଥ ଲାଭକରେ । ଯିଏ ଧର୍ମ ଭାବନା ବୃଦ୍ଧିନିମନ୍ତେ ପ୍ରାର୍ଥନା କରେ ତାର ସେ ଧର୍ମବୃଦ୍ଧି କରିଥାଆନ୍ତି । ଯିଏ କାମନାର ଫଳ ପାଇବା ନିମନ୍ତେ ଆରାଧନାକରେ ତାକୁ ସେ କାମ ସୁଖ ପ୍ରଦାନ କରନ୍ତି ଏବଂ ଯିଏ ମୋକ୍ଷ କାମନାକରି ତାଙ୍କୁ ଆରାଧନା କରେ ତାକୁ ସେ ମୋକ୍ଷପ୍ରଦାନ କରନ୍ତି । ସେହି ସର୍ବେଶ୍ୱର କୌଣସି ବସ୍ତୁଠାରୁ କମ୍ ନୁହନ୍ତି । ସେ କାମନା ଇଚ୍ଛାକରୁଥିବା ବ୍ୟକ୍ତି ଉପରେ ବିରକ୍ତ ହୁଅନ୍ତି ନାହିଁ କାରଣ ସେ ଲୋକ କାମନା ଭାବ ରଖି ପ୍ରଭୁଙ୍କର ଆଶ୍ରା ଗ୍ରହଣ କରିଥାଏ । ଏହିପରି ସେ ସକାମୀ ଭକ୍ତ ନିକଟରେ ଆବିର୍ଭାବ ହୋଇ ତା'ର ମନୋବାଞ୍ଛା ପୂରଣ କରନ୍ତି । ପୁଣି ଯେଉଁ ଲୋକ ସମସ୍ତ କାର୍ଯ୍ୟକୁ ଶ୍ରୀକୃଷ୍ଣଙ୍କ ଆଜ୍ଞା ଭାବନାକରି କରିଯାଏ ଏହି ନିଷ୍କାମୀ ଭକ୍ତର ଇଚ୍ଛା ଭଗବତ୍ ଇଚ୍ଛା ଭାବରେ ସୂଚୀତହୁଏ । ଏହାଦ୍ୱାରା ଭଗବାନଙ୍କ କାର୍ଯ୍ୟ ମଧ୍ୟ ସାଧିତ ହୋଇଯାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ପ୍ରଚେତାଙ୍କ ପୁତ୍ର ଦକ୍ଷ ପ୍ରଜାବୃଦ୍ଧି ଉଦ୍ଦେଶ୍ୟରେ ଅଘମର୍ଷଣ ତୀର୍ଥକୁ ଯାଇ ତପସ୍ୟା ଆରମ୍ଭ କଲେ । ସେଠାରେ ସେ ବିଧି ନିୟମ ଆଚରଣ ପୂର୍ବକ ହଂସଗୁହ୍ୟ ସ୍ତୋତ୍ର ବାରମ୍ବାର ଜପ କରିବାକୁ ଲାଗିଲେ । ସେ ଭଗବାନଙ୍କୁ ପ୍ରାର୍ଥନା କରି କହିଲେ —ହେପ୍ରଭୁ ! ଆପଣଙ୍କ ମହିମା ଅପାର । ଆପଣଙ୍କୁ ମୋର କୋଟି କୋଟି ନମସ୍କାର । ଯାହା କିଛି ହେଉଛି, ହୋଇଯାଇଛି ଓ ହେବାପାଇଁ ବାକି ଅଛି, ସେ ସମସ୍ତହିଁ ବ୍ରହ୍ମ । ସେହି ସର୍ବବ୍ୟାପକ ଆପଣଙ୍କୁ ମୋର ପ୍ରଣାମ । ପ୍ରକୃତି, ନାମ, ରୂପଠାରୁ ସ୍ୱତନ୍ତ୍ର ଆପଣ, ତଥାପି ଆପଣଙ୍କ ଚରଣ କମଳକୁ ପୂଜା କରୁଥିବା ଭକ୍ତ ପ୍ରତି ଆପଣ କୃପା ଦାୟକ ଦିବ୍ୟଜନ୍ମ, ଦିବ୍ୟ କର୍ମ ଓ ଦିବ୍ୟନାମଧାରୀ ଆପଣ ! ପରମେଶ୍ୱର ପ୍ରଭୁ ! ପାମର ପ୍ରତି କୃପାଦୃଷ୍ଟି ପ୍ରଦାନ କରନ୍ତୁ । ଯେଉଁ ଅନ୍ତର୍ଯାମୀ ପୁରୁଷ ଅନନ୍ତ ପ୍ରାକୃତିକ ଜ୍ଞାନ ମାର୍ଗଦ୍ୱାରା ମନୁଷ୍ୟର ଭାବଗୁଣ ଅନୁସାରେ ଭିନ୍ନ ଭିନ୍ନ ଦେବତା ଇଷ୍ଟ ପ୍ରତିମା, ବିଗ୍ରହରୂପରେ ଦୃଶ୍ୟମାନ ହୋଇଥାଆନ୍ତି, ସେହି ପରମ ପ୍ରଭୁ ମୋର ମନସ୍କାମନା ପୂରଣ କରନ୍ତୁ ।"

ଏହିପରି ଦକ୍ଷଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ଗରୁଡ଼ଧ୍ୱଜ ଭଗବାନ ଅଷ୍ଟଭୁଜ ରୂପରେ ପ୍ରଜାପତି ଦକ୍ଷଙ୍କ ସମ୍ମୁଖରେ ଆସି ପ୍ରତୀୟମାନ ହେଲେ । ଏହି ସମୟରେ ତାଙ୍କର ରୂପ ଅତ୍ୟନ୍ତ ଚିତ୍ତାକର୍ଷକ ଦେଖାଯାଉଥିଲା, ସେ ତାଙ୍କର ଶ୍ରୀଚରଣକୁ ଗରୁଡ଼ କାନ୍ଧ ଉପରେ ରଖିଥିଲେ । ଜାନୁପର୍ଯ୍ୟନ୍ତ ଲମ୍ବା ସର୍ପ ଶରୀର ସମାନ ଆଠଟି ଭୁଜରେ ସେ ଶଙ୍ଖ, ଚକ୍ର, ଢାଲ ତରବାରୀ, ଧନୁ, ବାଣ, ଗଦା ଆଦି ଆଠଟି ଅସ୍ତ୍ର ଧାରଣ କରିଥିଲେ । ତାଙ୍କର ସମ୍ପୂର୍ଣ୍ଣ ଶୋଭାମୟ ଶରୀର ସଜଳ ଜଳଧର ପରି ଶ୍ୟାମ ବର୍ଣ୍ଣ ଦେଖା ଯାଉଥିଲା । ତାଙ୍କ ଉପରେ ଆକାଶରୁ ବିଦ୍ୟୁତ ସମ ପୀତାମ୍ବର ଶୋଭା ପାଉଥିଲା । ଯେପରି ପୀତବସନଧାରୀ ନାୟକ ତାର ପୀତବସନ-ଧାରୀ ନାୟିକା ସହ ସୁନ୍ଦର ଦେଖାଯାଏ । ପୂର୍ଣ୍ଣଚନ୍ଦ୍ର ପରି ତାଙ୍କର ମନୋହର ମୁଖ-ମଣ୍ଡଳ ଶୋଭାପାଉଥିଲା । ନେତ୍ରଦ୍ୱୟ ଶୀତଳ, ଉତ୍ଫୁଲ୍ଲ କମଳ ପରି ପ୍ରସନ୍ନ, ମଧୁମୟ ପଦ୍ମଗନ୍ଧଯୁକ୍ତ ସୁନ୍ଦର ଦେଖାଯାଉଥିଲା । ସେ କିରୀଟ ମୁକୁଟ, କଟୀଟ, ମକରାକୃତି, କୁଣ୍ଡଳ କଙ୍କଣ, ନୁପୁର ଏବଂ ଅଙ୍ଗ ଆଭୂଷଣ ଦ୍ୱାରା ଶୋଭା ପାଉଥିଲେ । ତାଙ୍କର ରୂପ ଅବର୍ଣ୍ଣ-ନୀୟ । ଅସ୍ତ୍ର ଏବଂ ଆୟୁଧ ଧାରଣ କରି, ନାରଦ, ନନ୍ଦ, ସୁନନ୍ଦ, ଆଦି ପ୍ରିୟ ପାର୍ଷଦ ଏବଂ ସିଦ୍ଧଚାରଣ ଗନ୍ଧର୍ବଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଅପ୍ରାକୃତିକ ଦ୍ୱିତୀୟ ସମ୍ରାଟ ପରି ସେ ଦିଶୁଥିଲେ ।

ହଠାତ୍ ସମ୍ମୁଖରେ ଭଗବାନଙ୍କର ଏହି ତ୍ରିଭୁବନ ମୋହନ ରୂପ ଦେଖି ପ୍ରଜାପତି ଦକ୍ଷ ହତବାକ୍ୟ ହୋଇ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ । ଭଗବାନଙ୍କୁ ହାତଯୋଡ଼ି କେବଳ ଦର୍ଶନ କରିବାକୁ ଲାଗିଲେ । ସେ ଭଗବାନଙ୍କୁ ନିଜ ସମ୍ମୁଖରେ

ପାଇ ବିଶ୍ୱାସ କରିପାରିଲେ ନାହିଁ । ସେ ଆଖି ମଳି ମଳି ଭଗବାନଙ୍କର "ତ୍ରିଭୁବନ ମୋହନ" ରୂପ ବାରମ୍ବାର ଦର୍ଶନ ଲାଭ କରିବାକୁ ଲାଗିଲେ । ପ୍ରେମ ସହକାରେ ହାର୍ଦ୍ଦିକ ତଥା ମାନସିକ କୃତଜ୍ଞତା ପ୍ରଦାନ କରି ଭୂଇଁରେ ଲୋଟିଗଲେ । ରାଜା ! ଏହି ସମୟରେ ଦକ୍ଷଙ୍କ ଅବସ୍ଥା ସମ୍ପର୍କରେ କି ଭଳି ବର୍ଣ୍ଣନା କରିବି ? ଏହା ଅବର୍ଣ୍ଣନୀୟ ବିଷୟ ଅଟେ । କଥାରେ ତାହା କୁହାଯାଇ ପାରିବ ନାହିଁ । ଭାଷା ବାହାରି ପାରୁନାହିଁ । ଏହି ସବୁ କଥାକୁ ବ୍ୟକ୍ତ କରିବା ନିମନ୍ତେ ଭାବ ମଧ୍ୟ ଅସମର୍ଥ । ଯେପରି ଗନ୍ଧମାଦନ ପାହାଡ଼ ଉପରୁ ଭଗବତୀ ଅଳକନନ୍ଦାଠାରୁ ଏକ ସଙ୍ଗରେ କଳ କଳ ନାଦକରି ଅନେକ ଝରଣା ବାହାରି ବିଭିନ୍ନ ଆଡ଼େ ଗଡ଼ିଯାଇ ପୁଣି ଏକାଠି ହୋଇ ଦ୍ରୁତ ବେଗରେ ବହିଯାଆନ୍ତି ସେହିପରି ପରମାନନ୍ଦ ବେଗରେ ମନ ଓ ଇନ୍ଦ୍ରିୟମାନଙ୍କର ଗତିରୁଦ୍ଧ ହୋଇ ସ୍ତୁତି କରିବାପାଇଁ ଇଚ୍ଛା ଥିଲେ ମଧ୍ୟ ସ୍ତୁତି କରି ହେଉନାହିଁ, ବାଣୀ ଗଦ୍‌ଗଦ୍ ହୋଇଯାଉଛି । ଚେଷ୍ଟା କଲେ ମଧ୍ୟ ଅତିରିକ୍ତ ପ୍ରେମଭକ୍ତି ଯୋଗୁ କିଛି କହି ହେଉନାହିଁ ।

ଭଗବାନ ଜାଣିପାରିଲେ ଯେ, ମୋର ଭକ୍ତ କିଛି କହିବାକୁ ଇଚ୍ଛା ପ୍ରକାଶ କରୁଛନ୍ତି କିନ୍ତୁ ପ୍ରେମରେ ବିହ୍ୱଳ ହୋଇ କିଛି କହିପାରୁ ନାହିଁ ବା କହିବା ନିମନ୍ତେ ସମର୍ଥ ମଧ୍ୟ ହୋଇ ପାରୁନାହିଁ । ତାର ସଙ୍କୋଚକୁ ଦୂରକରି ସକ୍ଷମ କରିବା ନିମନ୍ତେ ଭଗବାନ ଧୀର ଗମ୍ଭୀର ଭାବରେ କିଛି କହିବାକୁ ଆରମ୍ଭ କଲେ ।

ଭଗବାନ କହିଲେ "ପ୍ରଜାପତି ଦକ୍ଷ ! ତୁମେ ନିଶ୍ଚିନ୍ତ ଭାବରେ ରହ । ତୁମେ କୃତାର୍ଥ ହେଲ । ଯେଉଁ କାମନା ପାଇଁ ତୁମେ ତପସ୍ୟା କରୁଅଛ ତୁମର ସେହି କାମନା ପୂର୍ଣ୍ଣ ହୋଇଗଲା । ତୁମେ ବର୍ତ୍ତମାନ ସିଦ୍ଧି ଲାଭକଲ । ମୋ ପ୍ରତି ଦୃଢ଼ ଭାବେ ଅନୁରକ୍ତ ହୋଇଯିବା ସମସ୍ତ ସାଧନାର ସର୍ବୋତ୍ତମ ଫଳ । ତୁମର ତପସ୍ୟା ସର୍ବଶ୍ରେଷ୍ଠ ତପସ୍ୟା ।"

ଭଗବାନଙ୍କର ଏହି କଥା ପଦକ ଶୁଣି ବନ୍ଧୁ କଣ୍ଠରେ ପ୍ରଜାପତି ଦକ୍ଷ କହିଲେ—"ଭଗବାନ ! ମୋର ତପସ୍ୟା କାମନା ନିମନ୍ତେ ଉଦ୍ଦିଷ୍ଟ । ମୁଁ ବଣିକ ବ୍ୟବସାୟୀ କାମୀପୁରୁଷ । ହୃଦୟରେ କାମନା ପୋଷଣ କରି ସକାମ ଆରାଧନା କରୁଅଛି ।"

ଭଗବାନ ହସି କହିଲେ—"ନା ଭାଇ ! ତୁମର ତପସ୍ୟା ତୁମ ନିଜପାଇଁ ସାମାନ୍ୟ ଭାବରେ ନିହିତ । ଏହି ତପସ୍ୟା ଦ୍ୱାରା ତୁମେ ତୁମ ନିଜ ଶରୀର ନିଜ ଇନ୍ଦ୍ରିୟର ଅଭିବୃଦ୍ଧି ପାଇଁ ଇଚ୍ଛା କରୁନାହଁ । ତୁମେ ଏହି ବିଶ୍ୱର ଅଭିବୃଦ୍ଧି କାମନା କରୁଅଛ । ଏଣୁ ତୁମ ଉପରେ ଏଥିପାଇଁ ଅତ୍ୟନ୍ତ ପ୍ରସନ୍ନ । ପର ଉପକାର ଇଚ୍ଛା ନିଜର ସ୍ୱାର୍ଥ ନୁହେଁ, ତାହା ପରମାର୍ଥ ।"

ପ୍ରଜାପତି ଦକ୍ଷ ହାତଯୋଡ଼ି ବିନମ୍ର ଭାବରେ କହିଲେ—"ମହାରାଜ ! ପ୍ରଜାବୃଦ୍ଧି ପାଇଁ ମୋର ଗୂଢ଼ତମ ଇଚ୍ଛାକୁ ମୁଁ କେବେହେଲେ ଦୂରେଇ ଦେଇ ପାରିବି ନାହିଁ ।"

ଭଗବାନ ଏହା ଶୁଣି ହସି ଦେଇ କହିଲେ—"ମୋର ମଧ୍ୟ ଏଇ ଇଚ୍ଛା ଥିଲା । ମୁଁ ଚାହୁଁଥିଲି ସମସ୍ତ ପ୍ରାଣୀମାନଙ୍କର ବୃଦ୍ଧି ଘଟୁ । ମୋର ଇଚ୍ଛାରେ ସମସ୍ତ ପ୍ରାଣୀ-ମାନଙ୍କର ସୃଷ୍ଟି । ଭୂତ, ବ୍ରହ୍ମା, ରୁଦ୍ର, ମନୁ, ପ୍ରଜାପତି ଏବଂ ଇନ୍ଦ୍ର ସମସ୍ତେ ଉତ୍ପତ୍ତି ଲାଭ କରିଛନ୍ତି । ଏ ସବୁ ମୋର ବିଭୂତି । ମୋଠାରୁ ଭିନ୍ନ ନୁହଁନ୍ତି ବା ପୃଥକ ଶରୀର ଧାରଣକାରୀ ନୁହଁନ୍ତି । ମୋର ଅସ୍ତିତ୍ୱରୁ ଏମାନଙ୍କ ପ୍ରାଦୁର୍ଭାବ ହୋଇଅଛି । ଏହି ସାରା ବିଶ୍ୱକୁ ତୁମେ ମୋର ରୂପ ବୋଲି ଜ୍ଞାନ କର । ଦକ୍ଷ ପ୍ରଜାପତି କହିଲେ—ମହାରାଜ ! କେଉଁ ପ୍ରକାରେ ଆପଣଙ୍କ ରୂପ ଓ ଗୁଣର ଧ୍ୟାନ କରିବାକୁ ହେବ ?"

ଭଗବାନ କହିଲେ—"ମୋର ରୂପ ଅନେକ । ଭାବ ଅନେକ । ଅନେକ ଆକୃତି । ତପସ୍ୟା ମୋର ହୃଦୟ । ବିଶ୍ୱ ମୋର ଶରୀର । କର୍ମ ହେଲା ଆକୃତି । ଯଜ୍ଞକୁ ତୁମେ ମୋର ଶରୀର ଅଙ୍ଗ ଭାବରେ ଜ୍ଞାନ କର । ଧର୍ମ ମୋର ମନ । ଦେବତାମାନେ ମୋର ପ୍ରାଣ ଭାବରେ ବିବେଚିତ । ସମସ୍ତ ଦୃଶ୍ୟବାନ୍ ସୃଷ୍ଟି ସର୍ବପ୍ରଥମେ ମୋର ଶରୀର ସହି ସଂଶ୍ଳିଷ୍ଟ ହୋଇଥିଲା । ମୋଠାରୁ ଅଧିକ କୌଣସି ଭିତର ବାହାର ଦୃଶ୍ୟା ଦୃଶ୍ୟ ନାହିଁ । ମୋଠାରୁ ଲୋକ ପିତାମହ ଅଜ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ଉତ୍ପତ୍ତି ହୋଇଅଛି ।"

ପ୍ରଜାପତି ଦକ୍ଷ ପଚାରିଲେ—"ପ୍ରଭୁ ! ଆପଣଙ୍କ ଠାରୁ ସ୍ୱୟଂଭୂ ଚତୁରାନନଙ୍କର ଉତ୍ପତ୍ତି କିପରି ହେଲା ? ଭଗବାନ କହିଲେ "ରାଜା ! ଯେଉଁ ସମୟରେ ମୁଁ ଅନନ୍ତ ଗୁଣ ସମ୍ପନ୍ନ ଅଚ୍ୟୁତ ଅନନ୍ତ ମାୟାରେ ଯୁକ୍ତ ହୋଇ ଗୁଣମୟ ବ୍ରହ୍ମାଣ୍ଡ ଭାବରେ ଥିଲି ସେହି ସମୟରେ ଏହି ବ୍ରହ୍ମାଣ୍ଡରୂପକ କମଳ ମଧ୍ୟରେ କମଳାସନ କମଳନାଭ ଭଗବାନ ବ୍ରହ୍ମାଙ୍କର ଉତ୍ପତ୍ତି ହୋଇଥିଲା । ଯେତେବେଳେ ସେହି ଦେବଶ୍ରେଷ୍ଠ ମୋ ବୀର୍ଯ୍ୟରୁ ସୃଷ୍ଟି ଲାଭକରି ବିକଶିତ ହେଲେ ସେତେବେଳେ ସେ ମୋ ଇଚ୍ଛାରେ ସୃଷ୍ଟି କାର୍ଯ୍ୟ କରିବା ନିମନ୍ତେ ଆଗଭର ହୋଇପଡ଼ିଲେ । ତାଙ୍କ ମନରେ ପ୍ରଜା ସୃଷ୍ଟିର ଇଚ୍ଛା ବଳବତୀ ହେଲା । କିନ୍ତୁ ସେ ଏହି କାର୍ଯ୍ୟ ପାଇଁ ନିଜକୁ ଅସମର୍ଥ ବୋଲି ଜ୍ଞାନ କଲେ ।"

ଏହା ପରେ ଦକ୍ଷ ପ୍ରଜାପତି କହିଲେ—"ହଁ ପ୍ରଭୁ ! ତା ପରେ କ'ଣ ହେଲା । ଆପଣ ତାଙ୍କର ଇଚ୍ଛା କିପରି ପୂରଣ କଲେ ?"

ଭଗବାନ କହିଲେ—"ଯେତେବେଳେ ଚତୁରାନନ ବ୍ରହ୍ମା କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ, ମୁଁ ତାଙ୍କୁ ଅବ୍ୟକ୍ତ ବାଣୀରେ ଦୁଇଟି ଶବ୍ଦ କହିଲି । ସେଥିରେ

ପ୍ରଥମେ 'ତ' ଓ ଦ୍ୱିତୀୟରେ 'ପ' ଅକ୍ଷର ଥିଲା । ସେ ମୋର ଅଭିପ୍ରାୟ ବୁଝିପାରିଲେ ଏବଂ ତପ କରିବାକୁ ଆରମ୍ଭକଲେ । ସେ ବହୁ ଦିବ୍ୟ ସହସ୍ର ବର୍ଷ ତପସ୍ୟାରତ ହୋଇ ସୃଷ୍ଟି କରିବାକୁ ସମର୍ଥ ହେଲେ । ସର୍ବପ୍ରଥମେ ସେ ତାଙ୍କ ମନରୁ ନଅଜଣ ପ୍ରଜାପତି ରୂପରେ ତୁମମାନଙ୍କୁ ସୃଷ୍ଟି କଲେ । ତାପରେ ସୃଷ୍ଟି ବୃଦ୍ଧି ହେବାକୁ ଲାଗିଲା ।

ଏହାଦ୍ୱାରା ପ୍ରାଚୀନ ସୃଷ୍ଟି ସମ୍ଭବ ହେଲା । ଯଦି ତୁମେ ମୋ ପ୍ରେରଣାରେ ଏ ସବୁର ପୁନଃ ଅଭିବୃଦ୍ଧି ଇଚ୍ଛା କରୁଥାଅ ତେବେ ମୋ କଥାରେ ରାଜି ହୋଇ ଯାଅ ।"

ହାତଯୋଡ଼ି ଦକ୍ଷ କହିଲେ—"ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ । କ'ଣ କରିବି ମୋତେ ଆଦେଶ କରିବା ହୁଅନ୍ତୁ ।"

ଭଗବାନ କହିଲେ—"ତୁମର ମାନସିକ ସୃଷ୍ଟି ଦ୍ୱାରା କେବେହେଲେ ସୃଷ୍ଟି ବୃଦ୍ଧି ଲାଭ କରିବ ନାହିଁ । ମାନସିକ ସୃଷ୍ଟିରୁ ଉତ୍ପନ୍ନ ହୋଇଥିବା ବ୍ୟକ୍ତିମାନେ ଶୁଦ୍ଧ ଓ ନିର୍ମଳ ହୃଦୟର ବ୍ୟକ୍ତି ହୋଇ ଥାଆନ୍ତି । ଏ ପ୍ରକାର କଷ୍ଟଦାୟକ ସୃଷ୍ଟି ନିମନ୍ତେ ତୁମେ କାହିଁକି ଚେଷ୍ଟା କରୁଅଛ ? ତୁମେ ମୈଥୁନ ସୃଷ୍ଟି ସର୍ଜନା କର । ସ୍ତ୍ରୀ ସହି ପୁରୁଷର ଓ ପୁରୁଷର ସ୍ତ୍ରୀ ସହି ସ୍ୱାଭାବିକ ଆକର୍ଷଣ ଘଟିଲେ ଏହି ସୃଷ୍ଟି ଆପେ ଆପେ ବଢ଼ିଯିବ । ଦେଖ, ସନ୍ଧ୍ୟା ବନ୍ଦନା, ସତ୍ୟ ଅହିଂସା ବ୍ରହ୍ମଚର୍ଯ୍ୟ ନିମନ୍ତେ କେତେ ପ୍ରକାରର ଉପଦେଶ ଦିଆଯାଇଛି । କେତେ ପ୍ରକାର ଯୁକ୍ତିରେ ଲୋକମାନଙ୍କୁ ଶିକ୍ଷାପ୍ରଦାନ କରାଯାଉଛି । ହଜାରେ ଲକ୍ଷେ ମଧ୍ୟରେ ଜଣକ ଉପରେ ଏହାର ପ୍ରଭାବ ପଡୁଅଛି । କିନ୍ତୁ ସନ୍ତାନ ଉତ୍ପତ୍ତି ପ୍ରାଣୀର ସ୍ୱାଭାବିକ ପ୍ରବୃତ୍ତି । ସନ୍ତାନ ଉତ୍ପତ୍ତି ସମୟରେ ମା'କୁ କେତେ ବଡ଼ ଅସହ୍ୟ ଯନ୍ତ୍ରଣା ଭୋଗ କରିବାକୁ ହୋଇଥାଏ । ଏହି ପୀଡ଼ାକୁ ତୁଚ୍ଛଜ୍ଞାନ କରି ସେ ବାରମ୍ବାର ସନ୍ତାନ ଉତ୍ପତ୍ତି ନିମନ୍ତେ ଆଗ୍ରହ ପ୍ରକାଶ କରିଥାଏ । ଯେଉଁମାନଙ୍କର ସନ୍ତାନ ହୁଏ ନାହିଁ ସେ ଦୁଃଖୀ ହୋଇ ସନ୍ତାନ ପାଇବା ନିମନ୍ତେ ନାନା ପ୍ରକାର ଯନ୍ତ୍ର ମନ୍ତ୍ର ଔଷଧ ମହୌଷଧି ଏପରି କି ଉଚିତ ଅନୁଚିତ ବହୁକାର୍ଯ୍ୟ କରିଥାଏ । ପୁରୁଷ ଯେତେବେଳେ ତେର ଚଉଦ ବର୍ଷର ହୋଇଯାଏ ସ୍ୱତଃ ସନ୍ତତି-ବୃଦ୍ଧିର ପରମ ପୁଣ୍ୟ କାର୍ଯ୍ୟ ନିମନ୍ତେ ଯୋଗ୍ୟ ହୋଇଯାଏ । ଏଣୁ ରାଜା ! ସୃଷ୍ଟି ବୃଦ୍ଧି ପାଇଁ କାମ ହିଁ ସରଳ ଉପାୟ ଅଟେ । ପଞ୍ଚଜନ ନାମରେ ଜଣେ ପ୍ରଜାପତି ଅଛନ୍ତି । ତାଙ୍କର ଅକସନୀ ନାମରେ ଏକ ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ଅଛି । ତାକୁ ତୁମେ ବିବାହ କର । ଅଗ୍ନିକୁ ସାକ୍ଷୀକରି ତୁମେ ତାକୁ ଭାର୍ଯ୍ୟା ଭାବରେ ଗ୍ରହଣ କରିନିଅ । ଏହି ସ୍ତ୍ରୀ ସହି ଦାମ୍ପତ୍ୟ ବନ୍ଧନରେ ବାନ୍ଧିହୋଇ ରତି ଧର୍ମକୁ ଗ୍ରହଣ କରି ଏହି ମୈଥୁନ ଧର୍ମଶାଳିନୀ ଭାର୍ଯ୍ୟା ଦ୍ୱାରା ବହୁତ ପ୍ରଜା ସୃଷ୍ଟି କରି ପାରିବ । ପରେ ଏହା ସଦାଚାର ଭାବରେ ଗ୍ରହଣ ହେବ । କାରଣ ବଡ଼ଲୋକମାନେ ଯେଉଁ କାର୍ଯ୍ୟକର୍ମ କରନ୍ତି ତାହା ଅନ୍ୟ ଲୋକମାନଙ୍କ ଦ୍ୱାରା ଅନୁସରିତ ହୋଇଥାଏ । ତୁମଠାରୁ ଯେତେ ସବୁ ପୁଅଝିଅ ଜନ୍ମଲାଭ କରିବେ

ସେମାନେ ସମସ୍ତେ ରତି ଧର୍ମରେ ଲିପ୍ତ ରହି ମୈଥୁନ ପ୍ରକ୍ରିୟା ଦ୍ୱାରା ଆନନ୍ଦରେ ସୃଷ୍ଟି ବୃଦ୍ଧି କରି ପାରିବେ । ମାନସିକ ସୃଷ୍ଟିରେ କାର୍ଯ୍ୟ ହୋଇ ପାରିବନାହିଁ । ସୃଷ୍ଟି ବୃଦ୍ଧି ହେଲେ ସମସ୍ତେ ମୋର ଆରାଧନା କରିବେ । ଏହା ଦ୍ୱାରା ତୁମେ ବହୁ ପୁଣ୍ୟ ଅର୍ଜନ ମଧ୍ୟ କରିବ । ଯେଉଁମାନେ ଦାନ ଧର୍ମ କରନ୍ତି ତା ମଧ୍ୟରେ କନ୍ୟାଦାନ ସବୁଠାରୁ ଶ୍ରେଷ୍ଠଦାନ କାରଣ ଏହାଦ୍ୱାରା ବଂଶ ବୃଦ୍ଧି ହୋଇଥାଏ ।

ଶ୍ରୀ ଶୁକଦେବ କହିଲେ—ରାଜା ! ଏହିପରି ଭାବରେ ଦକ୍ଷ ପ୍ରଜାପତିଙ୍କୁ ଉପଦେଶ ପ୍ରଦାନ କରିବା ପରେ ଭଗବାନ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଦକ୍ଷ କେବଳ ଚାହିଁ ରହିଲେ ।

—ଛପ୍ପୟ—

ବୋଲେ ହରି, ତୁମ ପ୍ରଜା ହେତୁ ତେଂ କଷ୍ଟ ଉଠାଓ ।
ମନ ତେ ବଢ଼େନ ସୃଷ୍ଟି ମୈଥୁନୀ ସୃଷ୍ଟି ବନାଓ ॥

ପଞ୍ଚଜନ୍ୟ କୀ ସୁତା ଅକ୍ସନୀ ବହୁ ବ୍ୟାହିକେଂ ।
ସନ୍ତତି କରି ରତିଧର୍ମ ବଢ଼ାଓ ଉଭୟ ଜାଇକେଂ ॥

ବିନୁ ଆକର୍ଷଣ ସୃଷ୍ଟି ନହିଁ, କବହୁଁ ବଢ଼େ ହିୟ ମହଁ ଧରୋ ।
ଭାତେଂ ଚଟପଟ ଜାୟକେଂ, କରି ବିବାହ ଚେଷ୍ଟା କରୋ ॥



# ମୈଥୁନ ଧର୍ମଦ୍ୱାରା ଦକ୍ଷଙ୍କର ହର୍ଯଶ୍ୱ ନାମରେ ପୁତ୍ର ଜନ୍ମ

ତସ୍ୟାଂ ସ ପାଞ୍ଚଜନ୍ୟାଂ ବୈ ବିଷ୍ଣୁମାୟୋପବୃଂହିତଃ ।
ହର୍ଯଶ୍ୱସଂଜ୍ଞାନୟୁତଂ ପୁତ୍ରାନଜନୟଦ୍ ବିଭୁଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୫ମ ଅଧ୍ୟାୟ ॥ ୧ ଶ୍ଳୋକ ]

ଛପ୍‌ପୟ

ବିବାହ ଦକ୍ଷ କଲେ କରୟେ ବିଷ୍ଣୁ ଆଜ୍ଞା ସିରଧାରି ।
ଅତି ପ୍ରସନ୍ନ ମନ ଭର୍ଯ୍ୟା ବହୁ ଲଖି ଅତି ସୁକୁମାରୀ ॥
ସୁଧୀ ପ୍ରଜାପତି ଦକ୍ଷ ତପସ୍ୱୀ ଦୃଢ଼ ବ୍ରତଧାରୀ ।
ଦଶ ସହସ୍ର ସୁତ ଜନେ ପିତା କେ ଆଜ୍ଞାକାରୀ ॥
ସବ ସମାନ ଗୁଣ ରୂପ ରଁଗ, ଶୀଲ ଏକ-ସୀ ବୟ ନଈ ।
ତାତେଂ ସବକୀ ଏକଈ, ହର୍ଯଶ୍ୱହି ସଂଜ୍ଞା ଭଈ ॥

ଭଗବାନଙ୍କ ମାୟା ଏପରି ବଳୀୟାନ ଯେ, ଜ୍ଞାନୀ, ଅଜ୍ଞାନ, ପଣ୍ଡିତ, ମୂର୍ଖ, ଶ୍ରେଷ୍ଠ, ବଡ଼, ପଶୁ, ପକ୍ଷୀ, ଦେବତା, ମଣିଷ ସମସ୍ତେ ତାଙ୍କ ମାୟାରେ ବଶୀଭୂତ ହୋଇ କାର୍ଯ୍ୟ କରନ୍ତି । ତାଙ୍କ ମାୟାବ୍ୟତୀତ, ସୃଷ୍ଟି, ସଂସାର, ଦୁଃଖ, କଷ୍ଟ, ଜନ୍ମ, ମରଣ, ବନ୍ଧନ ମୋକ୍ଷ କୌଣସି କଥା ସମ୍ଭବ ନୁହେଁ । ସେ, ମୁଁ, ତୁ, କୌଣସି କଥା ସମ୍ଭବ ନୁହେଁ । ସେ'ହି କେବଳ ମାୟାତୀତ । ଏହି ମାୟା ମୋହରୁହିଁ ସମସ୍ତ ପଦାର୍ଥର ସୃଷ୍ଟି । ଜନ୍ମ, ସୃଷ୍ଟି, ବିବାହ, ତ୍ୟାଗ, ଗ୍ରହଣ ସବୁ ତାଙ୍କର ଇଚ୍ଛାରେ । ସେ ଏପରି ଗୁଣବତୀ ନୂଆବୋହୂ ଯେ ଏହି ବିଶ୍ୱରୂପୀ ଶ୍ୱଶୁର ଘରେ ପଦାର୍ପଣ କରି ସବୁଦିନ ନୂଆ ନୂଆ ଶାଢ଼ୀ ବଦଳାନ୍ତି । କେବେ ସେ ବୁଢ଼ୀ ହୁଅନ୍ତି ନାହିଁ ବା ବେମାର ତାଙ୍କୁ ଛୁଏଁ ନାହିଁ । ତାଙ୍କ ଶରୀର କେବେ ମଳିନ ଦେଖାଯାଏ ନାହିଁ ବା ବୃଦ୍ଧାବସ୍ଥାଜନୀତ କୁରୂପ ତାଙ୍କୁ ସ୍ପର୍ଶ କରେନାହିଁ । ସବୁବେଳେ ସେ ସୃଷ୍ଟି

ମାୟାରେ ସକ୍ତାସକ୍ତ ହୋଇ ନୂତନ ଆକର୍ଷଣ ଦ୍ୱାରା ଆକର୍ଷିତ କରନ୍ତି । ଆମେମାନେ ତ ଅଜ୍ଞାନୀ । ବଡ଼ ବଡ଼ ମହାପୁରୁଷ ଅଦ୍ୱୈତବାଦୀ, ବେଦାନ୍ତୀ ଜ୍ଞାନୀମାନେ ମଧ୍ୟ ତାଙ୍କର ନିର୍ଣ୍ଣୟ କରିବାକୁ ସକ୍ଷମ ନୁହଁନ୍ତି ବା ତାଙ୍କ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ କୌଣସି ନିର୍ଣ୍ଣୟ ମଧ୍ୟ କରି ପାରିନାହାଁନ୍ତି । ସେହି ସୁଗଠ ସୁନ୍ଦରୀ ନବବଧୂ ପ୍ରକୃତରେ "ସତ୍‌" କି ? ସେମାନଙ୍କୁ ପଚାରିଲେ, ସେ ମୁଣ୍ଡ ହଲାଇ ଦିଅନ୍ତି । ପୁଣି ପଚାରି ସେହି ସୁନ୍ଦରୀ ଯଦି ସତ୍‌ ନୁହଁନ୍ତି ତେବେ ସେ ଅସତ୍‌ ହୋଇଥିବେ । ସେତେବେଳେ ସେମାନେ ମୁଣ୍ଡ ହଲାଇ ଗମ୍ଭୀର ସହକାର ଆଖି ଖୋଲି କହନ୍ତି, "ନା ଭାଇ ସେ ଅସତ୍‌ ମଧ୍ୟ ନୁହଁନ୍ତି ।' ସେତେବେଳେ ଆମେ ଅସୁବିଧାରେ ପଡ଼ିଯାଉ । ତାକୁ ପୁଣି ପଚାରୁ, ସତ୍‌ ନୁହଁନ୍ତି ଅସତ୍‌ ନୁହଁନ୍ତି, ତାହାହେଲେ ମଧ୍ୟମ ପ୍ରକାରର ହୋଇଥିବେ । ଯେପରି ଡାଲି ଚାଉଳ ମିଶିକରି ଖେଚେଡ଼ି ହୋଇଥାଏ । ସେତେବେଳେ ସେମାନେ ହସିକରି କହନ୍ତି "ନା ଭାଇ ! ସେ ଖେଚେଡ଼ି ବି ନୁହଁନ୍ତି ତାଙ୍କର ଠିକ୍‌ କରି ଜାଣିବା ଏତେ ସହଜ ନୁହେଁ । ସେ ଅନିର୍ବଚନୀୟ । ଜଣାଯାଏ ତାଙ୍କର ବାପା ତାଙ୍କର ଦୁଇଟି ନାମ ରଖିଛନ୍ତି - ମାୟା ଓ ଅନିର୍ବଚନୀୟ । ଅନିର୍ବଚନୀୟର ତ କୌଣସି ଅର୍ଥ ନାହିଁ । ଶବ୍ଦ ମାନଙ୍କେ କୌଣସି ଅର୍ଥ ଥାଏ । ଏହା କେବଳ ଜ୍ଞାନୀମାନଙ୍କୁ ଜଣା । ଅଜ୍ଞାନୀ ଲୋକମାନେ ଦେବୀଙ୍କୁ ଦୂରରୁ ଦଣ୍ଡବତ କରି ତାଙ୍କର ପବିତ୍ର ପାଦପଦ୍ମକୁ ପ୍ରଣାମ କରିଥାଆନ୍ତି । ତାଙ୍କ ସମ୍ବନ୍ଧରେ କିଛି ମଧ୍ୟ ପଚାରନ୍ତି ନାହିଁ । ଏଡ଼େ ବଡ଼ ପୂଜ୍ୟଙ୍କ ଆଗରେ ସ୍ତ୍ରୀ ଚର୍ଚ୍ଚା କିପରି କରାଯିବ ! ସେ ଯେପରି ସେପରି ରହନ୍ତୁ । ଯଦି ଜଣେ ନିଜର ସ୍ୱଭାବ ଛାଡ଼ିବ ନାହିଁ ତେବେ ଆମେ ତାର ସ୍ୱଭାବ ଜାତି କୁଳ ଗୋତ୍ର ସମ୍ପର୍କରେ ଚର୍ଚ୍ଚା କରିବା କ'ଣ ଦରକାର ! ସାଧୁର ଭିକ୍ଷା ଛଡ଼ା ଏହି ଅନିର୍ବଚନୀୟତା ସହିତ କ'ଣ କାମ ? ମାୟାକୁ ଆଧାରକରି ମାୟାପତି ଏହି ସୃଷ୍ଟିକୁ ରଚନା କରିଛନ୍ତି । ଏହି କଥା ଆମେ ସର୍ବଦା ଶୁଣି ଆସୁଅଛୁ । ଏହି ମାୟାରେ ବଶୀଭୂତ ହୋଇ ଭଗବାନଙ୍କ ଇଚ୍ଛାରେ ସମସ୍ତ ପ୍ରଜାପତି ମାନଙ୍କର ସୃଷ୍ଟି କାର୍ଯ୍ୟକ୍ରମ ଆଗ୍ରହ ଓ ଉତ୍ସାହର ସହିତ ହୋଇଥାଏ । ପୁରୁଷ ପ୍ରକୃତି ବ୍ୟତୀତ ପଙ୍ଗୁ ଭାବରେ ବିବେଚିତ । ପୁରୁଷ ଗୋଟିଏ ପାଦ ଆଗକୁ ଗତି କରିପାରେ-ନାହିଁ । ଏଣୁ ବ୍ରହ୍ମା ପ୍ରକୃତି ସ୍ୱରୂପିଣୀ ନାରୀର ସୃଷ୍ଟି ସର୍ବପ୍ରଥମ ପୁରୁଷକୁ ସୃଷ୍ଟି କରିବା ସମୟରେ ସ୍ତ୍ରୀକୁ ମଧ୍ୟ ସୃଷ୍ଟି କରିଥିଲେ । ଯେପରି ୧ ସହ ୧ ମିଳିଲେ ୧୧ ହୁଏ । ଏଣୁ ବିବାହ ସମୟରେ ବେଦାନୁସାରେ ସ୍ତ୍ରୀକୁ ଆଦେଶ ଦିଆଯାଇଥାଏ ତୁ ଏକ ଓ ତୋର ପତି ମଧ୍ୟ ଏକ ଏପରି ଦୁଇଜଣ ମିଶି ୧୧ରେ ପରିଣତ ହୋଇଯାଅ । ଯେତେବେଳ ପର୍ଯ୍ୟନ୍ତ ଏକ ଅଦ୍ୱିତୀୟ ହୋଇଥାଏ ସେତେବେଳ ପର୍ଯ୍ୟନ୍ତ ସବୁ ଗମ୍ଭୀର ଶୂନ୍ୟଶାନ ହୋଇ ତାହା ସତ୍ୟରେ ପରିଣତ ହୋଇଥାଏ । ଯେତେବେଳେ ଦୁଇଜଣ ହୋଇଯାଆନ୍ତି ସେତେବେଳେ ଗୋବିନ୍ଦାୟ ନମୋନମଃ ଆରମ୍ଭ ହୋଇଯାଏ । ଏହାର ନାମହିଁ ଜଗତ ପ୍ରବାହ ।

ଶ୍ରୀଶୁକଦେବ କହିଲେ—"ରାଜା ! ବିବାହ କରିବା ପାଇଁ ପ୍ରଜାପତି ଦକ୍ଷଙ୍କୁ ଭଗବାନ ଆଦେଶ ପ୍ରଦାନ କରିବାରୁ ସେ ତାଙ୍କ ଆଦେଶକୁ ମାନିନେଲେ । ପ୍ରଜାପତି ପଞ୍ଚଜନ୍ୟଙ୍କର ପରମ ସୁଶୀଳା ଗୁଣବତୀ, ରୂପବତୀ, ଲଜ୍ୟାବତୀ କନ୍ୟାକୁ ବିଧି ବିଧାନ ସହକାରେ ବିବାହ କଲେ । ବିବାହ ପରେ ସେ ନିଜର ପତ୍ନୀକୁ ପାଇ ବଡ଼ ଆନନ୍ଦିତ ହେଲେ । ସେ ଜଣେ ସାଧାରଣ ବିଷୟୀ ବା କାମୀପୁରୁଷ ନ ଥିଲେ । ସେ ଥିଲେ ପରମ ଯଶସ୍ୱୀ, ତପସ୍ୱୀ ଏବଂ ବିଷ୍ଣୁଶକ୍ତିସମ୍ପନ୍ନ ଶ୍ରେଷ୍ଠ ଐଶ୍ୱର୍ଯ୍ୟବନ୍ତ ପୁରୁଷ । ମୈଥୁନସହ ମନ୍ତ୍ର ତନ୍ତ୍ର ଏବଂ ଯନ୍ତ୍ରର ପ୍ରଭାବରେ ସର୍ବପ୍ରଥମେ ଦଶହଜାର ପୁତ୍ର ଜନ୍ମ କରିଥିଲେ ।

ଏହାପରେ ଶୌନକ ପଚାରିଲେ —"ସୂତ ମହାଶୟ ! ଏସବୁ କଥା ମୁଁ କିଛି ବୁଝିପାରୁ ନାହିଁ । ଗୋଟିଏ ଦୁଇଟି ବା ସ୍ୱଳ୍ପେଟି ହୋଇଥିଲେ ମୁଁ ବିଶ୍ୱାସ କରନ୍ତି । ସ୍ତ୍ରୀ ଠାରୁ ଏକ ସଙ୍ଗରେ ଦଶହଜାର ପୁତ୍ର ଜନ୍ମ ହୋଇଗଲେ, ଏ କଥା ମୋର ଆଦୌ ବିଶ୍ୱାସ ହେଉନାହିଁ । ଏକଥା ଯଦି ଆପଣ ଶ୍ରଦ୍ଧା ସହକାରେ କହୁଛନ୍ତି ତେବେ ଏଥିରେ ମୋର କିଛି କହିବାର ନାହିଁ ।"

ଏହାପରେ ସୂତ କହିଲେ—"ଭଗବାନ ! ଦେଖନ୍ତୁ, ସେ ଜଣେ ସାଧାରଣ ମନୁଷ୍ୟ ନ ଥିଲେ ମନରେ କି ଅସଂଖ୍ୟ ସନ୍ଦେହ ସୃଷ୍ଟି ହୁଏ । ମନ୍ତ୍ରର ସହାୟତାରେ ଦଶ ହଜାର ପୁତ୍ର ଜନ୍ମଲାଭ କରାଇବା ତାଙ୍କ ପକ୍ଷେ ଆଦୌ ଅସମ୍ଭବ ନୁହେଁ । ଧୃତରାଷ୍ଟ୍ରଙ୍କ ଦ୍ୱାରା ଗାନ୍ଧାରୀଙ୍କ ଠାରୁ ଏକଶହ ପୁତ୍ର ଜାତ ହୋଇଥିଲେ । ଥରକେ ଶହେ ବୀଜ ଉତ୍ପନ୍ନ ହେବା ପରେ ତାକୁ ଅଲଗା ଅଲଗା ଘୃତ ଘଡ଼ିରେ ରଖି ଦିଆଯାଇଥିଲା । ତା ଭିତରେ ସେମାନେ ବଢ଼ିବାକୁ ଲାଗିଲେ । ଛୁଆ ଜନ୍ମ ହେବାପରେ ସେ ସବୁକୁ ବିଧି ବିଧାନ ସହକାରେ ବାହାର କରି ଅଣାଗଲା । କଳିଯୁଗରେ ବୈଜ୍ଞାନିକ ଉପାୟରେ ରଜ ବୀର୍ଯ୍ୟକୁ ମିଶାଇ ମାତୃଗର୍ଭ ବ୍ୟତୀତ ପୃଥକ୍ ଭାବରେ ସନ୍ତାନ ଉତ୍ପତ୍ତି ନିମନ୍ତେ ଲୋକମାନେ ଚେଷ୍ଟା କରିବେ । ଏହାଦ୍ୱାରା ପ୍ରାଣଶକ୍ତି ସଞ୍ଚାର ସମ୍ଭବ ହୋଇ ପାରିବ କିନ୍ତୁ ଏହି କୃତ୍ରିମ ଉପାୟରେ ମଣିଷ ସୃଷ୍ଟି ସମ୍ଭବ ହେବ ନାହିଁ । ସେ ସମୟରେ ଲୋକେ ସାମର୍ଥ୍ୟ-ବାନ ସତ୍ୟ ସଂକଳ୍ପ ଥିଲେ । ସେମାନେ ତାଙ୍କର ଅମୋଘ ବୀର୍ଯ୍ୟକୁ ଯେତେ ଭାଗରେ ବିଭକ୍ତ କରୁଥିଲେ ସେତେ ସନ୍ତାନ ଜାତ ହେଉଥିଲେ । ସେହି ସଂକଳ୍ପ ଦ୍ୱାରା ସୃଷ୍ଟି ନିମନ୍ତେ ପ୍ରଜାପତି ଦକ୍ଷ ଶୁଦ୍ଧ ମନରେ ରତି ଇଚ୍ଛା ବ୍ୟତୀତ ସଂସର୍ଗ ଦ୍ୱାରା ଦଶହଜାର ପୁତ୍ର ଜାତ କରିଥିଲେ । ରଜ ଓ ବୀର୍ଯ୍ୟର ସଂସର୍ଗ ମାତ୍ର, ବାସ୍ତବରେ ସେମାନେ ଶୁଦ୍ଧ ଚିତ୍ତରେ ଜାତ ହୋଇଥିବା ମାନସ ସନ୍ତାନ । ତାଙ୍କଠାରେ ଟିକିଏ ହେଲେ ମାୟା ନ ଥିଲା । ବିଶୁଦ୍ଧ ହୃଦୟରେ ସେମାନେ ପବିତ୍ର ଥିଲେ । ତାଙ୍କୁ ଛଳ, କପଟ, ରତି-କାମନା ଆଦି ସ୍ପର୍ଶ କରି ନ ଥିଲା । ସେମାନେ ଅତ୍ୟନ୍ତ ଶ୍ରେଷ୍ଠ ଓ ଦୁଧ ପିଇବା ଶିଶୁ ପରି ଦେଖାଯାଉଥିଲେ । ପିତାଙ୍କର ତପ ପ୍ରଭାବରେ ସେମାନେ ଜାତ ହୋଇ କିଛି

ସମୟ ପରେ ଯୁବାବସ୍ଥା ଲାଭ କଲେ । ସେମାନେ ବଡ଼ ନମ୍ର, ସୁଶୀଳ ଓ ସରଳ ସ୍ୱଭାବର ଥିଲେ । ସେମାନେ ହାତ ଯୋଡ଼ି ବାଳକସୁଲଭ ଭୋଳା ଭାବରେ ପିତାଙ୍କୁ ପଚାରିଲେ—"ପିତା ! ଆମେ କ'ଣ କରିବୁ ?"

ପିତା ପ୍ରେମ ସହକାରେ କହିଲେ—"ଦେଖୁଛ ! ପୁତ୍ରଗଣ ତୁମ ଆଗରେ ତାହା କ'ଣ ?" ସେମାନେ କହିଲେ -ପିତା ! ଆମକୁ ତାହା କ'ଣ ଜଣାନାହିଁ !

ପ୍ରଜାପତି ଦକ୍ଷ ଅତ୍ୟନ୍ତ ମମତା ଓ ଆଦର ପ୍ରଦର୍ଶନପୂର୍ବକ ସେମାନଙ୍କ ମୁହଁରେ ଚୁମା ଦେଇ କହିଲେ "ଆରେ ତୁମେମାନେ ସବୁ ବଡ଼ ଭୋଳାପିଲାଗୁଡ଼ାକ । ଏହା ହେଉଛି ସୃଷ୍ଟି । ଭଗବାନଙ୍କର ଆଦେଶ ଅନୁସାରେ ଏହାକୁ ବୃଦ୍ଧି କରିବାକୁ ହେବ । ଦେଖ ମୁଁ ଯେପରି ଏକରୁ ତୁମମାନଙ୍କୁ ଦଶ ହଜାର ସୃଷ୍ଟି କଲି, ସେହିପରି ତୁମେମାନେ ପ୍ରତ୍ୟେକ ଦଶ ହଜାର ଲେଖାଏଁ ସୃଷ୍ଟି କରିବା ନିମନ୍ତେ ସମର୍ଥ ଅଛ । ଏହାଦ୍ୱାରା ବହୁତ ମଣିଷ ସୃଷ୍ଟି ହୋଇ ପାରିବେ । ଫଳରେ ଏହି ବଣ ପର୍ବତ କାନନପୂର୍ଣ୍ଣ ପୃଥିବୀ ମଣିଷମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ଉଠିବ ।

ପୁତ୍ରମାନେ କହିଲେ—"ମହାରାଜ ! ଏତେଲୋକ ବୃଦ୍ଧି ହୋଇଗଲେ ତାର ପରିଣତି କ'ଣ ହେବ ?" ଦକ୍ଷ ପ୍ରେମ ସହକାରେ କହିଲେ ଆଉ ହେବ କ'ଣ ? ବହୁତ ଲୋକ ଜନ୍ମହୋଇ ନଦ, ନଦୀ, ବଣ, ପର୍ବତ, ସମୀପରେ ଘରଦ୍ୱାର ତିଆରି କରି ରହି ଭଗବାନଙ୍କ ନିମନ୍ତେ ଯାଗ, ଯଜ୍ଞ ଉତ୍ସବ ଇତ୍ୟାଦି ଅନୁଷ୍ଠିତ କରିବେ । ହରିନାମ କଥାକୀର୍ତ୍ତନର ଆନନ୍ଦ ମହୋତ୍ସବ ହେବ । ସମସ୍ତେ ଏକାଠି ହୋଇ ପ୍ରେମ ସହକାରେ ପରସ୍ପର ପ୍ରତି କଥାବାର୍ତ୍ତା ହେବେ । ହୃଦୟକୁ ହୃଦୟ ମିଶାଇ ସ୍ନେହଭାବ ପ୍ରଦର୍ଶନ କରିବେ । ଭଗବାନଙ୍କର ଗୁଣଗାୟନ କରିବେ । ଭଗବତ୍ ଚର୍ଚ୍ଚା ହେବ । ଏହାଦ୍ୱାରା ତୁମମାନଙ୍କର ବଡ଼ ପୁଣ୍ୟ ମଧ୍ୟ ହେବ ।

ସେମାନଙ୍କ ମଧ୍ୟରୁ ହର୍ଯଶ୍ୱ ନାମକ ପୁତ୍ର ପଚାରିଲା—"ବାପା ! ଏତେ ପିଲା ଜନ୍ମ କରିବା ନିମନ୍ତେ ଆମେ ଶକ୍ତି କେମିତି ପ୍ରାପ୍ତହେବୁ ?

ଦକ୍ଷ ପ୍ରଜାପତି ପ୍ରେମ ସହକାରେ କହିଲେ—"ଦେଖ କୌଣସି ମନୁଷ୍ୟ ତାର ନିଜ ଇଚ୍ଛା ବା ଶକ୍ତି ଦ୍ୱାରା କିଛି କରିପାରେ ନାହିଁ । ଶ୍ରୀହରି ସମସ୍ତଙ୍କର ଶକ୍ତିପ୍ରଦାନକାରୀ ଅଟନ୍ତି । ତୁମେମାନେ ସମସ୍ତେ ମିଶି ତାଙ୍କଠାରେ ଶରଣ ପଶ । ଘୋର ତପସ୍ୟାରତ ହୋଇ ତାଙ୍କୁ ପ୍ରସନ୍ନ କରାଅ । ମୁଁ ଘୋର ତପସ୍ୟା କରି ତାଙ୍କୁ ପ୍ରସନ୍ନ କରିଥିଲି । ତାଙ୍କ ଆଜ୍ଞାରେ ମୁଁ ବିବାହ କରି ତୁମ ସମସ୍ତଙ୍କୁ ଜନ୍ମଦେଇଛି । ଏଣୁ ତୁମେ ସମସ୍ତେ ସୃଷ୍ଟି କାମନା କରି ତାଙ୍କର ଆରାଧନା କର ।"

ହର୍ଯଶ୍ୱ କହିଲେ—ବାପା ! କେଉଁ ସ୍ଥାନକୁ ଯାଇ ଆମେ ତପସ୍ୟାରତ ହେବୁ ?

ପ୍ରଜାପତି କହିଲେ—"ତୁମେ ଏଠାରୁ ପଶ୍ଚିମ ଦିଗକୁ ଯାଅ । ଚାଲି ଚାଲି ଯାଉଁ ଯାଉଁ ଯେଉଁଠାରେ ସ୍ୱଚ୍ଛ, ପବିତ୍ର ତୀର୍ଥସ୍ଥାନ ଦେଖିବାକୁ ପାଇବ ସେଠାରେ ରହି ପ୍ରଜାବୃଦ୍ଧି ସଂକଳ୍ପ ସିଦ୍ଧି ନିମନ୍ତେ ଭଗବାନଙ୍କ ଆରାଧନା କରିବ ।

ହର୍ଯଶ୍ୱ ପିତାଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ଭାଇମାନଙ୍କ ସହ ପଶ୍ଚିମ ଦିଗ ଅଭିମୁଖେ ଯାତ୍ରା କଲେ ।

ବହୁ ଗିରି, ନଦୀ, ବନ, ପର୍ବତ ଅତିକ୍ରମ କରି ଏହି ବିଚିତ୍ର ସୃଷ୍ଟିକୁ ବଡ଼ କୌତୂହଳ ସହକାରେ ଦେଖି ଦେଖି ଚାଲିଥାଆନ୍ତି । ଚାଲି ଚାଲି ସେହି ସ୍ଥାନରେ ପହଞ୍ଚିଲେ, ଯେଉଁଠାରେ କି ପୁଣ୍ୟତୋୟା ସିନ୍ଧୁନଦୀ ସମୁଦ୍ର ସହ ମିଶିଅଛି । ଏହି ପରମ ପବିତ୍ର କଚ୍ଛ ପ୍ରଦେଶରେ ନାରାୟଣ ସରୋବର ନାମରେ ଏକ ପୁଣ୍ୟତୀର୍ଥ ଥିଲା । ଏହି ତୀର୍ଥ ଦେବତା, ସିଦ୍ଧ, ଚାରଣ, ଋଷି, ମୁନି ତଥା ଅନ୍ୟ ପୁଣ୍ୟଜନମାନଙ୍କ ଦ୍ୱାରା ଶୋଭା ପାଉଥିଲା । ଏହି ସ୍ଥାନର ଶୋଭା ଦର୍ଶନ କରି ଭାଇମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ଏମାନେ ଏହି ସରୋବରରେ ସ୍ନାନ କଲେ । ସ୍ନାନ କରି ସାରିବା-ପରେ ଏମାନଙ୍କ ଶରୀର ଫୁଲପରି ହାଲୁକା ହୋଇଗଲା, ଚିତ୍ତ ଚଞ୍ଚଳ ହୋଇପଡ଼ିଲା । ପଥ ଚାଲିବାର ସମସ୍ତ କ୍ଲାନ୍ତି ଦୂରୀଭୂତ ହୋଇଗଲା । ହୃଦୟରେ ଥିବା ସମସ୍ତ ମାୟିକ ପ୍ରବୃତ୍ତି ଧୋଇ ହୋଇଗଲା । ଏମାନଙ୍କର ଶୁଦ୍ଧ ହୃଦୟ ତ ମୂଳରୁ ଥିଲା ; ପିତାଙ୍କ ସଂସର୍ଗ ଏବଂ ସଂକଳ୍ପ ଯୋଗୁ ମନରେ ପ୍ରବୃତ୍ତି ମାର୍ଗପାଇଁ ସୃଷ୍ଟି ହୋଇଥିବା ଯତ୍କିଞ୍ଚିତ ବାସନା ତୀର୍ଥ ସ୍ନାନ ଯୋଗୁଁ ନଷ୍ଟ ହୋଇଗଲା । ସେମାନଙ୍କର ବୁଦ୍ଧି ପାରମହଂସ୍ୟ ଧର୍ମରେ ଲାଗିଗଲା । ସୃଷ୍ଟି ଆଦି ବୃଦ୍ଧିର ମାୟାରେ ପତିତ ହେବାପାଇଁ ସେମାନଙ୍କୁ ଭଲ ଲାଗିଲାନାହିଁ । ପିତାଙ୍କର ଆଦେଶ ସୃଷ୍ଟି ବୃଦ୍ଧି ନିମନ୍ତେ ତପସ୍ୟା କରିବାକୁ ପଡ଼ିବ । ଏସବୁ ବିଚାରକରି ସେମାନେ ନିଜ ସଂକଳ୍ପରୁ ଅନିଚ୍ଛା ପୂର୍ବକ ପିତାଙ୍କ ଆଜ୍ଞାକୁ ଗ୍ରହଣକରି ତପସ୍ୟା କରିବା ନିମନ୍ତେ ଇଚ୍ଛାପ୍ରକାଶ କଲେ । ଯିଏ ମୋକ୍ଷ ଧର୍ମର ଅଧିକାରୀ ସେ ଏହି କ୍ଷୁଦ୍ର ସଂସାରୀ ବିଷୟରେ ପ୍ରବେଶ କରି ପ୍ରବୃତ୍ତି ମାର୍ଗରେ ଅଗ୍ରସର ହୁଏ, ଏକଥା ମୋକ୍ଷ ଧର୍ମାବଲମ୍ବୀ ନାରଦଙ୍କୁ ବହୁତ ଖରାପ ଲାଗିଲା । ସେ ଏହି ବାଳକମାନଙ୍କର କଲ୍ୟାଣ ନିମନ୍ତେ ଚିନ୍ତାକଲେ ।

ସୂତ କହିଲେ "ମୁନି ! କୃପାଳୁ ପୁରୁଷର ଏହି ସ୍ୱଭାବ ଅଟେ । ନକହିଲେ ମଧ୍ୟ ସେ ଅଧିକାରୀଙ୍କୁ ଦୟା କରିଥାଏ । କୃପା ନ କରି ସେ ଆଦୌ ରହିପାରେ ନାହିଁ । ଏଣୁ ନାରଦଙ୍କ ମନରେ ଏହିପ୍ରକାର ବାସନା ଜାଗ୍ରତହେଲା । ବର୍ତ୍ତମାନ ଆଗକୁ ସୁଖଦାୟକ ମନୋରଞ୍ଜକ ଯେଉଁ ସମ୍ବାଦ ପରିବେଷଣ ହେଉଛି, ତାହାକୁ ଦୟାକରି ଆପଣ ଶ୍ରବଣ କରନ୍ତୁ ।

—ଛପ୍ପୟ—

ପିତା କହେଁ୍ୟା ହର୍ଯଶ୍ୱ ! କରୋ ତପ ବଂଶ ବଢ଼ାଓ ।
ପୁତ୍ର ପୌତ୍ର କର ଅଧିକ ଜଗତ ମହଁ କୀର୍ତ୍ତି କମାଓ ॥
ପିତୁ ଆୟସ ସିର ଧାରି ଚଲେ ତପକୁଁ ସବ ଭୈୟା ॥
ନାରାୟଣ ସର ବସେ ମିଲେ ମୁନି ବୀନ ବଜୈୟା ॥
ଶ୍ରଦ୍ଧା ସଂଯମ କେ ସହିତ, ଜାୟ ତୀର୍ଥ ଜେ ହ୍ନାତ ହୈ ।
ହୋତ ହୃଦୟ ତିନକୋ ବିମଲ, ଫିର ସଦ୍‌ଗୁରୁ ମିଲି ଜାତ ହୈ ॥



# ନାରଦଙ୍କର ହର୍ଯଶ୍ୱଙ୍କୁ ଦଶଟି ଗୂଢ଼ ପ୍ରଶ୍ନ

ପ୍ରଜାବିବୃଦ୍ଧୟେ ଯତ୍ତାନ ଦେବର୍ଷିସ୍ତାନ୍ ଦଦର୍ଶ ହ ।
ଉବାଚ ଚାଥ ହର୍ଯଶ୍ୱାଃ କଥଂ ସ୍ରକ୍ଷ୍ୟଥ ବୈ ପ୍ରଜାଃ ॥
ଅଦୃଷ୍ଟ୍ୱାନ୍ତଂ ଭୁବୋ ଯୂୟଂ ବାଲିଶା ବତ ପାଲକାଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୫ମ ଅଧ୍ୟାୟ ॥ ୬ ଶ୍ଳୋକ ]

### ଛପ୍ପୟ

ଆସି ନାରଦ ତହିଁ ଦକ୍ଷ ପୁତ୍ରନତେ ବୋଲେ ।
ସୃଷ୍ଟି କରିବ କିସ ବିନା ଭୂମି ସବରି ପେ ତୋଲେ ॥
ଏକ ପୁରୁଷ କୋ ରାଷ୍ଟ୍ର ମାର୍ଗ ବିନୁ ବିଲ ତୁମ ଦେଖ୍ୟା ।
ଉଭୟ ବାହିନୀ ନଦୀ, ନାରି କୁଲଟା ପତି ପେଖ୍ୟା ॥
ଘର ପଚ୍ଚୀସ ପଦାର୍ଥ କୋ, ବହୁରଂଗୀ ଇକ ହଂସକୁଁ ।
ବିନୁ ଜାନେ ଛୁରି ଚକ୍ର ତୁମ, ବୃଦ୍ଧି କରିବ କିସ ବଂଶକୁଁ ॥

ସଂସାରରେ ଯିଏ ଯେଉଁ ପ୍ରକୃତିର ହୋଇଥାଏ ସେ ସେହି ପ୍ରକାର ପ୍ରକୃତି ପୁରୁଷ ସହ ସମ୍ପର୍କ ରକ୍ଷା କରି ତାକୁ ପ୍ରେମକରେ । ସଂସାରର ସବୁ ଲୋକ ଇଚ୍ଛା କରନ୍ତି, ଆମର ଯେପରି ବିଚାର ସେହିପରି ପରିଚାଳିତ ହୁଅନ୍ତୁ । ଆମର ମତର ଅଭିବୃଦ୍ଧି ଘଟୁ । ତ୍ୟାଗୀ ଚାହେଁ ସମସ୍ତେ ତ୍ୟାଗୀ ହୁଅନ୍ତୁ । ରାଗୀ ଇଚ୍ଛାକରେ ସମସ୍ତେ ରାଗୀ ହୁଅନ୍ତୁ । ପିଲାଟି ଚାଲିବା ସମୟରେ ଗଡ଼ିପଡ଼େ ଖସିପଡ଼େ, ଖାଲରେ ପଡ଼ିଯାଏ, ଦୟାଳୁ ପୁରୁଷ ତାକୁ ଉଠାଇପକାଇ, ବିପତ୍ତିରୁ ରକ୍ଷାକରେ, ଉଚିତ ମାର୍ଗରେ ପରିଚାଳିତକରେ । କୌଣସି ସ୍ୱାର୍ଥ ସାଧନ ନିମନ୍ତେ ସେ ଏହା କରେ ନାହିଁ, କାହାଠାରୁ କିଛି ପାଇବା ଆଶା ରଖି ସେ ମଧ୍ୟ ଏହା କରି ନ ଥାଏ । ଭୁଲ ଭଟକାକୁ ସିଧା ଓ ଉଚିତ ମାର୍ଗରେ ପରିଚାଳିତ କରିବା ତାର ପ୍ରକୃତ ସ୍ୱଭାବ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ବ୍ରହ୍ମଲୋକରେ ବିଚରଣ କରୁଥିବା ମହାମୁନି ନାରଦ ଯେତେବେଳେ ଦେଖିଲେ ବିଶୁଦ୍ଧ ହୃଦୟବାନ ଦକ୍ଷଙ୍କର ଦଶ ସହସ୍ର ପୁତ୍ର ହର୍ଯ୍ୟଶ୍ୱମାନଙ୍କୁ ସାମାନ୍ୟ ମାୟା ଭାବ ସ୍ପର୍ଶ କରିଥିଲା ସେମାନେ ନାରାୟଣ ସରୋବରରେ ସ୍ନାନ କରିବା ଫଳରେ ତାହା ଧୋଇ ହୋଇ ଯାଇଛି । ଏହିପରି ଶୁଦ୍ଧଚରିତସମ୍ପନ୍ନ ବାଳକ ପିତାଙ୍କ ଆଦେଶରେ ବଶୀଭୂତ ହୋଇ ସଂସାର ବନ୍ଧନରେ ପ୍ରବେଶ କରିବା ଆଦୌ ଉଚିତ ନୁହେଁ । ଏଭଳି ଶାନ୍ତ ସରଳ ବାଳକ କେମିତି ଏହିପରି କାର୍ଯ୍ୟରେ ପ୍ରବେଶ କରିବେ ଏହା ଆଦୌ ଉଚିତ ନୁହେଁ । ଆଜି ବୋହୂ ମୁହଁ ଫୁଲାଇ ବସିଛି, କାଲି ଭୃତ୍ୟ ଭୁଲ କଲେ ତା ଉପରେ ରାଗ ଆସିବ । କେତେବେଳେ ପିଲାଛୁଆ ହେବନାହିଁ । ପିଲାଛୁଆ ହେଲେ ରୋଗ ବ୍ୟାଧିରେ ପଡ଼ିବେ । ଔଷଧ ଆଣ, ମନ୍ତ୍ର, ଯନ୍ତ୍ର, ତନ୍ତ୍ରର ଆଶ୍ରୟ ନିଅ । ଦିନ ରାତି ଦୁଃଖରେ ହାୟ ହାୟ କର । ଗୃହସ୍ଥର କର୍ତ୍ତବ୍ୟ ହେଲା ଚିନ୍ତାରୂପକ ଗଣ୍ଠିଲି ମୁଣ୍ଡରେ ରଖି ଭଗ୍ନହୀନ ଭାବରେ ଗତି କରିବା । ଏହି ପିଲାମାନେ ଭୁଲ୍ ପଥରେ ପରିଚାଳିତ ହେଉଛନ୍ତି । ଏମାନଙ୍କୁ ଉଚିତ ପଥରେ ପରିଚାଳିତ କରିବାକୁ ହେବ ।" ନାରଦଙ୍କ ମନରେ ଏହିପରି ବହୁ କଥା ଦେଖାଦେଲା । ସେ ବୀଣା ଧରି ବାହାରି ପଡ଼ିଲେ ଓ କିଛି ସମୟ ପରେ ସେ ନାରାୟଣ ସରୋବରଠାରେ ପହଁଞ୍ଚିଗଲେ ।

ନାରଦ ମନେ ମନେ ଭାବିଲେ, ଗୃହସ୍ଥଧର୍ମରେ ପାଣ୍ଡି ହୋଇ ପ୍ରଜାବୃଦ୍ଧି ମାୟାରେ ତୁମେମାନେ ପ୍ରବେଶ କରନାହିଁ ବୋଲି ସେମାନଙ୍କୁ କହିବି । ସିଧାସଳଖ ଭାବରେ ଏହି ବାଳକମାନଙ୍କୁ କହିଲେ ସେମାନେ ମୋ କଥାକୁ ଗ୍ରହଣ କରିବେନାହିଁ । କାରଣ ଏମାନେ ସବୁ ପିତାଙ୍କ ଆଦେଶ ପାଳନକୁ ପରମଧର୍ମ ଭାବରେ ଗ୍ରହଣ କରିନେଇଛନ୍ତି । ଏଣୁ ତାଙ୍କୁ କିଛି ଉପାଖ୍ୟାନ କହି ବୁଝାଇବାକୁ ପଡ଼ିବ, ଯାହାଫଳରେ କି'ସେମାନେ ସ୍ୱତଃ ସମସ୍ତକଥା ବୁଝିପାରି ଏହି ସବୁ ଅସୁବିଧାରୁ ନିବୃତ୍ତ ହୋଇଯିବେ । ମୋତେ ଆଉ ସିଧାସଳଖ କିଛି କହିବାକୁ ପଡ଼ିବନାହିଁ । ନାରଦ ମହର୍ଷି ଏକଥା ଚିନ୍ତାକରି ସେମାନଙ୍କ ସମ୍ମୁଖରେ ଯାଇ ପହଞ୍ଚିଲେ । ସେମାନେ ସେତେବେଳକୁ ନାରାୟଣ ସରୋବରରେ ସ୍ନାନ ସାରି ଜଳରେ ଠିଆହୋଇ ମନ୍ତ୍ର ଜପ କରୁଥିଲେ । ସମସ୍ତଙ୍କର ଆଖି ବନ୍ଦଥିଲା । ନାରଦ ସେମାନଙ୍କ ଆଡ଼କୁ ଆସୁଛନ୍ତି ଏକଥା ସେମାନେ ଆଦୌ ଜାଣିପାରିନଥିଲେ । ନାରଦ ମହର୍ଷି ବୀଣାରେ ତାନଦେଇ କହିଲେ—ଦକ୍ଷଙ୍କର ପ୍ରିୟ ପୁତ୍ର ! ହର୍ଯ୍ୟଶ୍ୱ ! ଜୟ ଶ୍ରୀ ସୀତାରାମ । ନମୋ ନାରାୟଣ ।"

ଏକଥା ଶୁଣି ସମସ୍ତେ ନାରଦ ମହର୍ଷିଙ୍କ ଆଡ଼କୁ ଦୌଡ଼ି ଆସି ତାଙ୍କ ପାଦଛୁଇଁ ଭକ୍ତି ଜଣାଇବାକୁ ଲାଗିଲେ । ସେମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ପାଦ ଛୁଇଁଲେ । କିନ୍ତୁ ସେମାନେ ଥିଲେ ଦଶହଜାର । ସେମାନେ ସମସ୍ତେ ପ୍ରେମରେ ଏତେ ମଗ୍ନ ହୋଇଗଲେ ଯେ ଦୌଡ଼ା ଦୌଡ଼ି ଠେଲାପେଲା ହୋଇ ନାରଦଙ୍କ ପାଦଛୁଇଁ ପ୍ରଣାମ କରିବାକୁ

ଆଗେଇ ଆସିଲେ । ସମସ୍ତେ ନିଜେ ନିଜେ ଭାବିଲେ ଯେ ସେମାନେ ଆଗ ପାଦ ଛୁଇଁବେ । ନାରଦ ତାଙ୍କର ବୀଣାଖଣ୍ଡିକୁ ଦୃଢ଼ତା ସହକାରେ ଧରି କହିଲେ—ଆରେ ଭାଇ ! ଆସ୍ତେ ଆସ୍ତେ ଆସି ଚରଣ ସ୍ପର୍ଶ କର କେହି କାହାକୁ ଠେଲାପେଲା କରନାହିଁ । ସମସ୍ତେ ନାରଦଙ୍କ ଚରଣ ସ୍ପର୍ଶ କରି ପ୍ରଣାମ କରି ସାରିବା ପରେ ସମସ୍ତଙ୍କୁ ତୃଣ ଆସନରେ ବସାଇ ନାରଦ କୁଶଳାଦି ପ୍ରଶ୍ନ ପଚାରିଲେ ।

କୁଶଳାଦି ପ୍ରଶ୍ନ ପଚାରି ସାରିବା ପରେ ନାରଦ କହିଲେ—ପୁତ୍ରଗଣ ! ତୁମେମାନେ ତ ସବୁ ସୁକୁମାର ବାଳକ ଅଛ । ତୁମ ସମସ୍ତଙ୍କର ଆକୃତି, ପ୍ରକୃତି, ଶୀଳ ସ୍ୱଭାବ, ସଦାଚାର ଆଚାର ବ୍ୟବହାର କଥାବାର୍ତ୍ତା ସବୁ ଏକ ପ୍ରକାରର । ତୁମେମାନେ ତୁମର ପିତାଙ୍କ ଘରେ ଏକା ଛାଡ଼ି ଏଇ ଜଙ୍ଗଲକୁ କାହିଁକି ଆସିଛ ? କ'ଣ ଏହି ନିବିଡ଼ ଜଙ୍ଗଲରେ ତୁମେମାନେ ବାସକରିବ ?"

ସେମାନଙ୍କ ମଧ୍ୟରୁ ଜଣେ କହିଲା—ଭଗବାନ ଆମେ ଆମର ପୂଜ୍ୟ ପିତାଙ୍କ ଆଦେଶ ଅନୁସାରେ ଏଇ ସୃଷ୍ଟିର ବୃଦ୍ଧି ପାଇଁ ଇଚ୍ଛା କରୁଅଛୁ । ସୃଷ୍ଟିର ବୃଦ୍ଧି ଘଟିଲେ ଏଇ ପୃଥିବୀସ୍ଥିତ ପ୍ରଜାମାନଙ୍କୁ ପ୍ରଜାପତି ଭାବେ ପାଳନ କରିବୁ ।"

ନାରଦ ହସି ହସି କହିଲେ—ପ୍ରଜାଙ୍କର ପାଳନ ବୃଦ୍ଧିଦ୍ୱାରା ହେବ । ଏହା ଖାଲି କଥାରେ କହିଦେଲେ ହେବ ?"

ସେମାନେ କହିଲେ—"ନା' ମହାରାଜ ! ପ୍ରଜାପାଳନ କରିବାକୁ ହେଲେ ପ୍ରଜା-ମାନଙ୍କର ବୃଦ୍ଧି ନିତାନ୍ତ ଦରକାର ।"

ଏହାପରେ ନାରଦ ହସିକରି କହିଲେ—ତୁମେମାନେ ପୃଥିବୀର ପ୍ରଜାମାନଙ୍କର ପାଳନ କିପରି କରିବ, ତୁମମାନଙ୍କର ଏତିକ ବୃଦ୍ଧି ନାହିଁ। ଯଦି ତୁମେ ଏହି ସମ୍ପୂର୍ଣ୍ଣ ପୃଥିବୀର ଭିତରକୁ ନଦେଖି ପାରିଛ ତେବେ ଏଥିରେ ବାସକରୁଥିବା ପ୍ରଜାମାନଙ୍କର ପାଳନ କିପରି କରିବ, ପ୍ରଥମେ ପୃଥିବୀର ଅନ୍ତରକୁ ଚିହ୍ନିବା ପାଇଁ ଚେଷ୍ଟା କର ।"

ଏକଥା ଶୁଣି ହର୍ଯଶ୍ୱ ଚିନ୍ତାରେ ପଡ଼ିଗଲେ । ବିଚରା ସରଳ ପ୍ରକୃତିର ଲୋକ । ସେ କହିଲେ—"ହଁ ମହାରାଜ ! ପ୍ରକୃତରେ ଏହି ପୃଥିବୀର ଅନ୍ତରକୁ ତ ଆମେ ଚିହ୍ନିନାହୁଁ ।"

ନାରଦ ଟିକିଏ କ୍ରୋଧ ଭାବରେ କହିଲେ—"କ'ଣହେବ, ତୁମେମାନେ ସବୁ ପଥର, ଜଡ଼ । କାରଣ ପୃଥିବୀ କ'ଣ ବୋଲି ଯଦି ତୁମେମାନେ ଜାଣିନାହୁଁ, ତାହା କିପରି ତିଆରି ହୋଇଛି ମଧ୍ୟ ଜାଣିନାହଁ । ତା'ର ପାଖରେ କେଉଁ ବସ୍ତୁ ରହିଛି ତାକୁ ମଧ୍ୟ ଜାଣିନାହୁଁ । ଗୋଟିଏ ପାଦରେ ଏହି ସମ୍ପୂର୍ଣ୍ଣ ବିଶ୍ୱବ୍ରହ୍ମାଣ୍ଡ, ତା ଉପରେ ବିଷ୍ଣୁଙ୍କ ତିନିପାଦ

ବିଭୂତ ଅବସ୍ଥିତ । କିଛି ନଜାଣି ସୃଷ୍ଟି ବୃଦ୍ଧି ନିମନ୍ତେ ଆଗେଇ ଆସିଲେ ଏଥିରେ ଲାଭ କ'ଣ ? ଠିକ୍‌ଅଛି ମୁଁ ତୁମମାନଙ୍କର ବୁଦ୍ଧି ପରୀକ୍ଷା କରିବା ନିମନ୍ତେ ତୁମମାନଙ୍କୁ ଦଶଟି ପ୍ରଶ୍ନ ପଚାରିବି । ବୁଦ୍ଧିସୁଦ୍ଧି ଯଦି ତୁମ୍ଭେମାନେ ସେ ସବୁ ପ୍ରଶ୍ନର ଉତ୍ତର ଦେଇପାରିବ ତେବେ ମୁଁ ଜାଣିବି ଯେ, ତୁମେମାନେ ସୃଷ୍ଟି କରିବାକୁ ସମର୍ଥ ।''

ସୂତ କହିଲେ —''ଶୁଣନ୍ତୁ ! ଏହି ପରୀକ୍ଷା ଦେବା ସବୁଠାରୁ ବହୁତ କଷ୍ଟକର ବ୍ୟାପାର । ପ୍ରତି କ୍ଷଣ କ୍ଷଣରେ ଏଥିରେ ସନ୍ଦେହ ସୃଷ୍ଟି ହେବ । ଯଦି କିଏ କୌଣସି ପରୀକ୍ଷା ଦେଇଥିବ ତେବେ ଏହାର ଉତ୍ତର ସେ ଭଲ ଭାବରେ ଦେଇପାରିବ । ଭଗବାନ ସବୁ ପ୍ରକାର ବିପତ୍ତି ଦେଇଥାଆନ୍ତି କିନ୍ତୁ ପରୀକ୍ଷାରୂପକ ଚକ୍ରରେ ପକାନ୍ତି । ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ବ୍ୟକ୍ତି ମଧ୍ୟ ଏଥିରେ ପଡ଼ିଯାଏ । ଯିଏ ଉତ୍ତୀର୍ଣ୍ଣଲାଭ କରି ନପାରେ ସେ ଘରେ, ଘାଟରେ କେଉଁଠି ରହିପାରେ ନାହିଁ । ସେ ସର୍ବଦା ବିଚାରରେ ମଗ୍ନ ହୋଇ ରହେ ।''

ଶ୍ରୀ ଶୁକଦେବ କହିଲେ ରାଜା ! ଯେତେବେଳେ ନାରଦ ସେମାନଙ୍କୁ ପରୀକ୍ଷା ଦେବା ନିମନ୍ତେ କହିଲେ, ସେତେବେଳେ ସେମାନେ ହାତଯୋଡ଼ି କହିଲେ – ବ୍ରହ୍ମନ୍ ! ଆପଣ ଯାହା ପଚାରିବା ପାଇଁ ଇଚ୍ଛା କରୁଛନ୍ତି ତାହା ପଚାରି ପାରନ୍ତି ।''

ସେମାନଙ୍କ କଥା ଶୁଣି ନାରଦ ଗମ୍ଭୀର ଭାବରେ କହିଲେ—ଠିକ୍ ଅଛି, ଦଶଟି ପ୍ରଶ୍ନ ମଧ୍ୟରୁ ମୋର ପ୍ରଥମ ପ୍ରଶ୍ନ ହେଲା ତୁମେମାନେ ଏହି ପୃଥିବୀର ଶେଷ କେଉଁଠି ଦେଖିଛ କି ?''

ସେମାନେ ସମସ୍ତେ ହାତଯୋଡ଼ି କହିଲେ – ନାଁ ଭଗବାନ ,ଆମେମାନେ ଏହି ଭୂମିର ଶେଷ କେଉଁଠି ଦେଖିନାହୁଁ ।''

ଏହାପରେ ନାରଦ କହିଲେ – ତାହାହେଲେ ତୁମେ କପରି ସୃଷ୍ଟି କରି ପାରିବ । ଏହି କଥାକୁ ଟିକିଏ ନିଜ ବୁଦ୍ଧିରେ ବିଚାର କର । ବର୍ତ୍ତମାନ ମୋର ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦିଅ । ତୁମେମାନେ ଜାଣିଛ ଯେ ମୋର ଗତି ଚଉଦ ବ୍ରହ୍ମାଣ୍ଡରେ । ଥରେ ମୁଁ ବୁଲିବୁଲି କରି ଫେରୁଥିବା ସମୟରେ ଗୋଟିଏ ଖୁବ୍ ବଡ଼ ଦେଶରେ ଆସି ପହଞ୍ଚିଲି । ଏହି ବିରାଟ ଦେଶରେ ଜଣେ ମାତ୍ର ପୁରୁଷ ବାସ କରୁଥିଲେ । ତାଙ୍କୁ ରାଜା, ମନ୍ତ୍ରୀ ବା ପୁରୋହିତ ଭାବରେ ତୁମେମାନେ ଗ୍ରହଣ କରିପାର । ସ୍ତ୍ରୀ, ପୁରୁଷ, ନପୁଂସକ ଏକାଙ୍କି ବାସ କରୁଥିବା ଅଦ୍ୱିତୀୟ ପୁରୁଷ ଜାଣିଛ କି ?

ହର୍ଯ୍ୟଶ୍ୱ କହିଲେ –''ନାଁ, ମହାରାଜ ! ଆମକୁ ଏହି ପରି ଦେଶର ଠିକଣା ଜଣାନାହିଁ । ଆଉ ସେହି ପୁରୁଷଙ୍କୁ ବା କପରି ଚହ୍ନିବୁ ବୋଲି କହୁଛନ୍ତି ।''

ନାରଦ କ୍ରୋଧହୋଇ କହିଲେ—"ତାହା ହେଲେ ତୁମେମାନେ ତୁମର ଏହି ବୁଦ୍ଧିବଳରେ ପ୍ରଜା ବୃଦ୍ଧି ନିମନ୍ତେ ସାହସ କରିଛ । ସେହି ପୁରୁଷଙ୍କୁ ନ ଜାଣିଲେ ସବୁ କାର୍ଯ୍ୟ ବ୍ୟର୍ଥରେ ପରିଣତ ହୁଏ । ଏବେ ମୋର ତୃତୀୟ ପ୍ରଶ୍ନର ଉତ୍ତର ଦିଅ । ଥରେ ମୁଁ ଗୋଟିଏ ଗାତରେ ପଡ଼ିଗଲି । ତା ଭିତରେ ଆହୁରି ଅନେକ ଜୀବ ମଧ୍ୟ ପଡ଼ିଯାଇଥିଲେ । ମୁଁ ସେହି ଗାତ ଭିତରେ ପଡ଼ିଗଲା ପରେ ତାଭିତରେ ବୁଲି ବୁଲି ଫେରି ଆସିବାକୁ ଆଉ ବାଟ ପାଇଲି ନାହିଁ । ତା ଭିତରେ ଯିଏ ପଡ଼ିଯାଏ ସେ ତାରି ଭିତରେ ବୁଲୁଥାଏ । ଗାତ ମଧ୍ୟ ଦେଇ ତା ଭିତରେ ପଶିଯାଏ କିନ୍ତୁ ବାହାରି ଆସିବା ଅତ୍ୟନ୍ତ କଠିନ । ତୁମେମାନେ କେବେ ଏହି ଗାତ ଦେଖିଛ ?"

ହର୍ଯଶ୍ୱ କହିଲେ –"ନା, ମହାପ୍ରଭୁ ! ଆମେମାନେ କେବେହେଲେ ଏହି ଗାତ ଦେଖିନାହୁଁ ।"

ନାରଦ ପ୍ରେମ ସହକାରେ କହିଲେ—"ଆରେ ପିଲାଏ, ସେହି ଗାତର ମାର୍ଗ ନଦେଖି ସୃଷ୍ଟି କରିବା ଅତ୍ୟନ୍ତ କଷ୍ଟଦାୟକ । ବର୍ତ୍ତମାନ ମୋର ଚତୁର୍ଥ ପ୍ରଶ୍ନର ଉତ୍ତର ଦିଅ । ମୁଁ ଏପରି ସ୍ତ୍ରୀ ଲୋକଟିଏ ଦେଖିଛି ଯିଏ କି କ୍ଷଣ କ୍ଷଣ ତାର ରୂପ ବଦଳାଉଥାଏ । କେତେବେଳେ ନୀଳଶାଢ଼ୀ ପରିଧାନ କରି ରକ୍ତବର୍ଣ୍ଣର ଓଢ଼ଣା ପକାଏ । କେତେବେଳେ ଶୁଭ୍ର, ସ୍ୱଚ୍ଛ ବଗୁଲା ପକ୍ଷୀ ରଙ୍ଗ ସମାନ ଧଳା ଚଦର ଓଢ଼ଣା ଟାଣିଥାଏ । କେତେବେଳେ ତା ବାଳକୁ ଲମ୍ବାବେଣୀ ଭାବରେ ସଜାଇଦିଏ କେତେବେଳେ ପୁଣି ବାଳକୁ ଆଲୁରୁ ବାଲୁରୁ କରି ରଖିଥାଏ । ଆଉ କେତେବେଳେ ତାର ପଛ ବାଳକୁ କାଟି ଦେଇ ଆଉ ଏକପ୍ରକାର ନୂତନ କେଶବିନ୍ୟାସ ଦେଖାଇଥାଏ । କେତେବେଳେ ମୁହଁକୁ ଲୁଚାଇଥାଏ ଓ କେତେବେଳେ ଚନ୍ଦ୍ରମୁଖକୁ ଖୋଲି ରଖିଥାଏ । କେବେ କେବେ ଉପରକୁ ମୁହଁ କରି ବାହାରି ନିର୍ଲଜ୍ଜ ସହକାରେ ସ୍ୱାଧୀନ ଭାବରେ ବୁଲିବୁଲି କରେ ତ କେତେବେଳେ କଜଳ, ବନ୍ଦି, ସିନ୍ଦୂର ଲଗାଇଥାଏ । କେତେବେଳେ ପୁଣି ବେଶ୍ୟା ହୋଇଯାଏ ତ କେତେବେଳେ କୁଳବଧୂ ଭାବରେ ଅଭିନୟ କରେ । କେତେବେଳେ ନୃତ୍ୟ କରେ ତ କେତେବେଳେ ହସି ହସି ଗଡ଼ିଯାଇ ଗୀତବୋଲେ । କେତେବେଳେ ଖାଉଥାଏ ତ କେତେବେଳେ ପିଉଥାଏ । ପ୍ରତି ମୂହୂର୍ତ୍ତରେ ସେ ତାର ରୂପ ବଦଳାଉଥାଏ । ଏହି ବହୁରୂପିଣୀ ଲଳନାକୁ ତୁମେ କେବେ ଦେଖିଛ ?

ହର୍ଯଶ୍ୱ କହିଲେ ମହାରାଜ ! ଆମ ସାମନାକୁ ତ କେବେହେଲେ ସେ ଆସିନାହିଁ ।"

ନାରଦ ବିରକ୍ତ ହୋଇ କହିଲେ – "ତୁମେ ସବୁ ପାଗଳ, ଆରେ ପିଲାଏ ! ସେ ବିଚାର ନାରୀ କାହାକୁ ଲାଜ କରେନାହିଁ । ସେ ସମସ୍ତଙ୍କ ସାମନାରେ ନାଚକରେ । ତୁମେମାନେ ତାକୁ ଦେଖି ମଧ୍ୟ ଦେଖି ପାରୁନାହଁ । ଏଇ ହେଉଛି ତୁମମାନଙ୍କର

ମୂର୍ଖତା । ଏବେ ମୋର ପଞ୍ଚମ ପ୍ରଶ୍ନ ଶୁଣ । ମୁଁ ଏପରି ଏକ ପୁରୁଷକୁ ଦେଖିଥିଲି, ଯିଏ କି ନିଜକୁ ବଡ଼ କୁଳୀନ, ସଦାଗୃହୀ ବୋଲି କହେ । କିନ୍ତୁ ତାର ସ୍ତ୍ରୀ ତା ସମ୍ମୁଖରେ ବ୍ୟଭିଚାର ବୃତ୍ତି କରେ । ସେ ସବୁ ଦେଖିକରି ମଧ୍ୟ କିଛି କହେନାହିଁ ।"

ହର୍ଯଶ୍ୱ କହିଲେ—"ମହାରାଜ ! ଆମେମାନେ ଏହି ନିର୍ଲଜ୍ଜ ପୁରୁଷକୁ କେବେ-ହେଲେ କେଉଁଠି ଦେଖିନାହୁଁ ।"

ନାରଦ କହିଲେ—"ତାହାହେଲେ ତୁମେମାନେ କିଛି ଦେଖିନାହଁ ବା ଜାଣି-ନାହଁ । ଆଚ୍ଛା ଠିକ୍ ଅଛି । ବର୍ତ୍ତମାନ ମୋର ଷଷ୍ଠ ପ୍ରଶ୍ନର ଉତ୍ତର ଯଦି ଦେଇ ପାରିବ ତେବେ ଦିଅ । ମୁଁ ଏପରି ଏକ ନଦୀ ଦେଖିଛି ଯିଏ କି ଉତ୍ତର ଦିଗରୁ ବହିଆସିଛି ଓ ଦକ୍ଷିଣ ଦିଗରୁ ମଧ୍ୟ ବହିଆସୁଛି । ତୁମେ ସେହି ନଦୀ କେଉଁଠି ଅଛି ଦେଖିଛ କି ?

ହର୍ଯଶ୍ୱ ଆଶ୍ଚର୍ଯ ହୋଇ କହିଲେ — "ଭଗବାନ ! ଆପଣ କେମିତି ପ୍ରଶ୍ନ ପଚାରୁଛନ୍ତି । ସବୁ ନଦୀ ଉତ୍ତର ଦିଗରୁ ଦକ୍ଷିଣ ଦିଗକୁ ବହି ଆସନ୍ତି ଆମେ ଦେଖିଛୁ । କିନ୍ତୁ ଦୁଇ ଦିଗରୁ ପ୍ରବାହିତ ବା ଉଭୟବାହିନୀ ନଦୀ ଥିବାର ଆମେ ଏ ପର୍ଯନ୍ତ ଦେଖିନାହୁଁ ।"

ନାରଦ କହିଲେ—ସେଇଥିପାଇଁ ତ ମୁଁ କହୁଛି ତୁମେସବୁ ପିଲା । ତୁମମାନଙ୍କର ବୁଦ୍ଧି କମ୍ ଓ ହୃଦୟ ସଫା । ହେ ମୋର ପ୍ରିୟ ବାଳକଗଣ ! ମୋର ଏଇ ପ୍ରଶ୍ନକୁ ଚିନ୍ତାକର ଓ ବିଚାରକର । ଏବେ ମୋର ସପ୍ତମ ପ୍ରଶ୍ନଟିକୁ ମଧ୍ୟ ଶୁଣ । ଏକ ସୁନ୍ଦର ଚିତ୍ର ବିଚିତ୍ର ରଙ୍ଗ ବେରଙ୍ଗ ୨୫ ତତ୍ତ୍ୱରେ ତିଆରି ଘର ଦେଖିଛି । ତା ଭିତରେ ପ୍ରବେଶ କରିବା ମାତ୍ରକେ ପ୍ରାଣୀ ନିଜର ତତ୍ତ୍ୱକୁ ଭୁଲିଯାଏ । ତୁମେମାନେ ମଧ୍ୟ ତାକୁ ଦେଖି-ପାରୁଛ । ଏବେ କୁହ ସେଟା କ'ଣ ?"

ହର୍ଯଶ୍ୱ ଚିନ୍ତାକରି କହିଲେ—"ମହାରାଜ ! ଦେଖିଛୁ, ହେଲେ ବର୍ତ୍ତମାନ ଆମର ତାହା ମନେ ପଡ଼ୁନାହିଁ ।"

ନାରଦ କହିଲେ—ସେଇ ତ ଅଜ୍ଞାନ । ସେଇଥିପାଇଁ ମୁଁ କହୁଛି ଏହି ଅଳ୍ପ ବୁଦ୍ଧିରେ ତୁମେମାନେ କିପରି ସୃଷ୍ଟି କରିବାପାଇଁ ସକ୍ଷମ ହେବ ! ବର୍ତ୍ତମାନ ମୋର ଅଷ୍ଟମ ପ୍ରଶ୍ନର ଉତ୍ତର ଦିଅ । ତୁମ ସମ୍ମୁଖରେ ଉଡ଼ୁଥିବା ଏପରି କୌଣସି ଏକ ହଂସ ଦେଖିଛ କି ଯାହାର ଡେଣା ଅନେକ ରଙ୍ଗରେ ଚିତ୍ର ବିଚିତ୍ର ହୋଇଛି ?"

ହର୍ଯଶ୍ୱ କହିଲେ—"କୃପାନାଥ ! ଆମେ ବହୁତ ଧଳା ହଂସ ଦେଖିଛୁ କିନ୍ତୁ ଚିତ୍ର ବିଚିତ୍ର ଡେଣାଥିବା ହଂସ ତ ଆମେ କେବେ ଦେଖିନାହୁଁ ।"

ନାରଦ କହିଲେ—ଆରେ ଭାଇ ! ଦେଖିକରି ଦେଖିପାରୁନାହଁ । ଏହା ହେଉଛି ତୁମମାନଙ୍କର ଅଜ୍ଞାନ । ଅଚ୍ଛା ! ଏବେ ମୋର ନବମ ପ୍ରଶ୍ନର ଉତ୍ତର ଦିଅ । ଏପରି

ଏକ ଚକ୍ର ଅଛି ଯିଏ କି ନିଜେ ନିଜେ ବୁଲୁଛି । ତାହା ବଜ୍ର ଓ କ୍ଷୁରା ଦ୍ୱାରା ତିଆରି ହୋଇଛି । ତାହା ମଧ୍ୟ ବଡ଼ ଧାରୁଆ ଓ ସର୍ବଦା ଘୂରୁଥାଏ ।''

ହର୍ଯଶ୍ୱ କହିଲେ—ଦୟାସାଗର ! ଆମେମାନେ ସେହିଭଳି କୌଣସି ଚକ୍ର ଏ ପର୍ଯ୍ୟନ୍ତ ଦେଖିନାହୁଁ ।

ନାରଦ କହିଲେ – ଆରେ ତୁମେମାନେ ତ ତାହା ସବୁବେଳେ ଆଖି ଆଗରେ ଦେଖିବାକୁ ପାଉଛ । ହଉ ଠିକ ଅଛି, ବର୍ତ୍ତମାନ କୁହ ତୁମେମାନେ ତୁମର ସର୍ବଜ୍ଞ ପିତାଙ୍କ ଆଦେଶକୁ ଠିକ୍ ଭାବରେ ବୁଝିବା ନିମନ୍ତେ ସମର୍ଥ ନା ନୁହଁ ?''

ହର୍ଯଶ୍ୱ କହିଲେ ''ମହାରାଜ । ଆମର ପିତା ସର୍ବଜ୍ଞ ଅଟନ୍ତି କି ସର୍ବଜ୍ଞ ନୁହନ୍ତି ଏହା ଆମେମାନେ ଜାଣିନାହୁଁ ଏବଂ ସେ ଯେଉଁ ଆଦେଶ ପ୍ରଦାନ କରିଛନ୍ତି ସେ ଆଦେଶ ବାସ୍ତବ ବା ଅବାସ୍ତବ ଆମେମାନେ ମଧ୍ୟ ଜାଣିନାହୁଁ । ସେ ସୃଷ୍ଟି ବୃଦ୍ଧି କରିବା ନିମନ୍ତେ ତପସ୍ୟା କରିବାକୁ ଆମମାନଙ୍କୁ ଆଜ୍ଞା ଦେଇଥିଲେ । ତାହା ପାଳନ କରିବାପାଇଁ ଆମେମାନେ ଏଠାରେ ଉପଗତ ହୋଇଅଛୁ ।,,

ନାରଦ କହିଲେ ''ଦକ୍ଷ ତୁମମାନଙ୍କର ଉପଯୁକ୍ତ ପିତା ନୁହନ୍ତି । ଯଥାର୍ଥ ପିତା ଆଉ ଜଣେ ଅଛନ୍ତି । ତପସ୍ୟା ପରେ କରିବ । ପ୍ରଥମେ ମୋର ଏହି ଦଶଟି ପ୍ରଶ୍ନକୁ ବିଚାରକର । ତୁମେମାନେ ପ୍ରଶ୍ନଗୁଡ଼ିକ ତ ଶୁଣିଲ । ବର୍ତ୍ତମାନ ସେଗୁଡ଼ିକୁ ସ୍ଥିରଚିତ୍ତରେ ହୃଦୟଙ୍ଗମ କର । ସର୍ବଶେଷରେ ଯେଉଁ ପ୍ରକାର ସିଦ୍ଧାନ୍ତରେ ପହଞ୍ଚିବ ସେଇଥିରୁ ତୁମର ଯଥାର୍ଥ ପିତାଙ୍କର ବାସ୍ତବିକ ଆଦେଶକୁ ଠିକ୍ ଭାବରେ ବୁଝିପାରିବ ।''

ଶ୍ରୀ ଶୁକଦେବ କହିଲେ—''ରାଜା ! ନାରଦ ମହର୍ଷି ଏଇସବୁ କଥା କହି ବୀଣା ବଜାଇ ରାମକୃଷ୍ଣଙ୍କର ଗୁଣଗାନ କରିବାକୁ ଲାଗିଲେ । ଅମୃତର ବୀଜ ବପନକରି ନିବୃତ୍ତ ହେଲେ । କାରଣ ଫଳ ଲାଗିଗଲେ ତାକୁ ଖାଇ ଆନନ୍ଦ ହେବାକୁ ପଡ଼େ ।

## ଛପ୍‌ପୟ

କୋ ହୈ ସଚେ ପିତା ସବନ କେ ଅତିଶୟ ଜ୍ଞାନୀ ।
କା ଉନକୀ ହର୍ଯଶ୍ୱ ବାସ୍ତବିକ ଆଜ୍ଞା ଜାନୀ ॥
ପୁତ୍ରୋ ! କସ ତୁମ ସୃଷ୍ଟି କରୋ ଇନ ବାତନ କାନେ ।
ବିନା କରେ ଉପଦେଶ ହମାରୋ ନହିଁ ମନ ମାନେ ॥
ଇତନୋ କହିକେ ଦେବ ଋଷି ପ୍ରେମ, ସହିତ ପେଖତ ଭୟେ ।
କୁଟ ବଚନ ମୁନି ଦକ୍ଷ ସୁତ, ଧ୍ୟାନ ମଗ୍ନ ସବ ହୈ ଗୟେ ॥



# ହର୍ଯ୍ୟଶ୍ୱ ନାରଦଙ୍କ କଣ୍ଟୁ ବଚନରେ ବିମର୍ଷ

ତନ୍ନିଶମ୍ୟାଥ ହର୍ଯ୍ୟଶ୍ୱା ଔତ୍ପତ୍ତିକମନୀଷୟା ।
ବାଚଃ କୁଟଂତୁ ଦେବର୍ଷେ ସ୍ୱୟଂ ବିମମୃଶୁର୍ଧିୟା ।।

[ ଶ୍ରୀ ଭାଗବତ ।। ୬ଷ୍ଠ ସ୍କନ୍ଦ ।। ୫ମ ଅଧ୍ୟାୟ ।। ୧୦ ଶ୍ଳୋକ ]

—ଛପ୍‌ପୟ—

ନାରଦ କେ ସୁନି କୁଟ ପ୍ରଶ୍ନ ମିଲ ଧ୍ୟାନ ଲଗାୟୋ ।
ଲିଙ୍ଗ ଦେହ ଛ ଭୂମି ଅନ୍ତ କବ କାକୋ ପାୟୋ ।।
ନିତ୍ୟ ମୁକ୍ତ ହରି ଲଖେ ବିନା ଫଲ କର୍ମନ କୋ ନହିଁ ।
ବ୍ରହ୍ମ ରୂପବିଲ ପ୍ରବିଶି ଲୌଟି ଫିର ଆୟୋ କୋ କହି ।।
ବୁଦ୍ଧି ସ୍ୱୈରିଣୀ ନାରି ହୈ, ପତି ଅଜ୍ଞାନୀ ଜୀବ ହୈ ।
ଉଭୟ ବାହିନୀ ନଦୀ ଜିହି, ମାୟା ଜିହି ପତି ଶିବ ହୈ ।।

ସଦ୍‌ଗୁରୁ ପ୍ରତ୍ୟକ୍ଷ ଭାବରେ ଖୁବ୍ କମ୍ ପ୍ରଶ୍ନ କରିଥାଆନ୍ତି । କାରଣ ତାହା ଯୋଗ୍ୟ ବୁଦ୍ଧିମାନ ତଥା ଅଧିକାରୀ ଶିଷ୍ୟମାନଙ୍କ ପାଇଁ ସଙ୍କେତ ସ୍ୱରୂପ ଯଥେଷ୍ଟ ଅଟେ । ଗୋଟିଏ କଥା - ଦେବତା, ଅସୁର, ମାନବ ଏହି ତିନିଜଣ ମିଳି ଲୋକ ପିତାମହ ବ୍ରହ୍ମାଙ୍କ ନିକଟରେ ପହଞ୍ଚି କହିଲେ ଆମମାନଙ୍କୁ ସବୁଠାରୁ ଶ୍ରେଷ୍ଠ ଉପଦେଶ ପ୍ରଦାନ କରନ୍ତୁ । ବ୍ରହ୍ମା ସେମାନଙ୍କର ଏହିକଥା ଶୁଣି ତିନଥର ଦ, ଦ, ଦ ଏହିପରି କହିଲେ !”

ଯିଏ ଯେଉଁପରି ଅଧିକାରୀ ସେମାନେ ଏହାର ଅର୍ଥ ସେହିପରି ଭାବରେ ଗ୍ରହଣ କରିନେଲେ । ଦେବତାମାନେ ପ୍ରାୟ ସମସ୍ତେ ଅଜିତେନ୍ଦ୍ରିୟ । ବ୍ରହ୍ମା ସେମାନଙ୍କୁ ଦମନର ଆଚରଣ ନେବାପାଇଁ କହିଲେ ବୋଲି ସେମାନେ ଏଥିରୁ ବୁଝିଲେ । ଅସୁରମାନେ ସାଧାରଣତଃ ଦୟାହୀନ, କମଳାହିନ ସେମାନଙ୍କୁ ଦୟା କରିବା ନିମନ୍ତେ କହିଲେ ବୋଲି

ସେମାନେ ବୁଝିଲେ । ମଣିଷ ପ୍ରାପ୍ତ ଫଳ ନିମନ୍ତେ କାମ କରିବା ପାଇଁ କୃପଣତା ଭାବ ପ୍ରକାଶ କରେ । ଦୟାସାଗର କମଳାସନ ସେମାନଙ୍କୁ ଦାନ କରିବା ନିମନ୍ତେ ଉପଦେଶ ପ୍ରଦାନ କଲେ ବୋଲି ସେମାନେ ଭାବିଲେ । ଏଣୁ ଏହି ପ୍ରକାରରେ ନିଜ ନିଜ ବୁଦ୍ଧିରେ ଯେ ଯେପରି ଅଧିକାରୀ ସେମାନେ 'ଦ'ର ସେହିପରି ଅର୍ଥ ଗ୍ରହଣ କରି ନେଲେ । ଅନଧିକାରୀଙ୍କୁ ଉପଦେଶ ପ୍ରଦାନ କରିବା ବ୍ୟର୍ଥ କାରଣ ସେ କୌଣସି କଥା ଗ୍ରହଣ କରିବାକୁ ସମର୍ଥ ନୁହେଁ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ନାରଦଙ୍କର ଗୂଢ଼ ଅଭିପ୍ରାୟ ଯୁକ୍ତ କଣ୍ଟୁ ବଚନ ଶୁଣି ହର୍ଯ୍ୟଶ୍ୱମାନେ ବିଚାରଶୀଳ ବୁଦ୍ଧି ପ୍ରୟୋଗ କରି ସେହିସବୁ ପ୍ରଶ୍ନର ଉତ୍ତର ଚିନ୍ତା କରିବାକୁ ଲାଗିଲେ । ପ୍ରଜାବୃଦ୍ଧି ନିମନ୍ତେ ତପସ୍ୟା କରିବା କଥା-ସେମାନେ ଭୁଲିଗଲେ । ଦେବର୍ଷି ଆସି ଯେଉଁ ଦଶଟି ପ୍ରଶ୍ନ ପଚାରି ଦେଇ ଗଲେ ସେଗୁଡ଼ିକୁ ବୁଝିବାପାଇଁ ହିଁ କେବଳ ସେମାନେ ଚିନ୍ତାକରି ବସିଲେ ।

ସେମାନେ ଚିନ୍ତାକଲେ—"ନାରଦ କହିଥିଲେ, ଜଣେ ପୃଥିବୀର ଶେଷ ନ ଦେଖିଲେ, କପରି ପ୍ରଜା ସୃଷ୍ଟି କରି ପାରିବ । 'ପୃଥିବୀ' ଅର୍ଥ କଣ ବୁଝିଥିଲେ ? ପୃଥିବୀର ଶେଷ ଦେଖିବା ଅର୍ଥ କ'ଣ ଓ ପ୍ରଜାଙ୍କ ଉତ୍ପତ୍ତି ଅର୍ଥ କ'ଣ ? ଏହି ଉକ୍ତି କଥା ଭାବି ଭାବି ସେମାନଙ୍କ ଜ୍ଞାନୋଦୟ ହେବାକୁ ଲାଗିଲା । ଷୋଡ଼ଶ କଳା ଯୁକ୍ତ ଜୀବ ବୋଲି କୁହା ଯାଇଥିବା ଲିଙ୍ଗ ଶରୀର ହିଁ ଭୂମି । ଏହା ନିତ୍ୟ, ଶୁଦ୍ଧ, ମୁକ୍ତ ଆତ୍ମାର ଅନାଦି ବନ୍ଧନ ଅଟେ । ଯେତେବେଳ ଯାଏ ତାର ଶେଷ ଜଣାଯାଏ ନାହିଁ ଏହାର ପରିଣାମ ବୁଝିହୁଏ ନାହିଁ । କର୍ମ କରିବା ଦ୍ୱାରା ୮୪ ଚକ୍ର ତିଆରି ହୋଇଥାଏ । ସେତେବେଳେ ଅସତ୍ କର୍ମ କରିବା ଦ୍ୱାରା ଯେଉଁ କାର୍ଯ୍ୟ ମୋକ୍ଷ ମାର୍ଗର ଉପଯୋଗୀ ହୁଏ ନାହିଁ ତାର ଆଚରଣ ଦ୍ୱାରା ଲାଭ କ'ଣ ? ଏଣୁ ପ୍ରଥମେ ଆମେ ଜୀବ ଓ ବ୍ରହ୍ମର ବିବେଚନା କରି ଏ ସବୁ କର୍ମର ଯଥାର୍ଥ ସ୍ୱରୂପ ବୁଝିବା ଦରକାର । ଏହା ବୀଣାପାଣି ଭଗବାନ ନାରଦଙ୍କ ପ୍ରଥମ ଗୂଢ଼ ପ୍ରଶ୍ନର ଭାବାର୍ଥ ଅଟେ ।

ଏପରି ଏକ ଦେଶ ଅଛି ଯେଉଁଠାରେ ମାତ୍ର ଜଣେ ପୁରୁଷ ବାସ କରନ୍ତି ବୋଲି ଦେବର୍ଷି କହିଥିଲେ, ଏହା ତାଙ୍କର ଦ୍ୱିତୀୟ ପ୍ରଶ୍ନ ଥିଲା । ନାନା ରୂପରେ ଦେଖାଯାଉ ଥିବା ଜଗତକୁ ସେ ଦେଶ ରୂପେ କହିଥିବେ । ଏଥିରେ ଆମେ ଯେଉଁ ବିଭିନ୍ନ ପ୍ରକାର ବସ୍ତୁ ଦେଖୁଛେ ତାହା ଆମର ଭ୍ରମ ଅଟେ । ବାସ୍ତବରେ ସର୍ବତ୍ର ଏକ ଈଶ୍ୱର ବ୍ୟାପୀକରି ରହିଅଛନ୍ତି । ତାହା "ଏକମେବା ଦ୍ୱିତୀୟମ୍" ବ୍ରହ୍ମଠାରୁ ଅନ୍ୟ କିଛି ଜିନିଷ ଦ୍ୱିତୀୟ ଭାବରେ ନାହିଁ । ଏହି ଜଗତ୍ ରୂପୀ ରାଷ୍ଟ୍ରରେ ବ୍ରହ୍ମହିଁ ଏକ ପୁରୁଷ, ଏକମାତ୍ର ରହିଅଛନ୍ତି । ଯେତେବେଳପର୍ଯ୍ୟନ୍ତ ତାଙ୍କୁ ଜାଣି ହୁଏ ନାହିଁ, ସେତେବେଳେଯାଏ ଅଜ୍ଞାନୀ ଭାବରେ ଅସତ୍ କର୍ମ ହିଁ କରାଯାଇ ଥାଏ । ଏଣୁ ସର୍ବ ପ୍ରଥମେ ଜାଗ୍ରତ ସ୍ୱପ୍ନାଦି

ଅବସ୍ଥାର ସାକ୍ଷୀ, ସ୍ୱୟଂ ପ୍ରକାଶ, ପ୍ରକୃତ ଆଜଠାରୁ ଅତୀତ ନିତ୍ୟ ମୁକ୍ତ ସେହି ପରମ-ବ୍ରହ୍ମ ପ୍ରଭୁଙ୍କୁ ଜାଣିବା ଦରକାର ଅଟେ । ଏଣୁ ପ୍ରଥମେ କାର୍ଯ୍ୟରେ ପ୍ରବୃତ୍ତ ହେବା ଦ୍ୱାରା କୌଣସି ଲାଭ ନାହିଁ ।

ତୃତୀୟ ପ୍ରଶ୍ନରେ ନାରଦ କହିଥିଲେ ଯେ, ଏପରି ଏକ ଗାତଅଛି ଯେଉଁଠାରୁ କି ବାହାର ଆସିବା ପାଇଁ ବାଟ ନାହିଁ । ତାହା ହେଲେ ସେହି ଗାତଟି ଯଥାର୍ଥରେ କ'ଣ ଅଟେ । ଭାବ ଭାବ ସେମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ବ୍ରହ୍ମବିତ୍ ପୁରୁଷ ବ୍ରହ୍ମ ଭାବରେ ପରିଚିତ । ସେ ବ୍ରହ୍ମ ରୂପକ ଗାତ ଭିତରେ ପଶି ବାହାର ପାରେ ନାହିଁ । ତାର ପୁନରାବୃତ୍ତି ସମାପ୍ତ ହୋଇଯାଏ । ଏହି ବ୍ରହ୍ମ ରୂପକ ଗାତକୁ ନ ଜାଣି କୌଣସି କାର୍ଯ୍ୟ କରିବା ଉଚିତ ନୁହେଁ ।

ଚତୁର୍ଥ ନୂତ୍ରୋକ୍ତରେ ନାରଦ କହିଥିଲେ ଯେ, ତୁମେମାନେ ବହୁରୂପ ଧାରଣ କରୁଥିବା ସ୍ତ୍ରୀକୁ ଜାଣିଛ କି ? ଆମର ବୁଦ୍ଧି ହେଲା ଏହି ବହୁରୂପୀ ସ୍ତ୍ରୀ । ସେ ବୁଦ୍ଧି ନାନା ପ୍ରକାର ରୂପଧାରଣ କରି ଜୀବନକୁ ଭ୍ରମରେ ପକାଇ ଦିଏ । ସେ କୃଷ୍ଣ ବର୍ଣ୍ଣ ଶ୍ୱେତବର୍ଣ୍ଣ ଓ ରକ୍ତବର୍ଣ୍ଣର ଓଢ଼ଣା ପକାଇ ଜୀବକୁ ଗୋଟିଏ ଯୋନିରୁ ଆଉ ଗୋଟିଏ ଯୋନିରେ ପ୍ରବେଶ କରାଏ ଓ ବାହାର କରାଏ । ଅଜ୍ଞାନ ରୂପକ ଓଢ଼ଣା ମଧ୍ୟରେ "ଅପ୍ରସୂକ୍ଷ୍ମ" ମୁହଁକୁ ଲୁଚାଇ ରଖିଥାଏ । ସୂକ୍ଷ୍ମଦର୍ଶୀ ପୁରୁଷ ଯେତେବେଳ ପର୍ଯ୍ୟନ୍ତ ତାର ମୁଖରୁ ଓଢ଼ଣା ବାହାର କରି ଦେଖେ ନାହିଁ ତାର ପୂର୍ଣ୍ଣ ପରିଚୟ ସେ ପାଏ ନାହିଁ । ତେଣୁ ପ୍ରକାବୁଦ୍ଧି ରୂପରେ ଅସତ୍ କାର୍ଯ୍ୟରେ ପ୍ରବୃତ୍ତ ହେବା ପଶୁତ୍ୱ ଅଟେ ।

ନାରଦଙ୍କର ପଞ୍ଚମ ପ୍ରଶ୍ନ ଥିଲା, "ବ୍ୟଭିଚାରିଣୀ ସ୍ତ୍ରୀର ସ୍ୱାମୀ ସଙ୍ଗରେ ତୁମର ପରିଚୟ ଅଛି କି ? ଏହି ବ୍ୟଭିଚାରିଣୀ ସ୍ତ୍ରୀ ହେଲା ଆମର ଗୁଣମୟୀ ବୁଦ୍ଧି । ମାୟା ମୋହିତ ଜୀବ ତାର ସ୍ୱାମୀ ଅଟେ । ସେ ତାର ସଂସର୍ଗରେ ଆସି ନିଜର ସ୍ୱରୂପକୁ ଭୁଲିଯାଏ । ନିଜର ପଦ ପ୍ରତିଷ୍ଠାକୁ ମଧ୍ୟ ଚିନ୍ତାକରି ପାରେ ନାହିଁ । ଐଶ୍ୱର୍ଯ୍ୟ ଦ୍ୱାରା ଭ୍ରଷ୍ଟ-ହୋଇ ସେ ତାର ଆଜ୍ଞାପାଳନକାରୀ ଚାକର ହୋଇଯାଏ । ସେ ଯାହା କହେ ତାହା କରେ । ସେ ସୁଖୀ ହେଲେ ନିଜେ ସୁଖ ଅନୁଭବ କରେ । ସେ ଦୁଃଖୀ ହେଲେ ନିଜେ ଦୁଃଖୀ ବୋଲି ଅନୁଭବ କରେ । ଯେତେବେଳ ପର୍ଯ୍ୟନ୍ତ ଆମେ ଏଇ ବ୍ୟଭିଚାରିଣୀ ଦ୍ୱାରା ମାୟା ମୋହିତ ଜୀବକୁ ଠିକ୍ ଭାବରେ ଜାଣିପାରୁ ନାହିଁ ସେତେବେଳ ପର୍ଯ୍ୟନ୍ତ ପୁରୁଷ ଏହି ସଂସାରରେ ବହୁ ବିବେକ ଶୂନ୍ୟ ଭାବରେ ମିଥ୍ୟା କାର୍ଯ୍ୟକଳାପରେ ପଡ଼ିରହି ଥାଏ । ସେ ଏଇ ସବୁ ଅସତ୍ କାର୍ଯ୍ୟ କରିବା ଫଳରେ ଅସତ୍ ଲୋକକୁ ପ୍ରାପ୍ତ ହୋଇଥାଏ ।

ଦେବର୍ଷି ନାରଦଙ୍କର ଷଷ୍ଠ ପ୍ରଶ୍ନ ଥିଲା— ତୁମେମାନେ ଦୁଇ ଦିଗକୁ ପ୍ରବାହିତ ହେଉଥିବା ନଦୀକୁ ଜାଣିଛ କି ? ମାୟା ହେଉଛି ଉଭୟ ଦିଗକୁ ପ୍ରବାହିତ ହେଉଥିବା

ନଦୀ । ତାର ମୋହିନୀ ମାୟାରେ ଜଗତ ସୃଷ୍ଟି ସମ୍ଭବ ହୋଇ ପାରିଛି । ଏହା ଦ୍ୱାରା ମଧ୍ୟ ସଂହାରର କଳ୍ପନା କରାଯାଇ ପାରେ । ଶବ୍ଦ, ରୂପ, ରସ, ଗନ୍ଧ ଏବଂ ସ୍ପର୍ଶ ଜନିତ ଇହଲୌକିକ ସୁଖ ତଥା ବିମାନ, ଅପ୍‌ସରା, ଅମୃତ ତଥା କଳ୍ପବୃକ୍ଷ ଆଦି ପାର ଲୌକିକ ସୁଖ ମଧ୍ୟ ମାୟାରୂପୀ ନଦୀ ଯୋଗୁଁ ହିଁ ସମ୍ଭବ ହୋଇଥାଏ । ସେ ସର୍ବଦା ଅବିଶ୍ରାନ୍ତ ବେଗରେ ପ୍ରବାହିତ । ଯେଉଁ ବ୍ୟକ୍ତି ଏହାକୁ ନ ଜାଣି ଉନ୍ମତ୍ତ ହୋଇ ପରି ବୁଲି ବୁଲି କ୍ରୀଡ଼ା କରେ ତାକୁ ଏହି ନଦୀ ପ୍ରବଳ ବେଗରେ ତାର କ୍ଷିପ୍ର ସ୍ରୋତରେ ଭସାଇ ନିଏ । ପୁରୁଷର ଏପରି କରିବାରେ କ'ଣ ଲାଭ ?

ମହର୍ଷି ନାରଦଙ୍କର ସପ୍ତମ ପ୍ରଶ୍ନ ଥିଲା— ତୁମେମାନେ ପଚିଶି ପଦାର୍ଥରେ ତିଆରି ବିଚିତ୍ର ଗୃହ ଦେଖିଛ କି ?

ପାଞ୍ଚ ଜ୍ଞାନେନ୍ଦ୍ରିୟ, ପାଞ୍ଚ କର୍ମେନ୍ଦ୍ରିୟ, ପଞ୍ଚଭୂତ, ପଞ୍ଚଆତ୍ମା ତଥା ମନ, ବୁଦ୍ଧି, ପ୍ରକୃତି, ଅହଂକାର ଓ ପୁରୁଷ ଆଦି ପଚିଶି ତତ୍ତ୍ୱ ଭାବରେ ବିବେଚିତ । ଏହି ପଚିଶି ତତ୍ତ୍ୱର ଅଭୁତ ଆଶ୍ରୟ ହେଉଛନ୍ତି ଅନ୍ତର୍ଯ୍ୟାମୀ ପୁରୁଷ ଭଗବାନ । କାର୍ଯ୍ୟ କାରଣ ସଙ୍ଘାତର ଅଧିଷ୍ଠାତା ଏହି ପୁରୁଷଙ୍କର ସ୍ୱରୂପ ନ ଜାଣି କୌଣସି କାର୍ଯ୍ୟରେ ପ୍ରବୃତ୍ତ ହେବା ଅସତ୍ କର୍ମ ଭାବରେ ବିବେଚିତ । ଏହି ଅସତ୍ କାର୍ଯ୍ୟ କରିବା ଦ୍ୱାରା ଲାଭ ନାହିଁ ବା କୌଣସି ଅଭିଷ୍ଟ ସିଦ୍ଧ ହୁଏ ନାହିଁ ।

ଅଷ୍ଟମ ପ୍ରଶ୍ନ ଭାବରେ ନାରଦ ମହର୍ଷି କହିଥିଲେ— ତୁମେ ଚିତ୍ର ବିଚିତ୍ର ପକ୍ଷଥିବା କୌଣସି ହଂସ ଦେଖିଛ କି ? ଆମେ ଜାଣିପାରୁଛୁ ଯେ, ଶାସ୍ତ୍ର ମାନଙ୍କୁ ହିଁ ଚିତ୍ର ବିଚିତ୍ର ହଂସ ଭାବରେ ବିବେଚିତ । ଏହା ଦ୍ୱାରା ପ୍ରବୃତ୍ତି ମାର୍ଗର ଜ୍ଞାନଲାଭ ହୋଇଥାଏ, ବନ୍ଧନ କ'ଣ ତାହା ଜାଣିହୁଏ । ମୋକ୍ଷ ମଧ୍ୟ ପ୍ରାପ୍ତି ହୁଏ । ଈଶ୍ୱର ପ୍ରତିପାଦିତ ଏହି ଶାସ୍ତ୍ରକୁ ପରିତ୍ୟାଗ କରିବା ଫଳରେ ଯେଉଁ ବ୍ୟକ୍ତି କର୍ମରେ ପ୍ରବୃତ୍ତ ହୁଏ ତାର ସିଦ୍ଧି ପ୍ରାପ୍ତ ହୁଏନାହିଁ ବା ତାକୁ ସୁଖ ମିଳେ ନାହିଁ, ବରଂ ସେ ତାର ଅଧୋଗତି ପ୍ରାପ୍ତ ହୁଏ । ଏହା ଜଡ଼, ଏହା ବ୍ରହ୍ମ, ଏହା ଚୈତନ୍ୟ, ଏହା ବିଧେୟ, ଏହା ଗ୍ରହଣୀୟ, ଏହା ଅଗ୍ରହଣୀୟ, ଏହା ଶ୍ରେୟ, ଏହା ପ୍ରିୟ ଏହା ନିଷେଧ ଓ ଏହା ନିଷେଧ ଏପରି ଜ୍ଞାନ ମଧ୍ୟ ଶାସ୍ତ୍ର ଦେଇଥାଏ । ଏ ସବୁ କଥାକୁ ନ ଜାଣି କେବଳ କର୍ମ କରିବାରେ କ'ଣ ଲାଭ ? ଏଣୁ ଭଗବାନଙ୍କର ଆଦେଶରେ କର୍ମ ଓ ଅକର୍ମର ବ୍ୟବସ୍ଥା ଶାସ୍ତ୍ରରେ ଲିପିବଦ୍ଧ ହୋଇଅଛି ।

ନାରଦଙ୍କର ନବମ ପ୍ରଶ୍ନ ଥିଲା,— ତୁମେମାନେ କ୍ଷୁର ଏବଂ ବଜ୍ରରେ ତିଆରି ହୋଇଥିବା ସ୍ୱୟଂଚାଳିତ ଚକ୍ର ଦେଖିଛ କି ? ସର୍ବଦା ବିଶ୍ରାମ ନ ନେଇ ବୁଲୁଥିବା କାଳଚକ୍ର ଏହି ତୀକ୍ଷ୍ଣ କ୍ଷୁର ଧାରଣ କାରୀ ଚକ୍ର । ସେ ସମଗ୍ର ଜଗତରେ ଗତିକରି ସମସ୍ତଙ୍କୁ ଆକର୍ଷିତ କରି ରଖିଅଛି । ଏହା ପରମ ଦୁର୍ନିବାର, କେବେହେଲେ

ବ୍ୟର୍ଥ ନ ହେବା ଟଙ୍କ । ତାର ଗତିବଧି ନ ଜାଣି କୌଣସି କାର୍ଯ୍ୟରେ ପ୍ରବୃତ୍ତ ହେବା ମାନେ ସର୍ବଦା ଦୁଃଖ ଭୋଗକରିବା ।

ନାରଦଙ୍କର ଦଶମ ପ୍ରଶ୍ନ ଥିଲା, ତୁମେ ତୁମର ସର୍ବଜ୍ଞ ପିତାଙ୍କର ବାସ୍ତବିକ ଆଦେଶକୁ ନ ଜାଣି ନ ବୁଝି କିପରି ସୃଷ୍ଟି କରିବ ? ଏହି ଶାସ୍ତ୍ର ହେଉଛନ୍ତି ପ୍ରକୃତରେ ଠିକ୍ ପିତା, ସେଥିରେ ପ୍ରବୃତ୍ତି ବାକ୍ୟ ମଧ୍ୟ ରହିଛି କିନ୍ତୁ ସୃଷ୍ଟି କରିବା ଏହି ଶାସ୍ତ୍ରର ପ୍ରକୃତ ଆଦେଶ ନୁହେଁ । ନିବୃତ୍ତ ହେବା ବାକ୍ୟ ହେଉଛି ଏହି ଶାସ୍ତ୍ରର ମୁଖ୍ୟ ଉଦ୍ଦେଶ୍ୟ ବାକ୍ୟ । ଏହି ନିବୃତ୍ତ ମାର୍ଗର ବଚନକୁ ନ ଜାଣି ନ ବୁଝି ଗୁଣରେ ଆସ୍ଥା ରଖିଥିବା ପୁରୁଷ କିପରି ନିବୃତ୍ତି ପଥରେ ପରିଚାଳିତ ହୋଇପାରିବ ?"

ଶୁକଦେବ କହିଲେ—ରାଜା ! ଏହିପରି ଭାବନାରେ ବଶୀଭୂତ ହୋଇ ଏମାନେ ସମସ୍ତେ ହାତଯୋଡ଼ି ନାରଦଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ —"ଗୁରୁଦେବ ! ଆମକୁ ନିବୃତ୍ତି ମାର୍ଗର ଦୀକ୍ଷା ପ୍ରଦାନ କରନ୍ତୁ । ଯେଣୁ ଆପଣ ଆମମାନଙ୍କୁ ଶାସ୍ତ୍ରର ମର୍ମବାଣୀ ଶୁଣାଇଛନ୍ତି ଆପଣ ହେଉଛନ୍ତି ଆମମାନଙ୍କର ପିତା ।

ମହର୍ଷି ନାରଦ ତ ଏଥିପାଇଁ ଆସିଥିଲେ । ସେ ଭାବିଲେ ଏହା ହେଉଛି ବଡ଼ ଭଲକଥା । ଏକାଥରକରେ ଦଶହଜାର ଶିଷ୍ୟ ମୋଟେ ମିଳିଗଲେ । ସମସ୍ତଙ୍କୁ କୌପୁନ ପରିଧାନ କରାଇ ସେ ସନ୍ନ୍ୟାସୀ କରାଇଦେଲେ । ସେମାନେ ସମସ୍ତେ ଶ୍ରଦ୍ଧା ଓ ଭକ୍ତି ପୂର୍ବକ ଗୁରୁଦେବଙ୍କର ପୂଜା ଆରାଧନା କରି ତାଙ୍କ ଆଜ୍ଞାରେ ମୋକ୍ଷ ମାର୍ଗ ଆଡ଼କୁ ଗମନ କଲେ । ମୋକ୍ଷମାର୍ଗରେ ଗଲେ ସେଠାରୁ କେହି କେବେ ଫେରନ୍ତି ନାହିଁ । ନାରଦ ଯେତେବେଳେ ଦେଖିଲେ ଯେ ତାଙ୍କର କାର୍ଯ୍ୟର ପରିସମାପ୍ତି ଘଟିଲା ସେ ହସି ହସି ବୀଣା ବଜାଇ ନିଜପୁରକୁ ପ୍ରତ୍ୟାବର୍ତ୍ତନ କଲେ ।

—ଛପ୍‌ପୟ—

**ଆଶ୍ରୟ ପୁରୁଷ ପଚୀସ ତତ୍ତ୍ୱ କେ କ୍ଷେତ୍ର ଗେହ ଭଲ ।**
**ହରି ପ୍ରତିପାଦକ ଶାସ୍ତ୍ର ହଂସ ହୈ ଅତି ଇ ନିର୍ମଲ ॥**
**କାଲ ଚକ୍ର ଅତି ତୀକ୍ଷ୍ଣ ଶାସ୍ତ୍ର ଇ ପିତା ସରସ ହୈ ।**
**ନିବୃତ୍ତି ମାର୍ଗ ଇ ମୁଖ୍ୟ କହୀ ତାକୀ ଆୟସୁ ହୈ ॥**
**ଯୌଁ ମନତେଂ ସବ ସୋଚକେଂ, ନାରଦ କେ ଚେଲା ଭୟେ ।**
**ମୋକ୍ଷ ଧର୍ମକୀ ରାହ ଗହି, ବାବାଜୀ ସବ ବନିଗୟେ ॥**



# ପୁତ୍ର ବିୟୋଗୀ ଦକ୍ଷଙ୍କ ପୁନରପି ପୁତ୍ରଲାଭ

ନାଶଂ ନିଶମ୍ୟ ପୁତ୍ରାଣାଂ ନାରଦାଚ୍ଛୀଲଶାଲିନାମ୍ ।
ଅନ୍ୱତପ୍ୟତ କଃ ଶୋଚନ୍ସୁ ପ୍ରଜସ୍ତ୍ୱଂ ଶୁଚାଂ ପଦମ୍ ॥

ସ ଭୂୟଃ ପାଞ୍ଚଜନ୍ୟାୟାମଜେନ ପରିସାନ୍ତ୍ୱିତଃ ।
ପୁତ୍ରାନଜନୟଦ୍ ଦକ୍ଷଃ ଶବଲାଶ୍ୱାନ୍ ସହସ୍ରଶଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୫ମ ଅଧ୍ୟାୟ ॥ ୨୩-୨୪ ଶ୍ଳୋକ ]

### ଛପ୍ପୟ

ନାରାୟଣ ସର ମାହିଁ ଭଣଇ ନାରଦ ତେଂ ଚେଂଷ୍ଟା ।
ସୁନୀ ଦକ୍ଷ କିହ ବାତ ବଚନ ବାବାଜୀ ଚେଷ୍ଟା ॥
ଭୟୋ ହୃଦୟ ଅତି ଦୁଃଖ ବହୁତ ମନ ମହିଁ ପଛୁତାୟୋ ।
କୈସେ କୈସେ ଧରୟୋ ଧୀର ଜବ ବିଧି ସମଝାୟୋ ॥
ପାଂଚଜନୀ ନେ ଫିର ସହସ୍ର, ଜନେ ପୁତ୍ର ଶବଲାଶ୍ୱ ବର ।
ପିତୁ ଆୟସୁ ତେଂ ଗୟେ ତ୍ୱେ ତପ ହିତ ନାରାୟଣ ସୁସର ॥

ମଣିଷର ଆଶା ଭାଙ୍ଗିଯିବା ଏକ ମହାନ୍ ଦୁଃଖ । ନିଜର ଆଶା ରୂପକ ବୃକ୍ଷକୁ ପଲ୍ଲବିତ, ପୁଷ୍ପିତ ତଥା ଫଳଦାୟୀ ହେବାର ଦେଖିଲେ ସବୁଠାରୁ ବଡ଼ସୁଖ ଜାତ ହୁଏ । ଯେଉଁ ସୁଯୋଗ୍ୟ ପୁତ୍ରମାନଙ୍କ ଉପରେ ଆମେ ବହୁପ୍ରକାର ଆଶା ରଖିଥାଉ ତାର ଭବିଷ୍ୟତ ଉନ୍ନତିକୁ ଚିନ୍ତାକରି ବିବିଧ ପ୍ରକାର ଆଶା ମନରେ ପୋଷଣ କରିଥାଉ । ଯଦି ସେହି ପୁତ୍ର ମରିଯାଏ ବା ଘରଦ୍ୱାର ଛାଡ଼ି କେଉଁଆଡ଼େ ଚାଲିଯାଏ ତାହାହେଲେ ସମସ୍ତ ଆଶା ବିଫଳ ହୋଇଯାଏ । ଏଥିରେ ହୃଦୟରେ ବହୁତ ଦୁଃଖ ଜାତହୁଏ । ସାରା ସଂସାର ଶୂନ୍ୟ ଜଣାଯାଏ । କୌଣସି କାମରେ ମନ ଲାଗେନାହିଁ । ମନରେ ଉଦାସଭାବ ଦେଖାଦିଏ ।

ଶ୍ରୀଶୁକଦେବ କହିଲେ—"ରାଜନ୍ ! ଦକ୍ଷଙ୍କର ଦଶହଜାର ପୁତ୍ର ହର୍ଯ୍ୟଶ୍ୱଗଣ ସମସ୍ତେ ବାବାଜୀ ହୋଇଗଲେ । ନାରଦଙ୍କଠାରୁ ଦୀକ୍ଷା ଗ୍ରହଣକରି ସେମାନେ ନିବୃତ୍ତି ମାର୍ଗରେ ପଥିକ ହୋଇଗଲେ, ଯେଉଁ ପଥରେ ଥରେ ଯାଇ ସଂସାରକୁ ଫେରିଆସେନାହିଁ । ଅନେକ ଦିନ ପର୍ଯ୍ୟନ୍ତ ଦକ୍ଷ ନିଜର ପୁତ୍ରଙ୍କୁ ଅପେକ୍ଷା କଲେ । ଦିନେ ତୀର୍ଥଯାତ୍ରା କରିବାପାଇଁ ଅନେକ ମୁନି, ଋଷି ମହାରାଜ ଦକ୍ଷଙ୍କ ନିକଟରେ ଆସି ପହଞ୍ଚିଲେ । କୁଶଳାଦି ପ୍ରଶ୍ନ ପରେ ଦକ୍ଷ ପ୍ରଜାପତି ପଚାରିଲେ—"ମୁନିଗଣ ! ମୋର ପରମ ଶାନ୍ତ ସୁଶୀଳ, ମହାନ ଧାର୍ମିକ ଦଶ ସହସ୍ର ପୁତ୍ର ତପସ୍ୟା କରିବା ନିମନ୍ତେ ପଶ୍ଚିମ ଦେଶକୁ ଚାଲିଯାଇ ଏପର୍ଯ୍ୟନ୍ତ ଫେରିନାହାନ୍ତି । ଆପଣମାନେ ତ ଏହି ପୃଥିବୀ ଉପରେ ଚାରିଆଡ଼େ ବିଚରଣ କରନ୍ତି । ଯଦି ଆପଣମାନେ ମୋର ପୁତ୍ରଙ୍କୁ ଦେଖିଥାଆନ୍ତି ତେବେ ସେମାନଙ୍କ ସମ୍ପର୍କରେ ମୋତେ କିଛି କୁହନ୍ତୁ ଏବଂ ଏ କଥା ମଧ୍ୟ ଜଣାନ୍ତୁ ସେମାନେ କେବେ ଫେରିବେ ।

ମୁନିମାନଙ୍କ ମଧ୍ୟରେ ସବୁଠାରୁ ବୃଦ୍ଧ ଗମ୍ଭୀର ଭାବରେ କହିଲେ, ରାଜନ୍ ! ଆପଣ ସେହି ପୁତ୍ରମାନଙ୍କ ଉପରୁ ଆଶା ଛାଡ଼ି ଦିଅନ୍ତୁ । ସେମାନେ ଏପରି ମାର୍ଗରେ ଚାଲି ଯାଇଛନ୍ତି ଯେଉଁ ମାର୍ଗରୁ କେହି କେବେ ଫେରି ଆସନ୍ତି ନାହିଁ ।

"ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ ଦକ୍ଷ କହିଲେ—ମହାରାଜ ! ଆପଣ ଏପରି କ'ଣ କହୁଛନ୍ତି ? ଆପଣ କ'ଣ ମୋର ପୁତ୍ରମାନଙ୍କୁ କେଉଁଠାରେ ଦେଖିଛନ୍ତି ? ସେମାନଙ୍କର କଣ ମୃତ୍ୟୁ ହୋଇଗଲା ? "

ମୁନି କହିଲେ—"ରାଜନ୍ ! ସେମାନେ ମରିନାହାନ୍ତି ଅମୃତ ପାଇଛନ୍ତି ! ମୃତ୍ୟୁର ମୁଣ୍ଡ ଉପରେ ସେମାନେ ଗୋଡ଼ ରଖି ଠିଆ ହୋଇଛନ୍ତି । ସେମାନେ ମୋକ୍ଷଧର୍ମାବଲମ୍ବୀ ହୋଇ ଲୁଣ୍ଡିତ ମସ୍ତକରେ କୌପୁନି ମାରି ବାବାଜୀ ହୋଇ ଯାଇଛନ୍ତି । ନାରଦ ମହର୍ଷି ସେମାନଙ୍କୁ ସବୁ ଏହିପରି କରିଛନ୍ତି । ସେମାନଙ୍କ ମଧ୍ୟରୁ କାହାରି ଜଣକର ହେଲେ ସୃଷ୍ଟି ବୃଦ୍ଧି କରିବା ନିମନ୍ତେ ଅଭିଳାଷ ନାହିଁ । ସେମାନଙ୍କ ଫେରିବା କଥା ଆଉ ମନରେ ଆପଣ ଚିନ୍ତା କରନ୍ତୁ ନାହିଁ ।"

ଏ କଥା ଶୁଣି ଦୁଃଖିତ ମନରେ ଦକ୍ଷ କହିଲେ—"ମହାରାଜ ! ଏହି ସବୁ କଥା ଆପଣ କାହା ମୁହଁରୁ ଶୁଣିଛନ୍ତି ନା ଆପଣ ନିଜେ ଆଖିରେ ଦେଖିଛନ୍ତି ? ନାରଦ ମହର୍ଷି ମୋ ପ୍ରତି ଘୋର ଅନ୍ୟାୟ କଲେ । ମୋର କୌଣସି ଜନ୍ମରେ ସେ ଶତ୍ରୁ ଥିବାରୁ ଏବେ ପ୍ରତିଶୋଧ ନେଇଛନ୍ତି । ଏ ଜନ୍ମରେ ମୁଁ ତ ତାଙ୍କର କିଛି ଅମଙ୍ଗଳ କରିନାହିଁ ।"

ପ୍ରଜାପତି ଦକ୍ଷଙ୍କର ଏହି କଥା ଶୁଣି ବୃଦ୍ଧ ମୁନି କହିଲେ—ମହାରାଜ ! ଆପଣ ଜଣେ ଜ୍ଞାନୀ, ଧ୍ୟାନୀ, ବୁଦ୍ଧିମାନ ହୋଇ ଭ୍ରମରେ ପଡ଼ିଲା ଭଳି କଥାବାର୍ତ୍ତା କାହିଁକି କରୁଛନ୍ତି । ନାରଦ ମହର୍ଷି ସେମାନଙ୍କର ବଡ଼ ଉପକାର କରିଛନ୍ତି । ଆପଣଙ୍କର ମଧ୍ୟ

ଉପକାର କରିଛନ୍ତି କାରଣ ସେ ଆପଣଙ୍କ ବଂଶକୁ ଉଦ୍ଧାର କରି ଦେଇଛନ୍ତି । ମହାରାଜ ! ଆପଣ ଏହି ବିଷୟରେ କୌଣସି ଚିନ୍ତା ବା ସନ୍ଦେହ କରନ୍ତୁ ନାହିଁ । ସେମାନେ ନାରାୟଣ ସରୋବର ଠାରେ ମହର୍ଷି ନାରଦଙ୍କଠାରୁ ଦୀକ୍ଷା ନେଇଥିବା ଆମେ ସ୍ୱଚକ୍ଷୁରେ ଦେଖିଅଛୁ । ଆମ ଆଗରେ ସେମାନେ ସେମାନଙ୍କର ଅମୂଲ୍ୟ ବସ୍ତ୍ରକୁ ଫୋପାଡ଼ି ଦେଇ କୌପୁନି ପରିଧାନ କରିଥିଲେ । ଆମ ସମ୍ମୁଖରେ ମଧ୍ୟ ସେମାନେ "ନମୋ ନାରାୟଣାୟ" "ନମୋ ନାରାୟଣାୟ", କହି କହି ନାରଦଙ୍କୁ ପରିକ୍ରମା କରି ସନ୍ନ୍ୟାସୀ ହୋଇ ଚାଲି ଗଲେ । ଏ ସବୁ କହି ଦକ୍ଷ ପ୍ରଜାପତିଙ୍କୁ ବହୁତ ବୁଝାଇ ସୁଝାଇ କୃତ୍ୟ କୃତ୍ୟ ହୋଇ ମୁନିଗଣ ସ୍ୱଇଚ୍ଛାରେ ପ୍ରତ୍ୟାବର୍ତ୍ତନ କଲେ, କିନ୍ତୁ ଦକ୍ଷ ମନରେ ଶାନ୍ତିପାଇ ପାରିଲେନାହିଁ । ସେ ସର୍ବଦା ଉଦାସ ହୋଇ ରହିଲେ କପରି ସୃଷ୍ଟି ବୃଦ୍ଧି ହେବ । ସେଥିନିମନ୍ତେ ସେ ଚିନ୍ତିତ ରହିଲେ । ଏ ସବୁ ଜାଣି ବ୍ରହ୍ମଲୋକରେ ଥିବା ପିତାମହ ବ୍ରହ୍ମା ହଂସାରୂଢ଼ ହୋଇ ଦକ୍ଷଙ୍କୁ ଭାବରେ ବୁଝାଇବା ନିମନ୍ତେ ତାଙ୍କ ପାଖରେ ଆସି ପହଞ୍ଚିଗଲେ ।

ଲୋକ ପିତାମହ ଆକାଶରେ ଉଡ଼ି ତାଙ୍କ ଆଡ଼କୁ ଆସୁଥିବା ଲକ୍ଷ୍ୟକରି ଦକ୍ଷ ଠିଆହୋଇ ବ୍ରହ୍ମାଙ୍କ ପୂଜା ବିଧିବଦ୍ଧ ଭାବରେ କଲେ ।

ଦକ୍ଷଙ୍କ ପୂଜାକୁ ସ୍ୱୀକାରକରି ଭଗବାନ କମଳଯୋନି କହିଲେ—"ରାଜନ ! ଆପଣ ଏପରି ଉଦାସ କାହିଁକି ହୋଇପଡ଼ିଛନ୍ତି ? କାହିଁକି ଆପଣଙ୍କର ଏପରି ମାନସିକ ଦୁଃଖ ଜାତ ହୋଇଛି ? ଆପଣଙ୍କ ଦୁଃଖର କାରଣ ମୋତେ କହନ୍ତୁ ।"

ଏକଥା ଶୁଣି ଦକ୍ଷ କହିଲେ—"ପ୍ରଭୋ ! ମୋର ସର୍ବଗୁଣ ସମ୍ପନ୍ନ ଦଶହଜାର ପୁତ୍ରଥିଲେ । ସେ ସମସ୍ତଙ୍କୁ କଳିଆ ନାରଦ ପ୍ରବର୍ତ୍ତାଇ ବାବାଜୀ କରିଦେଇଛନ୍ତି । କାହାକୁ ମଧ୍ୟ ସେ ଛାଡ଼ିନାହାନ୍ତି । ଏହି କାରଣରୁ ମୋତେ ବଡ଼ ଦୁଃଖ ଲାଗୁଛି । ହେ ପ୍ରଭୁ ! ସେମାନେ କପରି ଯଶସ୍ୱୀ ବାଳକଥିଲେ ସେଇକଥା ମୋର ମନେ ପଡ଼ି ଦୁଃଖ ଜାତ ହେଉଅଛି ।"

ବ୍ରହ୍ମା କହିଲେ -"ରାଜନ ! ଯାହା ହେବାରଥିଲା ତାହା ହୋଇଗଲା । ଆପଣ ଏଥିପାଇଁ ଏତେ ଚିନ୍ତା କରନ୍ତୁନାହିଁ ? ବିଚରା ନାରଦଙ୍କର ଏଥିରେ କ'ଣ ଦୋଷ ? ସେମାନଙ୍କର ପ୍ରାରବ୍ଧ ହିଁ ଏଇଆ । ସେମାନଙ୍କ ଭାଗ୍ୟରେ ସନ୍ନ୍ୟାସୀ ହେବାରଥିଲା । କୌଣସି ଚିନ୍ତା କରନ୍ତୁନାହିଁ । ବର୍ତ୍ତମାନ ଆପଣ ପୁନର୍ବାର ପୁତ୍ର ଉତ୍ପନ୍ନ କରିବାରେ ଉଦ୍ୟମ କରନ୍ତୁ ।"

ପ୍ରଜାପତି ଦକ୍ଷ ଉଦାସ ଭାବରେ କହିଲେ—"ଭଗବାନ ! ଏବେ ଆଉ କ'ଣ ସୃଷ୍ଟି କରିବ ? ପ୍ରଥମେ ଯେପରି ପୁତ୍ର ସୃଷ୍ଟି ହୋଇଥିଲେ ସେପରି ପୁତ୍ର ଆଉ ସମ୍ଭବ ହେବ କି ?"

ବ୍ରହ୍ମାକହିଲେ "ତୁମେ ଚିନ୍ତିତ ହେବା ଦରକାର ନାହିଁ । ଆଗ ପରି ପୁତ୍ର ପୁଣି ହେବେ । ଉତ୍ପନ୍ନ କରିବା ପାଇଁ ଚେଷ୍ଟାକର ।"

ପିତାମହ ବହୁତ ବୁଝାସୁଝା କରିବାପରେ ତାଙ୍କର ଆଜ୍ଞାକୁ ଶିରୋଧାର୍ଯ୍ୟକରି ପ୍ରଜାପତି ଦକ୍ଷ ନିଜର ପଞ୍ଚଜନୀ ନାମକ ପତ୍ନୀଠାରୁ ପୁନରାୟ ସହସ୍ର ପୁତ୍ର ଜନ୍ମ-କରାଇଲେ । ଏଥର ସମସ୍ତଙ୍କ ନାମ ରଖିଲେ ଶବଲାଶ୍ୱ । ଏମାନେ ସମସ୍ତେ ବଡ଼ ସରଳ, ସଦାଚାରୀ ଓ ସଦ୍‌ଗୁଣ ସମ୍ପନ୍ନଥିଲେ । ଏ ସମସ୍ତେ ହାତ ଯୋଡ଼ି ପିତାଙ୍କୁ ପଚାରିଲେ—"ପ୍ରଭୋ ! ଆମେମାନେ କ'ଣ କରିବୁ ?"

ସେମାନଙ୍କର ଏହିକଥା ଶୁଣି ସ୍ନେହରେ ଦକ୍ଷ କହିଲେ – ପୁତ୍ରଗଣ ! ତୁମେସବୁ ପ୍ରଜାବୃଦ୍ଧି ନିମନ୍ତେ ଯାଇ ତପସ୍ୟାଦ୍ୱାରା ଶ୍ରୀହରିଙ୍କୁ ପ୍ରସନ୍ନକରି ସୃଷ୍ଟି ବଢ଼ାଇବାରେ ସହଯୋଗ କର ।"

ଏହା ଶୁଣି ପିତାଙ୍କ ଆଜ୍ଞା ଶିରୋଧାର୍ଯ୍ୟକରି ସମସ୍ତ ଶବଲାଶ୍ୱ ନାମକ ଦକ୍ଷସୁତଗଣ ସେହି ପଶ୍ଚିମ ଦିଗକୁ ଚାଲିଲେ, ଯେଉଁ ଦିଗକୁ ସେମାନଙ୍କର ପୂର୍ବଜ ହର୍ଯଶ୍ୱ ଭାଇମାନେ ଯାଇଥିଲେ । ଏମାନେ ସମସ୍ତେ ଚାଲି ଚାଲି ଯାଇ ସେହି ନାରାୟଣ ସରୋବର ନିକଟରେ ପହଞ୍ଚିଲେ ଯେଉଁଠାରେ ସେମାନଙ୍କର ଅଗ୍ରଜମାନେ ସିଦ୍ଧିପ୍ରାପ୍ତ ହୋଇଥିଲେ ।

ଏହି ପରମ ପବିତ୍ର ତୀର୍ଥରେ ସମସ୍ତ ଶବଲାଶ୍ୱଗଣ ବିଧିପୂର୍ବକ ସ୍ନାନ ସମାପନକଲେ । ସ୍ନାନ କରିବା ଫଳରେ ସେମାନଙ୍କ ହୃଦୟ ପବିତ୍ର ହୋଇଗଲା । ଯାହାକିଛି ଯତ୍କିଞ୍ଚିତ ମଳଥିଲା, ତାହା ତୀର୍ଥ ସ୍ନାନ ପ୍ରଭାବରେ ଧୋଇ ହୋଇଗଲା । ସମସ୍ତଙ୍କର ହୃଦୟ ପରମ ପବିତ୍ର ଓ ନିର୍ମଳ ହୋଇଗଲା । ସେମାନେ ସାବଧାନତା ସହକାରେ ପ୍ରଣବ ସହ ମନ୍ତ୍ର ଜପିବାକୁ ଲାଗିଲେ । ଓଁକାର ସ୍ୱରୂପ ପରମ ପ୍ରଭୁଙ୍କ ପରମାତ୍ମା ନାରାୟଣଙ୍କୁ ନମସ୍କାର, ବିଶୁଦ୍ଧ ସତ୍ତ୍ୱଗୁଣ ଆଶ୍ରୟୀ ପରମହଂସ ସ୍ୱରୂପ ପରମେଶ୍ୱରଙ୍କର ଆମେ ଧ୍ୟାନ କରୁଅଛୁ ।" ଏହିପ୍ରକାରରେ ସେମାନେ ପରମହଂସ ସ୍ୱରୂପ ପରମବ୍ରହ୍ମଙ୍କର ନାମ ଜପକରି ଘୋର ତପସ୍ୟା କରିବାକୁ ଲାଗିଲେ । କିଛିକାଳ ଫଳଫୁଲ ଖାଇ ଜୀବନ ନିର୍ବାହକଲେ । କେତେକାଳ କେବଳ ଜଳ ପାନକରି ରହିଲେ ଏବଂ ଆଉ କିଛିକାଳ ବାୟୁ ଆହାରକରି ସେମାନେ ଭୋଜନ ଜଳ ସମସ୍ତ ପରିତ୍ୟାଗ କରିଦେଲେ ।

ଏହିଭଳି ଭାବରେ ଏମାନେ ଘୋର ତପସ୍ୟା କରୁଥିବା ଦେଖି ନାରଦ ମହର୍ଷି ଚିନ୍ତାକଲେ—"ଭଲ ହେଲା, ଦେଖିବା ଏମାନଙ୍କର ଶକ୍ତି ମଧ୍ୟ ପରୀକ୍ଷାକରି ଆସିବା । ଏମାନେ ବି କୌଣସି ପ୍ରକାରରେ ମୋ କଥାରେ ଭୁଲିଗଲେ ଠିକ୍ ଆନନ୍ଦ ମୁଁ

ପାଇଯିବ । ମୋର ସମୁଦାୟ ଏଗାର ହଜାର ଶିଷ୍ୟ ହୋଇଯିବେ ଓ ମୁଁ କୁଳପତି ଭାବରେ ପୂଜାପାଇବ ।"

ଶ୍ରୀଶୁକଦେବ କହିଲେ—"ରାଜନ୍ ! ଲାଭରୁ ଲୋଭ ବୃଦ୍ଧିପାଏ । ଥରେ ଲାଭ-ପାଇଗଲେ ବାରମ୍ବାର ସେଇ ବସ୍ତୁକୁ ପାଇବାର ଅଭିଳାଷ ବୃଦ୍ଧିପାଇଥାଏ । ଏଥିପାଇଁ ସେମାନଙ୍କୁ ଭୁଲାଇବା ଉଦ୍ଦେଶ୍ୟରେ ପୁନର୍ବାର ସେଇ ଶବଳାଶ୍ୱମାନଙ୍କ ନିକଟକୁ ନାରଦ ଗଲେ ।"

—ଛପ୍ପୟ—

କରତ ତହାଁ ସ୍ନାନ ଭୟେ ହୃୟ ପାଓ୍ୱନ ସବକେ ।
ଜବ ସବ ତପ ମିଲି କରେଂ ବାର୍ଯ୍ୟରେଂ ନାରଦ ଅବକେ ।।
ୟେ ବାଲକ ହୁ ସୌମ୍ୟ ମୋକ୍ଷ ପଦ କେ ଅଧିକାରୀ ।
ଦେଖୁଁ ଚଲି କେ ତହଁ ଧ୍ୟାନ ତେଂ ଇନକୀ ନାରୀ ।।
ପର ଉପକାରକ ବ୍ରତନିରତ, ଚଲେ ଦେବରଷି ତୁରତ ତହଁ ।
କରେଂ କଠିନ ନିୟମାଦି ବ୍ରତ, ପହୁଁଚେ ମୁନି ଶବଲଶ୍ୱ ଜହଁ ।।



# ଶବଳାଶ୍ୱମାନଙ୍କୁ ଶିଷ୍ୟ କରିବା ପରେ ଦକ୍ଷଙ୍କର ନାରଦଙ୍କୁ ଅଭିଶାପ

ଇତି ତାନାପି ରାଜେନ୍ଦ୍ର ପ୍ରତିସର୍ଗଧିୟୋ ମୁନିଃ ।
ଉପେତ୍ୟ ନାରଦଃ ପ୍ରାହ ବାଚଃକୁଟାନି ପୂର୍ବବତ୍ ।

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଦ ॥ ୫ମ ଅଧ୍ୟାୟ ॥ ୨୨ଶ ଶ୍ଳୋକ ]

ଛପ୍ପୟ

ପ୍ରଶି ପୁରାଚନେ କରେ ଦକ୍ଷସୁତ ସହସ ଫସାୟେ ।
ଫିରି ଦଶ ଓ୍ୱେ ହୀ କୁଟ ବଚନ କହି କହି ସମୁଝାୟେ ॥
ଜେ୍ୟଷ୍ଠ ବନ୍ଧୁ କିହି ଗୈଲ ଗୟେ ତୁମ ସବହୁ ଜାଓ ।
ଶ୍ରେଷ୍ଠ ମାର୍ଗ ମହଁ ଜାୟ ନିତ୍ୟ ସୁଖ ତୁମ ସବ ପାଓ ॥
ସୃଷ୍ଟି ବଢ଼ି ବିପରୀତ ୟୋଂ, ପଢ଼ୀ ତୁରତ ପଢ଼ାଇକେଂ ।
ନାରଦ ମୁନି ଚମ୍ପତ ଭୟେ, ବୀନା ମଧୁର ବଜାଇକେଂ ॥

ପରର ଉପକାର କରିବା ନିମନ୍ତେ ଯେ ସର୍ବଦା ଆଗ୍ରହୀ ଯେତେ ବାଧାବନ୍ଧନ ଆସୁ ପଛକେ ସେ ପରର ଉପକାର ନ କରି ରହିପାରେ ନାହିଁ । ଯାହାର ଯେଉଁଭଳି ସ୍ୱଭାବ ସେ ସେଥିରୁ ବିଚ୍ୟୁତ ହୁଏନାହିଁ । ଯେତେବେଳେ ସୀତାଙ୍କୁ ଫେରାଇ ଦେବାପାଇଁ ରାବଣଙ୍କୁ ବାରମ୍ବାର କୁହାଗଲା, ସେ ଗର୍ଜ୍ଜନ ତର୍ଜନକରି ଦୃଢ଼ଭାବରେ କହିଲା— ମୋର ମସ୍ତକ ବରଂ ସହସ୍ର ଖଣ୍ଡ ହୋଇଯାଉ ମୁଁ କେବେହେଲେ ସୀତାଙ୍କୁ ଫେରାଇ ଦେଇପାରିବିନାହିଁ । ରାମଙ୍କ ପାଖରେ ମୁଁ କେବେହେଲେ ନତମସ୍ତକ ହେବିନାହିଁ । ମୁଁ କ'ଣ କରିବି ? ମୁଁ ନାଚାର । ଏହା ହେଉଛି ମୋର ସହଜାତ ସ୍ୱଭାବ, କିପରି ମୋର ସ୍ୱଭାବକୁ ମୁଁ ଅତିକ୍ରମ କରି ପାରିବି ?

ଗୋଟିଏ ବଡ଼ ପ୍ରସିଦ୍ଧ କାହାଣୀ ଅଛି । ଜଣେ ଜନ୍ମରୁ ଚୋର । ଜୀବନଯାକ ଚୋରି କରିକରି ବୃଦ୍ଧାବସ୍ଥାରେ ତା ମନରେ ଅନୁତାପ ଦେଖାଦେଲା । ସେ ଗୋଟିଏ ମଠକୁ

ଯାଇ ଜଣେ ମହନ୍ତଙ୍କ ପାଖରୁ ଦୀକ୍ଷା ଗ୍ରହଣ କରି ତାଙ୍କର ମଠରେ ରହିଲା । ରାତିରେ ଯେତେବେଳେ ସାଧୁମାନେ ଶୋଇପଡ଼ନ୍ତି ସେ କେଉଁ ସାଧୁଙ୍କର ଚମ୍ପୁଟାଟିକୁ ନେଇ ଅନ୍ୟଆଡ଼େ ରଖିଦିଏ ତ ଅନ୍ୟ କାହାର ପୂଜା ସାମଗ୍ରୀକୁ ନେଇ ଲୁଚାଇଦିଏ । ଜଣଙ୍କର ତୁମ୍ବା ନେଇ ଅନ୍ୟକେହି ସାଧୁ ପାଖରେ ରଖିଦିଏ । ସକାଳହେଲେ ସାଧୁମାନଙ୍କ ମଧ୍ୟରେ ଗଣ୍ଡଗୋଳ ହୁଏ । ସେମାନେ ପରସ୍ପର କୁହାକୁହି ହୁଅନ୍ତି, ତୁମେ କାହିଁକି ମୋ ତୁମ୍ବା ବଦଳାଇ ନେଇଛ ? ସେମାନଙ୍କ ମଧ୍ୟରୁ ଜଣେ ସାଧୁ କ୍ରୋଧ ହୋଇ ଅନ୍ୟ ଜଣେ ସାଧୁଙ୍କୁ କହିଲେ ମୁଁ କେବେ କାହାର ତୁମ୍ବା ଚୋରିକରେ ? ଏଭଳି ଭାବରେ ପ୍ରାୟ ପ୍ରତିଦିନ ଗଣ୍ଡଗୋଳ ହୁଏ । ଦିନେ ଜଣେ ବୁଦ୍ଧିମାନ ସାଧୁ ନିଦରେ ଶୋଇଲାଭଳି ଅଭିନୟକରି ପଡ଼ିରହି ସବୁକଥା ଜାଣିପାରିଲେ । ସେ ସେହି ଚୋର ଲୋକଟିକୁଧରି ମହନ୍ତଙ୍କ ପାଖକୁ ନେଇଗଲେ । ମହନ୍ତ କହିଲେ—"ଆରେ ! ତୁ ତୋର ସ୍ୱଭାବ ଏପର୍ଯ୍ୟନ୍ତ ବଦଳାଇ ପାରିଲୁନାହିଁ ମୂର୍ଖ କାହାଁକା । ସାଧୁହୋଇ ଏପର୍ଯ୍ୟନ୍ତ ଚୋରବୃତ୍ତି ଛାଡ଼ି ପାରିଲୁନାହିଁ ?" ସେ ଲଜ୍ଜିତ ହୋଇ କହିଲା— "ମହାରାଜ ! ମୁଁ ଚୋରି ଛାଡ଼ିଦେଇଛି, ହେଲେ ଏପରି କୌତୁକ ଟିକିଏ ନ କଲେ ମୁଁ ରହି ପାରିବନାହିଁ । ମୋର ସ୍ୱଭାବ କିପରି ଛାଡ଼ିବ ?" ନାରଦଙ୍କର ଠିକ୍ ଏହିପରି ସ୍ୱଭାବ । କାଶୀରେ ରେଶମୀ ଶାଢ଼ୀ କିଣିବାପାଇଁ ଆଗ୍ରହୀଥିବା ଗ୍ରାହକ ପଛରେ ଦଲାଲମାନେ ଲାଗିଥିବାପରି ନାରଦ ମୋକ୍ଷଧର୍ମ ପଥରେ ଗତି କରୁଥିବା ବ୍ୟକ୍ତି ପଛରେ ଲାଗିଥାଆନ୍ତି ।

ଶୁକଦେବ କହିଲେ – "ରାଜା ! ଏହି ଶବଳାଶ୍ୱମାନେ ଆଖି ବନ୍ଦକରି ପରଂବ୍ରହ୍ମ ମନ୍ତ୍ର ଜପକରି ଘୋର ତପସ୍ୟା କରୁଛନ୍ତି । ଏହି ସମୟରେ ବୀଣାବାଦନକରି ସୁଲଳିତ କଣ୍ଠରେ ରାମକୃଷ୍ଣଙ୍କ ଗୁଣଗାନକରି ସେମାନଙ୍କୁ ଆକର୍ଷିତ କରିବାପାଇଁ ସେମାନଙ୍କ ନିକଟରେ ନାରଦ ଆସି କହିଲେ– ଶବଳାଶ୍ୱଗଣ ! ଜୟ ଜୟ ସୀତାରାମ ! ନମୋନାରାୟଣ ! ନମୋନାରାୟଣ !"

ବୀଣାପାଣି ନାରଦଙ୍କ ଆଗମନରେ ସମସ୍ତେ ଜଳରୁ ବାହାରିଆସି ମଥାନତକରି ନାରଦଙ୍କୁ ପ୍ରଣାମ କଲେ । ଗୋଟିଏ ହାତରେ ବୀଣା ଓ ଆଉ ଗୋଟିଏ ହାତ ସମସ୍ତଙ୍କ ମଥାରେ ରଖି କଲ୍ୟାଣକରି ନାରଦ ସେମାନଙ୍କର କୁଶଳ ପ୍ରଶ୍ନ ପଚାରିଲେ ।"

ଶବଳାଶ୍ୱଗଣ ବିଧିପୂର୍ବକ ଦେବର୍ଷିଙ୍କର ପୂଜାକରି କହିଲେ – "ପ୍ରଭୋ ! ବହୁତ ଦୟାପରବଶ ହୋଇ ଆପଣ ଆମଭଳି ଅବୋଧ ବାଳକମାନଙ୍କୁ ଦର୍ଶନ ଦେଇଥିବାରୁ ଆମେ ମାନେ ଧନ୍ୟହେଲୁ ।

ନାରଦ ଖୁବ୍ ଗମ୍ଭୀର ଭାବରେ କହିଲେ "ହଁ ବାଳକଗଣ ! ମୁଁ ଦେଖୁଛି

ତୁମ୍ଭେମାନେ ସତ୍ପଥ ଭ୍ରଷ୍ଟ ହୋଇଅଛ, ତୁମକୁ ଦୀକ୍ଷା ଦେଇ ସତ୍ୟପଥରେ ପରିଚାଳିତ କରିବାପାଇଁ ମୁଁ ଏଠାକୁ ଆସିଛି ।

ଶବଲାଶ୍ୱମାନେ କହିଲେ—"ନା, ଭଗବାନ ! ଆମେମାନେ ପଥଭ୍ରଷ୍ଟ ହୋଇନାହୁଁ । ଆମର ପିତା ଆମକୁ ଯେଉଁ ଆଦେଶ ଦେଇଛନ୍ତି ତାହା ଅମେ ବଡ଼ ସାବଧାନତା ସହକାରେ ପାଳନ କରୁଅଛୁ । ପ୍ରଜାବୃଦ୍ଧି ନିମନ୍ତେ ଆମେମାନେ ଘୋର ତପସ୍ୟାରତ ।"

ନାରଦ ଦୁଃଖପ୍ରକାଶ କଣ୍ଠରେ କହିଲେ—"ଆରେ ପୁତ୍ରଗଣ ! ସେଇଟା ତୁମର ଭୁଲ । ଶାସ୍ତ୍ର ହେଉଛି ଯଥାର୍ଥ ପିତା । ଶାସ୍ତ୍ରରେ ଯାହା ଲେଖାଯାଇଛି ତାହା ହେଉଛି ଉଚିତ ପଥ । ସେହି ପଥରେ ଗତିକଲେ ମଙ୍ଗଳହେବ । ଅନ୍ୟସବୁ ପଥ କଣ୍ଟକମୟ । ତୁମେ ଯାଉଥିବା ପଥରେ ପ୍ରେମ ଆନନ୍ଦ, ସୁଖ ଶାନ୍ତି କିଛି ମିଳେ ନାହିଁ । ଏହାଦ୍ୱାରା ମଧ୍ୟ ସଂସାରରୁ ନିବୃତ୍ତି ମିଳେନାହିଁ । ଜନ୍ମମରଣ ଆଦି ଚୌରାଅଶୀ ଚକ୍ରରେ ଏହା ଘୁରୁଅଛି ।"

ଶବଲାଶ୍ୱମାନେ କହିଲେ - ତେବେ ମହାରାଜ ! ଆପଣ ଆମକୁ ସେହି ସତ୍‌ପଥକୁ ବତାଇ ଦିଅନ୍ତୁ । ଉପଦେଶ ପ୍ରଦାନ କରନ୍ତୁ, ଆମେ କ'ଣ କରିବୁ ? କେଉଁ ପଥରେ ଯିବୁ ?"

ନାରଦ କହିଲେ –":ଆଚ୍ଛା, ଠିକ୍ ଅଛି ମୁଁ ତୁମମାନଙ୍କୁ ପଚାରୁଛି ଯେ, ତୁମମାନଙ୍କର ଜ୍ୟେଷ୍ଠ ଶ୍ରେଷ୍ଠମାନେ ଯେଉଁ ପଥ ଦେଇ ଯାଇଛନ୍ତି ତୁମମାନଙ୍କ ପାଇଁ ସେହି ମାର୍ଗ ଶ୍ରେଷ୍ଠ କି ନାହିଁ ? ମୋତେ କୁହ ।"

ଶବଲାଶ୍ୱଗଣ କହିଲେ –"ନିଶ୍ଚୟ ଭଗବାନ ! ବଡ଼ ଲୋକମାନଙ୍କ ଦ୍ୱାରା ନିର୍ଦ୍ଦେଶିତ ପଥ ପରମ ପୁଣ୍ୟପ୍ରଦ ଅଟେ ।"

ଏକଥା ଶୁଣି ପ୍ରସନ୍ନ ଭାବ ପ୍ରକାଶକରି ନାରଦ କହିଲେ –ହେ ଭାତୃବତ୍ସଳ ! ତୁମେମାନେ ସମସ୍ତେ ବଡ଼ ଧର୍ମାତ୍ମା ଓ ଶୁଦ୍ଧ ହୃଦୟବାନ୍ ଅଟ । ମୁଁ ତୁମମାନଙ୍କୁ ଯାହା କହୁଛି, ତୁମେମାନେ ସେଯାକର । ତୁମେମାନେ ତୁମର ବଡ଼ ଭାଇମାନଙ୍କର ପଥ ଅନୁସରଣକର । ତାହା ହେଉଛି ନିଷ୍କଣ୍ଟକ, ଶ୍ରେୟସ୍କର ମଙ୍ଗଳମୟ, ସର୍ବୋତ୍ତମ ତଥା ବାସ୍ତବିକ ପଥ । ସେହିପଥ ଦେଇ ଗତିକଲେ ଶ୍ରମ ହେବନାହିଁ, ଗ୍ଲାନି ଘଟିବ ନାହିଁ, ନିଜର ଗନ୍ତବ୍ୟ ସ୍ଥାନରେ ଅତ୍ୟନ୍ତ ସରଳ ସୁଗମଭାବରେ ପହଞ୍ଚିଯାଇ ପାରିବ । କାରଣ ଶ୍ରେଷ୍ଠ ପୁରୁଷର ମାର୍ଗ ଶ୍ରେଷ୍ଠ ଭାବରେ ବିବେଚିତ । ତୁମର ସମସ୍ତ ଜ୍ୟେଷ୍ଠଭ୍ରାତା ଶ୍ରେଷ୍ଠ ଓ ବିଶ୍ୱାସବାନ୍ ଥିଲେ । ଯେଉଁ ଭାଇ ନିଜ ଭାଇର ଶ୍ରେଷ୍ଠ ମାର୍ଗକୁ ଅନୁସରଣକରେ, ସେହି ବ୍ୟକ୍ତି ପୁଣ୍ୟପଦ ସ୍ୱରୂପ ଅଟେ ଓ ପରଲୋକରେ ମରୁତ୍‌ଗଣଙ୍କ ସହ ଆନନ୍ଦରେ ବାସକରେ । ତୁମର ଭାଇମାନଙ୍କର ପଥ ପୁନରାବୃତ୍ତିଠାରୁ ଭିନ୍ନ ମାର୍ଗ ଅଟେ ।"

ଶୁକଦେବ କହିଲେ—ରାଜା ! ଏସବୁ କଥାକହି ନାରଦ ବୀଣା ଧରି ଚାଲିଗଲେ । ଶବଲାଶ୍ୱଗଣ ନାରଦଙ୍କର କୃଷ୍ଣବାଣୀ ଶୁଣି ସେଥିରେ ପ୍ରବୃତ୍ତହେଲେ । ସେମାନଙ୍କର ମଧ୍ୟ ସଂସାର ବାସନା ଓ ସୃଷ୍ଟି ବୃଦ୍ଧି କାର୍ଯ୍ୟରେ ବୈରାଗ୍ୟ ଜାତହେଲା ଏବଂ ଏମାନେ ଭାଇମାନଙ୍କର ପଥ ଅନୁସରଣ କରି ସମସ୍ତେ ସନ୍ନ୍ୟାସୀ ହୋଇଗଲେ । ଏମାନେ ପ୍ରଜାବୃଦ୍ଧି ନିମନ୍ତେ ଆଉ ତପ ନକରି ପରମେଶ୍ୱରପ୍ରାପ୍ତିର ଅନୁକୂଳ ମାର୍ଗରେ ଅଗ୍ରସର ହେଲେ । ଯାହାର ପ୍ରାପ୍ତି ଅନ୍ତର୍ମୁଖୀ ବୃତ୍ତି ଦ୍ୱାରା ସମ୍ଭବ, ସେଇ ମାର୍ଗରେ ଯିଏ ଗଲା ସେ ସବୁଦିନପାଇଁ ଚାଲିଗଲା । ଏହା ଏପରି ଏକ ରାତ୍ରି ଯେଉଁଥିରେ କି ଥରେ ପ୍ରବେଶ କଲେ ଏହି ସଂସାରକୁ ଆଉ ବାହାରି ଆସି ହୁଏନାହିଁ ।"

ଏଥର ମଧ୍ୟ ପ୍ରଜାପତି ଦକ୍ଷ ଜାଣିବାକୁ ପାଇଲେ ଯେ, ତାଙ୍କର ଏହି ପୁତ୍ର-ମାନଙ୍କୁ ମଧ୍ୟ ନାରଦ ଭୁଲାଇ ବାବାଜୀ କରିଦେଇଛନ୍ତି । ତେଣୁ ତାଙ୍କ ମନରେ ଦୁଃଖର ଛାୟା ଖେଳିଗଲା । ସେ କେବଳ ଚିନ୍ତା କରିବାକୁ ଲାଗିଲେ – ଏଇ ନାରଦ କାହିଁକି ମୋ ପଛରେ ଲାଗିଛନ୍ତି । ମୋର ପୁଅମାନଙ୍କୁ ବାରମ୍ବାର ବାବାଜୀ କରାଇ ସୃଷ୍ଟି କରିବାପାଇଁ କାହିଁକି ବାଧା ପ୍ରଦାନ କରୁଛନ୍ତି । ମୁଁ ଏକଥା ପ୍ରଥମେ ଭଗବାନ ପଦ୍ମଯୋନିଙ୍କୁ କହିବାରୁ ସେ କ୍ଷମା କରି ଦେଇଥିଲେ । ଯଦି ବର୍ତ୍ତମାନ ସେଇ ନିର୍ଲଜ ଦେଖାଦିଅନ୍ତା ତେବେ ତାର କୃତକର୍ମ ପାଇଁ ତାକୁ ଉପଯୁକ୍ତ ଫଳ ଚଖାଇ ଦିଅନ୍ତି । ତାକୁ ଏପରି ଦଣ୍ଡ ଦିଅନ୍ତି ଯେଉଁଥିରୁ କି ସେ ଠିକ୍ ଭାବରେ ଜାଣିପାରନ୍ତା ଯେ ଅନ୍ୟଲୋକର ପୁଅକୁ ବାବାଜୀ କରାଇଦେଲେ କିପରି ଫଳମିଳେ ।"

ଏଠାରେ ଦକ୍ଷ ପ୍ରଜାପତି ଏପରି ଚିନ୍ତାକଲାବେଳେ ତେଣେ ମହର୍ଷି ନାରଦ ଅନ୍ୟ ବିଧାନ ମନେମନେ ଚିନ୍ତା କରୁଥାଆନ୍ତି । ସେ ଭାବୁଥିଲେ, ଯାହାର ଗୋଟିଏ ପୁତ୍ର ଚାଲିଯାଏ ତାର ପିତାର ମଧ୍ୟ ଏ ସଂସାର ପ୍ରତି ବୈରାଗ୍ୟଭାବ ଚାଲିଆସେ । ଦକ୍ଷଙ୍କର ତ ଏଗାର ହଜାର ପୁତ୍ର ବୈରାଗୀ ହୋଇ ଚାଲି ଯାଇ ଯଦି ମୁକ୍ତ ମାର୍ଗର ଅଧିକାରୀ ହୋଇପାରିଲେ ତେବେ ଦକ୍ଷଙ୍କୁ ମଧ୍ୟ ଏହିମାର୍ଗକୁ ନେଇଯିବା ଉଚିତ । କାରଣ ଏଗାର ହଜାର ଏକ ଚେଲା ମୋର ହୋଇଯିବେ । ଏହିସବୁ କଥା ବିଚାରି କରି ବୀଣାବାଦନପୂର୍ବକ ରାମକୃଷ୍ଣଙ୍କର ପୁଣି ଗାନ କରି କରି ନାରଦ ଆସି ଦକ୍ଷ ପ୍ରଜାପତିଙ୍କ ସମ୍ମୁଖରେ ପହଁଞ୍ଚିଲେ । ଦକ୍ଷ ଦୂରରୁ ନାରଦଙ୍କ ଦର୍ଶନ ପାଇ ଅଗ୍ନିଶର୍ମା ହୋଇଗଲେ । ପାଦ୍ୟ, ଅର୍ଘ୍ୟ, ସ୍ୱାଗତ ସତ୍କାର ଶିଷ୍ଟାଚାର ସବୁ କିଛି ଭୁଲିଗଲେ । କ୍ରୋଧଯୋଗୁଁ ତାଙ୍କ ପାଟିରୁ ସ୍ପଷ୍ଟଭାବରେ କଥା ବାହାରିଲା ନାହିଁ । ସେ କମ୍ପି ଉଠି ଲାଲ ଲାଲ ଆଖି କରି ନାରଦଙ୍କ ଉପରକୁ କୁଦିପଡ଼ିଲେ । ତାଙ୍କର ଅଧର ରାଗରେ ଥରହର ହେବାକୁ ଲାଗିଲା । ଦାନ୍ତ ଓଠ କାମୁଡ଼ି ସେ କହିଲେ — କହୋ କଲିଆ ! ତୁମେ ବଡ଼ ଦୁଷ୍ଟ, ବଦମାସ,

କିନ୍ତୁ ମୁଁ ଭାବୁଥିଲି ତୁମେ ଜଣେ ବଡ଼ ସାଧୁ ଭଗବଦ୍ ଭକ୍ତ ବୋଲି । ପ୍ରକୃତରେ ତୁମେ ଗୋଟାଏ ପାଷାଣ୍ଡ, ମୂର୍ଖ, ଧୂର୍ତ୍ତ, ଠକ ଓ ବିଶ୍ୱାସଘାତକ ।

ନାରଦ ଖୁବ୍ ସରଳ ଓ ଗମ୍ଭୀର ଭାବରେ କହିଲେ– ରାଜା ! ମୁଁ ଆପଣଙ୍କର କିଛି ଅନିଷ୍ଟ କରିଛି କି ?

ଦକ୍ଷ ଅତ୍ୟନ୍ତ ରାଗିଯାଇ ଦୃଢ଼ ସ୍ୱରରେ କହିଲେ—"ଆହା, ହା, ଏପରି ପ୍ରଶ୍ନ ପଚାରିବାକୁ ଟିକିଏ ଲଜ୍ଜା ଲାଗୁନାହିଁ ! ଏହାଠାରୁ ବଳି ଆଉ କ'ଣ ମୋର ଅନିଷ୍ଟ କରିଥାଆନ୍ତ ବୋଲି ଭାବୁଛ । ମୋ ଘରେ ନିଆଁ ଲଗାଇ ଦେଲ, ଏବେ ମୋ ମୁଣ୍ଡ କାଟିବାଟା ବାକିରହିଛି । ଦିଅ ଏବେମୋର ମୁଣ୍ଡ କାଟିଦିଅ । ପୁଣି ପଚାରୁଛ କ'ଣ ନା କି ପ୍ରକାର ଅନିଷ୍ଟ କରିଛି ବୋଲି । ତୁମେ ତ ହେଉଛ ଆଜନ୍ମ ବୈରାଗୀ । ବନ୍ଧ୍ୟା କି ଜାଣେ ପ୍ରସବ ବେଦନା । ତୁମେ କାହୁଁ ଜାଣିବ ପିତାର ପୁତ୍ର ପ୍ରତି କେତେ ପ୍ରେମ, କେତେ ସ୍ନେହ, କେତେ ଆଦର । ପୁତ୍ର ପିତାର ହୃଦୟ ସ୍ୱରୂପ ଓ ବାହ୍ୟପ୍ରାଣ । ଦଶଟି ପୁତ୍ର ଥିଲେ ସେଥିରୁ ଗୋଟିକୁ ମାଗିଲେ ମଧ୍ୟ ଦିଆଯାଏ ନାହିଁ । କୋଡ଼ିଏଟି ଆଙ୍ଗୁଠିରୁ କେଉଁ ଗୋଟିଏ ଆଙ୍ଗୁଠି ମାଗିଲେ ମଧ୍ୟ ଦେଇହୁଏନାହିଁ । ଗୋଟିଏ ନୁହେଁ, ଦୁଇଟି ନୁହେଁ, ଦଶଟି ନୁହେଁ, କୋଡ଼ିଏଟି ନୁହେଁ, ଏକହଜାର ମଧ୍ୟ ନୁହେଁ, ମୋର ପୁରା ଏଗାର ହଜାର ପୁତ୍ରଙ୍କୁ କୌପୀନ ପରାଇ ଭିକାରୀ ସଜାଇ ବାବାଜୀ କରିଦେଲ । ପୁଣି ଭଲମଣିଷ ପରି ପଚାରୁଛ, କ'ଣ ନା ମୁଁ ଆପଣଙ୍କର କ'ଣ ଅନିଷ୍ଟ କଲି । ତୁମେ ମୋର ସର୍ବସ୍ୱ ନଷ୍ଟ କରିଦେଲ ।"

ଧୈର୍ଯ୍ୟ ସହକାରେ ନାରଦ କହିଲେ —ମହାରାଜ ! ଆପଣ କ୍ରୋଧ କରନ୍ତୁନାହିଁ । ଦେଖନ୍ତୁ ପରମହଂସ ଆଶ୍ରମ ସବୁଠାରୁ ଶ୍ରେଷ୍ଠ ଅଟେ । ଗୃହସ୍ଥାଶ୍ରମ ଅପେକ୍ଷା ଲକ୍ଷେଗୁଣ ଶ୍ରେଷ୍ଠ । ଏହି ପରମହଂସ ଧର୍ମରେ ମୁଁ ଆପଣଙ୍କ ପୁତ୍ରମାନଙ୍କୁ ଦୀକ୍ଷିତ କରାଇଛି । ଏହାଦ୍ୱାରା ମୁଁ କ'ଣ କିଛି ଖରାପ କାର୍ଯ୍ୟ କରିଛି ବୋଲି ଆପଣ ଭାବୁଛନ୍ତି ? କାହିଁ ମୁଁ ବୁଝି ପାରୁନାହିଁ ।"

କ୍ରୋଧାନ୍ଧ ଭାବରେ ଦକ୍ଷ କହିଲେ— "ତୁମର ବୁଦ୍ଧି ଥିଲେ ଏଠାରେ ବସିଥାଆନ୍ତ । ତୁମର ମୁଣ୍ଡରେ ଖାଲି ଗୋବର ପୂରି ରହିଛି । ଅରେ ତୁମେ ଚଣ୍ଡାଳର, ତୁମେ ଭୁଲ ବାଟରେ ଯାଉଛ । ଯେତେବେଳ ପର୍ଯ୍ୟନ୍ତ ମଣିଷ ମୁଣ୍ଡ ଉପରେ ଋଷିଋଣ, ଦେବଋଣ ଏବଂ ପିତୃଋଣ ଏହି ତିନିଋଣ ଲଦି ହୋଇଥାଏ ସେତେବେଳ ପର୍ଯ୍ୟନ୍ତ ସେ ପରମହଂସ ଧର୍ମର ଅଧିକାରୀ ହୋଇ ପାରିବ ନାହିଁ । ପ୍ରଥମେ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣକରି ବେଦାଧ୍ୟୟନ, ଗୁରୁସେବା କରିବା ଦ୍ୱାରା ଋଷି ଋଣରୁ ମୁକ୍ତ ମିଳେ । ପୁଣି ଯୋଗ୍ୟା ଭାର୍ଯ୍ୟାର ପାଣି

ଗ୍ରହଣକରି ଅଗ୍ନିହୋତ୍ର ପଞ୍ଚମହାଯଜ୍ଞ ତଥା ଆହୁରି ବଡ଼ ଯଜ୍ଞ କଲେ ଦେବଋଣରୁ ମୁକ୍ତି ମିଳିଥାଏ । ନିଜର ଧର୍ମପତ୍ନୀଠାରୁ ଯୋଗ୍ୟପୁତ୍ର ଜନ୍ମ କରି ପିତୃଋଣରୁ ମୁକ୍ତିଲାଭ ହୁଏ । ଯାହାର ପୁତ୍ର ନାହିଁ ତାର ସ୍ୱର୍ଗପ୍ରାପ୍ତି ହୁଏନାହିଁ । ଏଇ ଶରୀର ଆମର ପିତା, ପିତାମହ ତଥା ସବୁଠାରୁ ଉପରେ । ଯେତେବେଳ ପର୍ଯ୍ୟନ୍ତ ଆମେ ଭବିଷ୍ୟତବଂଶ ବଢ଼ାଇବା ନିମନ୍ତେ ପୁତ୍ର ଜନ୍ମ କରିବାକୁ ଚେଷ୍ଟାକରିନାହୁଁ ସେତେବେଳ ପର୍ଯ୍ୟନ୍ତ ଆମର କୌଣସି କଥାରେ ଅଧିକାର ନାହିଁ । ମୋର ପୁତ୍ରମାନେ ସାଂସାରିକ ସୁଖ କ'ଣ ଜାଣିନାହାଁନ୍ତି । କର୍ମ ସମ୍ପର୍କରେ ସେମାନେ କୌଣସି ବିଷୟ ମଧ୍ୟ କରିଜାଣିନାହାଁନ୍ତି । ଏହିମାନଙ୍କୁ ତୁମେ କୌପିନ୍ ପିନ୍ଧାଇ ଦେଇ ଭିକାରି କରିଦେଲ । ସେମାନେ କେଉଁଆଡ଼କୁ ହୋଇ ପାରିଲେ ନାହିଁ, 'ନା ଏ କୁଳର ନା ସେ କୁଳର', ଇହଲୋକ ସୁଖ ଭୋଗୀ ପାରିଲେ ନା ପରଲୋକରେ ପ୍ରାପ୍ତ ହେବାକୁ ଥିବା ଫଳ ପାଇବାକୁ ଉପଯୁକ୍ତ ହେଲେ ।"

ନାରଦ କହିଲେ—"ରାଜା ! ଆପଣଙ୍କ ପିଲାଗୁଡ଼ିକ ବଡ଼ ସରଳ ପ୍ରକୃତିର ଥିଲେ, ସେମାନଙ୍କ ହୃଦୟ ଖୁବ୍ ନିର୍ମଳ ଥିଲା । ଏମାନେ ପ୍ରକୃତରେ ସନ୍ନ୍ୟାସୀମାର୍ଗର ଅଧିକାରୀ । ଅନଧିକାରୀ ଲୋକକୁ ମୁଁ କେବେ ଭୁଲରେ ବି ତ୍ୟାଗ ପଥର ଦୀକ୍ଷାପ୍ରଦାନ କରେନାହିଁ । ଆପଣ ମୋ କଥାକୁ ବିଶ୍ୱାସ କରନ୍ତୁ ।"

ନାରଦଙ୍କର ଏହିକଥା ଶୁଣି ହଠାତ୍ ରାଗିଯାଇ ଦକ୍ଷ କହିଲେ—"ତୁଚ୍ଛକରି ! କାହିଁକି ମିଛରେ ଗୋଟାଏ ବକ୍‌ବକ୍ ହେଉଛ ? କିଏ କେଉଁ ପଥର ଅଧିକାରୀ ତୁମକୁ କ'ଣ ଜଣା ? ତୁମେ ପିଲାମାନଙ୍କୁ କେବଳ ଠକ ଜାଣିଛ । ସେମାନଙ୍କର ବୁଦ୍ଧି ନଷ୍ଟ କରିବାପାଇଁ ଶିକ୍ଷାଦେଇଛ । ତୁମେ ଲୋକପ୍ରସିଦ୍ଧ ଏତେ ଦୟାଳୁ ପୁରୁଷ, କିନ୍ତୁ ମୁଁ କହୁଛି ତୁମଭଳି ନିର୍ଦ୍ଦୟପୁରୁଷ ସଂସାରରେ ଆଉ କେହି ନାହିଁ । ଲୋକମାନେ ତୁମକୁ ଭଗବାନଙ୍କ ଦୂତ ବୋଲି କହନ୍ତି । ମୁଁ କହୁଛି ତୁମଭଳି ନିର୍ଲଜ୍ଜକୁ ଭଗବାନଙ୍କ ଦୂତ ଭାବରେ ଅଖ୍ୟାୟିତ କଲେ ଏଥିରେ ଭଗବାନଙ୍କର ଅପଯଶ ହେବ । ତୁମେ ତାଙ୍କର ଯଶକୁ କଳଙ୍କିତ କରିବା କପଟୀ ଓ କ୍ରୂର ପୁରୁଷ ଅଟ । ତୁମେ ସ୍ୱଇଚ୍ଛାରେ ଭଗବାନଙ୍କ ଦୂତପଣ ଛାଡ଼ିଦେବା ଉଚିତ । ସଦାଚାର ସଙ୍କୋଚ ବୋଲି ତୁମଠାରେ କିଛିନାହିଁ । ତୁମେ ନିର୍ଲଜ୍ଜ ଭାବରେ ଭଗବାନଙ୍କର ଦୂତ ହୋଇ ରହିଛ । ଲୋକେ କହନ୍ତି ନାରଦ ଭକ୍ତ ଅଟନ୍ତି । ଏମିତି କେତେ ଭକ୍ତ ଅଛନ୍ତି । ଭକ୍ତମାନେ ସର୍ବଦା ପରର ଉପକାର ନିମନ୍ତେ କାର୍ଯ୍ୟ କରନ୍ତି । ସେମାନେ ସର୍ବଦା ସମସ୍ତ ପ୍ରାଣୀମାନଙ୍କ ମଙ୍ଗଳ ନିମନ୍ତେ ଲାଲାୟିତ ଓ ତତ୍ପର । ତୁମେ ହେଉଛ ସୌହାର୍ଦ୍ଦ୍ୟନାଶକାରୀ ଏବଂ ବିନା କାରଣରେ ଝଗଡ଼ା ଓ ଶତ୍ରୁ ସୃଷ୍ଟିକାରୀ ।"

ନାରଦ କହିଲେ—"ରାଜା ! ମୁଁ କାହାସହିତ ଶତ୍ରୁତା କରିଛି ?" ରାଗରେ ଦକ୍ଷ କହିଲେ—"ଆରେ ! ଶତ୍ରୁତା କରିନାହିଁ, ମୁଁ କେବେ ଭୁଲରେ ତୁମର କିଛି କ୍ଷତି

କରିଛ ? ଆଜି କେଉଁ ଶତ୍ରୁତା ହେତୁ ମୋ ଉପରେ ପ୍ରତିଶୋଧ ନେଲ ? କାହିଁକି ମୋର ଅବୋଧ ପୁତ୍ରମାନଙ୍କୁ ଭୁଲାଇ ବାବାଜୀ କରିଦେଲ ?"

ନାରଦ କହିଲେ- "ମହାରାଜ ! ଆପଣ କ୍ରୋଧ ଭାବ ତ୍ୟାଗ କରି ଟିକିଏ ଗମ୍ଭୀର ଭାବରେ ବିଚାର କରନ୍ତୁ । ଜୀବମାନଙ୍କର ପରମ ଲକ୍ଷ୍ୟ ଶାଶ୍ୱତ ଶାନ୍ତିପ୍ରାପ୍ତି, ଯିଏ କି ଏହି ଜନ୍ମ ମରଣ ରୂପକ ଚକ୍ରରୁ ବାହାରି ଯାଇ ଅବିନାଶ ନିତ୍ୟ ସୁଖକୁ ଇଚ୍ଛା କରେ । ସଂସାର ସ୍ନେହ ବନ୍ଧନର ମୂଳଚ୍ଛେଦନ ନ ହେବା ପର୍ଯ୍ୟନ୍ତ ସେ ଏହା ପାଇ ପାରେ ନାହିଁ । ଏଣୁ ସେମାନଙ୍କୁ ବୈରାଗୀ କରିଦେଇ ସେମାନଙ୍କର ମହାନ୍ ଉପକାର କରିଛି ।"

ଦକ୍ଷ ଅତ୍ୟନ୍ତ ଗମ୍ଭୀର ଭାବରେ କହିଲେ—ତୁମେ ଖୁବ୍ ବଡ଼ ବଡ଼ କଥା କହୁଛ । କିନ୍ତୁ ସେ ସବୁ କଥାକୁ ବୁଝିବା ପାଇଁ ମଧ୍ୟ ତୁମ ମୁଣ୍ଡରେ ବୁଦ୍ଧି ନାହିଁ । କେବଳ କୌପୁନି ମାରି ଅବଧୂତ ବେଶ ଧାରଣ କରିଦେଲେ ସ୍ନେହବନ୍ଧନ ତୁଟି ଯାଏ-ନାହିଁ କି ଶାଶ୍ୱତ ଶାନ୍ତି ମିଳେ ନାହିଁ । କାରଣ ଜ୍ଞାନୋଦୟ ନ ହେବା ଯାଏ କେବଳ ତୁମ କଥାରେ ବୈରାଗ୍ୟଭାବ ଉଦୟ ହୁଏ ନାହିଁ । ଯଦି ବୈରାଗ୍ୟଭାବ ଜାତ ନ ହୁଏ ତେବେ ଉପଶମ କିପରି ହେବ । ଉପଶମ ବିନା ସ୍ନେହବନ୍ଧନ ଛିନ୍ନ ତ୍ରିକାଳରେ ମଧ୍ୟ ସମ୍ଭବ ନୁହେଁ ।"

ନାରଦ କହିଲେ "ସଂସାରର ବାସନା ମନରେ ଦେଖା ନ ଦିବା ବୈରାଗ୍ୟ ଭାବରେ ବିବେଚିତ । ବିଷୟକୁ ଗ୍ରହଣ ନ କରି ତାକୁ ଉପଭୋଗ ନ କରିବା ଏହା ହେଉଛି ତ୍ୟାଗ । ଏହିସବୁ ଗୁଣର ସେମାନେ ଅଧିକାରୀ ଥିଲେ ।"

ଦକ୍ଷ କ୍ରୋଧରେ କହିଲେ—"ଆହେ କଳିଆ ! ତୁମର ବୁଦ୍ଧି ନଷ୍ଟ ହୋଇଗଲାଣି । ମଣିଷ ଯେ ପର୍ଯ୍ୟନ୍ତ ବିଷୟକୁ ଅନୁଭବ କରି ନ ଥାଏ, ସେ ପର୍ଯ୍ୟନ୍ତ ତାର କଟୁତାକୁ ସେ ଅନୁଭବ କରି ପାରେନାହିଁ । ଏଣୁ ସେ ଏହାର ଦୁଃଖମୟ ଘଟଣା ଶୁଣିଲେ ଯାଇ ବୈରାଗ୍ୟଭାବ ଜାତହୁଏ । ଅନ୍ୟଠାରୁ ଶୁଣି ଅନୁଭବ କରିହୁଏନାହିଁ । ନିଜେ ଅନୁଭବ କରି ପାରିଲେ ସେ ସବୁ ରହସ୍ୟ ଜାଣିପାରେ । ତୁମେ ତ ଆଜନ୍ମ ବୈରାଗୀ । ତୁମେ କେବେହେଲେ ସ୍ତ୍ରୀ ସୁଖ ଅନୁଭବ କରିନାହଁ । ତୁମେ କ'ଣ ଜାଣିଛ, ତୁମକୁ କିଏ ବିଶ୍ୱାସ କରିବ । ଆମର ଏହି ନଗରରେ କେହି ସ୍ତ୍ରୀ ବ୍ୟତୀତ ରହି ପାରିବନାହିଁ । ଯିଏ ବିବାହ ନ କରି ସାଧୁ ହୋଇଯାଏ ତାର ପତନ ହୋଇଥାଏ । ଆମେ ସବୁ ମର୍ଯ୍ୟାଦାପାଳନକାରୀ ଗୃହସ୍ଥ ଅଟୁ । ତୁମେ ମୋର ବହୁତ ଅପକାର କରିଛ । ମୋର ପଞ୍ଚହଜାର ପୁଅଙ୍କୁ ପ୍ରଥମେ ବାବାଜୀ କରିଦେଲ । ମୁଁ ମନ ଦୁଃଖରେ ପଡ଼ି ରହିଲି । ଭାବିଲି- ସାଧୁ ଭାବରୁ କିଏ ତ୍ୟାଗ କରି ପାରିବ ? କିନ୍ତୁ ତୁମେ ବର୍ତ୍ତମାନ ମୋର

ବିନାଶ ନିମନ୍ତେ ଏଠାକୁ ଆସିଅଛ । ଏଣୁ ଆଜି ତୁମକୁ ଅଭିଶାପ ନ ଦେଇ ଛାଡ଼ିବି ନାହିଁ । ତୁମେ କୌଣସି ଗୋଟିଏ ସ୍ଥାନରେ ବାସ କରି ପାରିବନାହିଁ । ମୋର ଘରଦ୍ୱାର ଭାଙ୍ଗି ଦେଇଛ ଏଣୁ ତୁମର କେଉଁଠି ଘର ଦ୍ୱାର ରହିବ ନାହିଁ । ଚନ୍ଦପରି ତୁମେ ଚଉଦ ବ୍ରହ୍ମାଣ୍ଡ ଘୂରି ବୁଲିବ ବୋଲି ଅଭିଶାପ ଦେଉଛି ।"

ଅଭିଶପ୍ତ ହୋଇ ନାରଦ ହସି କହିଲେ—"ଠିକ୍ ଅଛି, ଆପଣଙ୍କର ଅଭିଶାପ ମୁଁ ମୁଣ୍ଡପାତି ଗ୍ରହଣ କରି ନେଉଛି । ଗୋଟିଏ ସ୍ଥାନକୁ ମୁଁ କାହିଁକି ଗ୍ରହଣ କରିବି ? ଗୋଟିଏ ସ୍ଥାନରେ ରହିଲେ ମୋହ ମାୟା ଜାଗ୍ରତ ହେବ । ସାଧୁ ପାଇଁ ଭ୍ରମଣ କରିବା ବା ଘୂରି ବୁଲିବା ଅଭିଶାପ ନୁହେଁ, ଆଶୀର୍ବାଦ । ଏହା କହି ନାରଦ ହସିବାକୁ ଲାଗିଲେ ।"

ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ ରାଜା ପରୀକ୍ଷିତ ପଚାରିଲେ—"ପ୍ରଭୋ ! ନାରଦ ତ ସର୍ବସମ୍ମତ ଭଗବାନଙ୍କ ଭକ୍ତ, ତଥା ଭଗବାନଙ୍କ ଅବତାର ଅଟନ୍ତି । ସେ କୌଣସି ଅପରାଧ କରିନାହାନ୍ତି । ଦକ୍ଷ ପୁତ୍ରମାନଙ୍କର କଲ୍ୟାଣ କରିଛନ୍ତି । ଏହି ନିରପରାଧ ସମ୍ମାନିତ ମହାପୁରୁଷଙ୍କ ପ୍ରତି ଦକ୍ଷ କାହିଁକି ଭଦ୍ର ଭାବରେ କଥାବାର୍ତ୍ତା ଓ ଉଚିତ ବ୍ୟବହାର ଦେଖାଇ ନ ଥିଲେ । ଏତେ ବଡ଼ କଡ଼ା କଥା ଶୁଣି ନାରଦ କାହିଁକି ହସିଲେ । ଏହି କଠିନ ଅଭିଶାପ ବାକ୍ୟ ଶ୍ରବଣ କରି କାହିଁକି ଓଲଟା ଅଭିଶାପ ଅଭିମାନୀ ଦକ୍ଷକୁ ଦେଇ ନ ଥିଲେ ?"

ଏହା ଶୁଣି ଶୁକଦେବ କହିଲେ—"ରାଜା ! (ତ୍ୟାଗୀ ଓ ରାଗୀ ମଧ୍ୟରେ ଏହି ହେଉଛି ପାର୍ଥକ୍ୟ ! ବିଷୟ ଓ ବୈରାଗ୍ୟ ମଧ୍ୟରେ ଏହା ହେଉଛି ବିଶେଷତ୍ୱ । ସଂସାରରେ ତାକୁହିଁ ସାଧୁ କୁହାଯାଏ, ଯିଏ ସମର୍ଥ ହୋଇ ମଧ୍ୟ ଅନ୍ୟର ଅପରାଧକୁ ସହ୍ୟ କରିଯାଏ । ସେ ଗୋଟିଏ କଥା କହିଥିଲେ, ତା ପରିବର୍ତ୍ତେ ଦୁଇକଥା ମୁଁ କହୁଛି । ସେ ଚାପୁଡ଼ା ମାରିଲେ ମୁଁ ବିଧା ମାରିବି । ସେ ଢେଲା ପକାଇଲେ ମୁଁ ତା ଉପରେ ପଥର ପକାଇବି । ଏ ସବୁ ହେଉଛି ସଂସାରୀ ଲୋକମାନଙ୍କର ନୀତି । ଯାହାଠାରେ ସହନଶୀଳତା ରହିଛି, ସେ ଅପକାରୀର ଅପକାର ଚିନ୍ତା ନ କରି ଓଲଟା ତା'ର ଉପକାର କରିଥାଏ । ଏହି ବ୍ୟକ୍ତି ହେଉଛି ପ୍ରକୃତରେ ଭଗବାନଙ୍କ ଭକ୍ତ) । ଭଗବାନଙ୍କ ଭକ୍ତ ବୃକ୍ଷଠାରୁ ମଧ୍ୟ ଅଧିକ ସହନଶୀଳ ଏବଂ ତୃଣଠାରୁ ନିଜକୁ ଶ୍ରେଷ୍ଠ ବୋଲି ଭାବେ । ଏଣୁ ସମର୍ଥବାନ ହୋଇ ମଧ୍ୟ ନାରଦ ପ୍ରଜାପତି ଦକ୍ଷଙ୍କୁ ଓଲଟା ଅଭିଶାପ ଦେଇ ନଥିଲେ !

ଶ୍ରୀଶୁକଦେବ କହିଲେ—"ରାଜା ! କୋଧାନ୍ଧ ଦକ୍ଷଙ୍କର ଅଭିଶାପକୁ ଶିରୋଧାର୍ଯ୍ୟ କରି ଦୁଃଖିତ ନ ହୋଇ ପ୍ରସନ୍ନ ଚିତ୍ତରେ ବୀଣା ବାଦନ କରି ହରିନାମ ଗାଇ ଗାଇ ନାରଦ ମହର୍ଷି ସେଠାରୁ ଚାଲିଯାଇ ସ୍ୱ ଇଚ୍ଛାରେ ଭ୍ରମଣ କରିବାକୁ

ଲଗିଲେ । ମୁଁ ଏଠାରେ ପ୍ରଜାପତି ଦକ୍ଷଙ୍କର ହର୍ଯଶ୍ୱ ଓ ଶବଲାଶ୍ୱ ପୁତ୍ରମାନଙ୍କର ବୈରାଗ୍ୟ ବୃତ୍ତାନ୍ତ ଶୁଣାଇଲି । ଏବେ କୁହନ୍ତୁ ଆପଣ ଆଉ କ'ଣ ଶୁଣିବାକୁ ଇଚ୍ଛା କରୁଛନ୍ତି ?"

—ଛପ୍‌ପୟ—

ସୁନକେଂ ସବ ଶବଲାଶ୍ୱ ଭୟେ ଭିକ୍ଷୁକ ଗୃହ ତ୍ୟାଗୀ ।
ଦକ୍ଷ ସୁନେ୍ୟା ସବ ବୃତ୍ତ ହୃଦୟ କୋପାନଲ ଜାଗୀ ॥
ଆଗ ବବୁଲା ଭୟୋ କ୍ରୋଧ ବ୍ୟାପୋ ନସ ନସ ମହଁ ।
ତୁରତଦ ଦୟୋ ତିନ ଶାପ ରହେ୍ୟା ନହିଁ ମନ ନିଜ ବଶମହଁ ॥
କହେଁ ଦକ୍ଷ-ତୁ ଜଗତ ମହଁ, କବହୁଁ ନ କୁଣ୍ଠୀ ବନାଇ କେଂ ।
ଥିର ନ ରହେ୍ୟା ଘୁମେ୍ୟା କରେ, ତୁମଡ଼ୀ ତାନ ବଜାଇ କେଂ ॥



## ଦକ୍ଷଙ୍କ ଷାଠିଏ କନ୍ୟା

ତତଃ ପ୍ରାଚେତସୋଽସିକ୍ନ୍ୟାମନୁନୀତଃ ସ୍ୱୟଂଭୁବା ।
ଷଷ୍ଟିଂ ସଞ୍ଜନୟାମାସ ଦୁହିତୃଃ ପିତୃବତ୍ସଲାଃ ॥

[ ଶ୍ରୀମଦ୍ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୬ଷ୍ଠ ଅଧ୍ୟାୟ ॥ ୧ମ ଶ୍ଳୋକ ]

ଛପ୍‌ପୟ

ବିଧି ଆଜ୍ଞା ନେଇଂ ସାଠି ଦକ୍ଷ କନ୍ୟା ଉପଜାଈ ।
ତେରହ କଶ୍ୟପ ଲଈଂ ଚନ୍ଦ୍ର ସତାଇସ ବ୍ୟାଈଂ ॥
ଭୂତ ଅଂଗିରା କୃଶାଶ୍ୱ ଦଈ ଦ୍ୱୈ ଦ୍ୱୈ ସୁକୁମାରୀ ।
ଶେଷ ତାର୍କ୍ଷ୍ୟ ସଁଗ ଧର୍ମ ବିବାହୀଂ ପୁତ୍ରୀ ପ୍ୟାରୀ ॥
ପୁତ୍ର ପୌତ୍ର ସବକେ ବହୁତ, ଭୟୌ ଜଗତ ସବ ଭରି ଗୟୌ ॥
ବହୁ ସଂତତି ଲଖି ଦକ୍ଷ କୋ, ହୃଦୟ ସରୋରୁହ ଖିଲ ଗୟୌ ॥

ପୁଅ ଓ ଝିଅ ମଧ୍ୟରେ କୌଣସି ତଫାତ୍ ନାହିଁ । ଦୁହେଁଯାକ ଉଦର ମଧ୍ୟରୁ ଜନ୍ମ ହୋଇ ଥାଆନ୍ତି । ଏତିକ ମାତ୍ର ପ୍ରଭେଦ ଯେ ଝିଅ ପର ଘରକୁ ଯାଇ ବଂଶ ବୃଦ୍ଧି କରେ ଓ ପୁତ୍ର ନିଜ ଘରେ ରହି ବଂଶ ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖେ । ଯାହାର ପୁତ୍ର ହୁଏ ନାହିଁ ବା ହୋଇ କରି ବାବାଜୀ ହୋଇ ଚାଲିଯାଏ ବା ମରିଯାଏ ସେ ଲୋକ ଝିଅ-ମାନଙ୍କୁ ନିଜର ପୁତ୍ର ଭାବରେ ଜ୍ଞାନ କରେ । ଯାହାର ସନ୍ତାନ ହୁଏ ନାହିଁ ସେ ଅନ୍ୟ-ଲୋକର ପୁତ୍ରକୁ ଆଣି କୋଳରେ ବସାଏ । ଏହିପରି ସେ ବଂଶ ନଷ୍ଟ କରିବା ପାଇଁ ଦିଏ ନାହିଁ । ପୁରୁଷ ଅପେକ୍ଷା ସ୍ତ୍ରୀମାନଙ୍କର ମୋହ, ମମତା, ସନ୍ତାନ ଲାଭର ଇଚ୍ଛା ବେଶୀ । ପୁରୁଷ ପ୍ରାୟ ନିରସ ପ୍ରକୃତିର, ତା ପାଇଁ ସରସତାର ସଞ୍ଚାର ସ୍ତ୍ରୀମାନଙ୍କ ଦ୍ୱାରା ହୋଇଥାଏ । ସନ୍ତତିମାନଙ୍କ ପ୍ରତି ଅତ୍ୟଧିକ ଅନୁରାଗ ମା ହୃଦୟରେ ଦେଖାଦିଏ । ରାକ୍ଷସୀମାନଙ୍କଠାରେ କାମ ବାସନା ଅଧିକ ଜାଗ୍ରତ ହେଲେ ସନ୍ତାନ ସନ୍ତତିଙ୍କ ପ୍ରତି ଅନୁରାଗ କ୍ଷୀଣ ହୋଇଯାଏ । ଏହିପରି ସ୍ତ୍ରୀ କାମ ବାସନାରେ ବଶୀଭୂତ ହୋଇ ସନ୍ତାନ ପରିତ୍ୟାଗ ଓ ସନ୍ତାନ ହତ୍ୟା ମଧ୍ୟ କରିଥାଏ । କିନ୍ତୁ ସାଧାରଣ ମାତୃହୃଦୟ ପିଲାମାନଙ୍କ ପାଇଁ ସର୍ବଦା ବ୍ୟାକୁଳ । ଏଣୁ ସୃଷ୍ଟି କାର୍ଯ୍ୟରେ ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀ-

ମାନଙ୍କର ଅଧିକ ଭୂମିକା ରହିଛି । ସେ ପ୍ରକୃତିର ପ୍ରତିନିଧିତ୍ୱ କରେ, ଏହି ପ୍ରାକୃତିକ ଜଗତକୁ ବର୍ଦ୍ଧିତ କରି ଗଢ଼ିତୋଳେ, ଚଳାଏ, ନଚାଏ, ହସାଏ ଓ କନ୍ଦାଏ । ସେ ମହାମାୟା, ଜଗଜ୍ଜନନୀ ଓ ଲୋକମାତା ଭାବରେ ବିବେଚିତ ।

ଶ୍ରୀ ଶୁକଦେବ କହିଲେ–"ରାଜା ! निଜର ଏଗାର ହଜାର ପୁତ୍ର ବାବାଜୀ ହୋଇଯିବା ପରେ ଦକ୍ଷଙ୍କ ମନରେ କ୍ରୋଧ ଜାତ ହେଲା । ଏହି କ୍ରୋଧ ଯୋଗୁ ସେ ନାରଦଙ୍କୁ ଅଭିଶାପ ଦେଇଥିଲେ । ନାରଦ ଭାବିଲେ—ରାଜାଙ୍କ ପାଖକୁ ଆସି ଖାଲି ହାତରେ ଫେରିଯାଇ ନାହିଁ, କିଛି ନା କିଛି ନେଇ ଆସିଛି । ସାଧୁମାନଙ୍କୁ ଶ୍ରଦ୍ଧାରେ ଯିଏ ଯାହା କିଛି ପ୍ରଦାନ କରେ ତାକୁ ସେ ଶ୍ରଦ୍ଧା ସହକାରେ ଗ୍ରହଣ କରିବା ଉଚିତ । ଏହିପରି ଭାବି ଅଭିଶାପକୁ ଶିରୋଧାର୍ଯ୍ୟ କରି ନାରଦ ସେଠାରୁ ଚାଲିଗଲେ । ଦକ୍ଷ ଶୋକସାଗରରେ ପଡ଼ି ଘାଣ୍ଟି ହେବାକୁ ଲାଗିଲେ । ସବୁବେଳେ ଉଦାସ ମନରେ ବସି ରହିଲେ । ତାଙ୍କୁ ସମସ୍ତ ସଂସାର ଶୂନ୍ୟ ଲାଗିଲା । ଏହି ସମୟରେ ହଂସ ଉପରେ ବସି ବ୍ରହ୍ମା ଆସି ଦକ୍ଷଙ୍କ ନିକଟରେ ପହଞ୍ଚିଲେ । ବ୍ରହ୍ମା ଆସିବାରୁ ପ୍ରଜାପତି ଦକ୍ଷ ତାଙ୍କୁ ଆଦର ସତ୍କାର କଲେ, ନିୟମାନୁସାରେ ପୂଜା ପ୍ରଦାନ କରି ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ଦକ୍ଷଙ୍କ ପୂଜାକୁ ଗ୍ରହଣ କରି ବ୍ରହ୍ମା ପଚାରିଲେ—"ଦକ୍ଷ ! ତୁମେ ଏହିପରି ଭାଙ୍ଗି ପଡ଼ିଛ କାହିଁକି ?"

ସ୍ଥିର ସ୍ୱରରେ ଦକ୍ଷ କହିଲେ—"କ'ଣ କହିବି ମହାରାଜ ! ବଡ଼ ଦୁଃଖର କଥା । ସେହି କଳିଆ ନାରଦ କାହିଁକି ମୋ ପଛେ ପଛେ ଗୋଡ଼ାଇଛି ମୁଁ ଜାଣେନାହିଁ । ଜଣା ନାହିଁ ସେ କେଉଁ ଜନ୍ମର ଶତ୍ରୁତାର ପ୍ରତିଶୋଧ ନେଉଛି । ପ୍ରଥମେ ସେ ମୋର ଦଶହଜାର ହର୍ଯ୍ୟଶ୍ୱ ନାମକ ପୁତ୍ରମାନଙ୍କୁ ଓଲଟା ପାଠ ପଢ଼ାଇ ବାବାଜୀ କରିଦେଲା, ଯେତେବେଳେ ମୁଁ ଏକ ହଜାର ଶବଲାଶ୍ୱ ନାମରେ ପୁତ୍ର ଜନ୍ମକଲି ସେମାନଙ୍କୁ ମଧ୍ୟ ସେ ସେହି ରାସ୍ତା ଦେଖାଇ ଦେଲା । ଆପଣ ଏବେ କୁହନ୍ତୁ ମୁଁ କିପରି ସୃଷ୍ଟି ବୃଦ୍ଧି କରିବି ? ମୋର ଆପଣଙ୍କ ନିକଟରେ ଏତିକି ପ୍ରାର୍ଥନା ଅନ୍ୟ କୌଣସି ଯୋଗ୍ୟ ପୁରୁଷକୁ ପ୍ରଜାପତି ଭାବରେ ଆପଣ ନିଯୁକ୍ତି ପ୍ରଦାନ କରନ୍ତୁ । ମୁଁ ସୃଷ୍ଟି ବଢ଼ାଇବା ନିମନ୍ତେ ସମ୍ପୂର୍ଣ୍ଣ ଅସମର୍ଥ । ମୋର ଧର୍ମପତ୍ନୀ ଅତି ଉତ୍ତମ ହେଲେ ସେ କ'ଣ କରିବ, ସେହି କଳିଆ ନାରଦ ତ ମୋ ପଛେ ପଛେ ଲାଗିରହିଛି ।"

ବ୍ରହ୍ମା ଦକ୍ଷଙ୍କର ଏହି କଥାଶୁଣି ପ୍ରେମ ଭାବରେ ବୁଝାଇ କହିଲେ—"ଦେଖ ବାବୁ ! ଉଚିତ କାମ କରିବାକୁ ଗଲେ ନାନା ବିଘ୍ନ ଜାତ ହୁଏ । ମୁଁ ଯେତେବେଳେ ପଦ୍ମମଧ୍ୟରୁ ଜାତହେଲି ସେ ସମୟରେ ମଧୁ ଓ କୈଟଭ ଅସୁର ଆସି ମୋତେ ଡରାଇଲେ, ଧମକାଇଲେ, ମୋ କାର୍ଯ୍ୟରେ ମଧ୍ୟ ବିଘ୍ନ ସୃଷ୍ଟି କଲେ । ସେତେବେଳେ

ମୁଁ ଭଗବାନଙ୍କ ଶରଣାପନ୍ନ ହେଲି । ଭଗବାନ ମୋ ଉପରେ ଦୟାକରି ସେମାନଙ୍କୁ ମାରିଦେଲେ । ବିଘ୍ନ ଚାଲିଗଲା । ମୁଁ ସୃଷ୍ଟି କାର୍ଯ୍ୟରେ ମନ ନିବେଶ କଲି । ଏଣୁ ଭାଇ, ବିଘ୍ନ ଆସିଲେ ଆଦୌ ବିଚଳିତ ନ ହୋଇ ଧୈର୍ଯ୍ୟ ଧରି କାର୍ଯ୍ୟ କରିବା ଉଚିତ ।''

ଦୁଃଖ ପ୍ରକାଶ କରି ଦକ୍ଷ କହିଲେ--''ମହାରାଜ ! ଧୈର୍ଯ୍ୟର ତ ପୁଣି ଗୋଟାଏ ସୀମା ଅଛି, କେତେ ଆଉ ଧୈର୍ଯ୍ୟ ଧରିବି । ବାରମ୍ବାର ମୋ କାମରେ ବିଘ୍ନଜାତ ହେବାରୁ ମୋ ଉତ୍ସାହ ଭାଙ୍ଗିଯାଉଛି । ଏଣୁ ଆଉ ସେହି କାର୍ଯ୍ୟ କରିବା ପାଇଁ ମୋ ମନରେ ସ୍ପୃହା ନାହିଁ । ଏଥିରେ ବୈରାଗ୍ୟ ଜାତହେବା ସ୍ୱାଭାବିକ ।''

ଏହାପରେ ଲୋକପିତାମହ ବ୍ରହ୍ମା କହିଲେ –''ଦେଖ ବାପା । ସଂସାରରେ ତିନି ପ୍ରକାରର ଲୋକ ଅଛନ୍ତି । ପ୍ରଥମ ପ୍ରକାର ଲୋକେ କୌଣସି କାର୍ଯ୍ୟ ଆରମ୍ଭ ପୂର୍ବରୁ ଚିନ୍ତାକରନ୍ତି, ଏହି କାର୍ଯ୍ୟକଲେ କୌଣସି ବିଘ୍ନ ଉପସ୍ଥିତ ହେବ, ଓ ଅସୁବିଧା ସୃଷ୍ଟି ହେବ, ଇତ୍ୟାଦି ଚିନ୍ତା କରି ଏପରି ଲୋକମାନେ ରହି ଯାଆନ୍ତି ; ବିଘ୍ନ ଭୟରେ କାର୍ଯ୍ୟ ଆରମ୍ଭ କରନ୍ତି ନାହିଁ । ଏମାନଙ୍କୁ ଅଧମ ପୁରୁଷବୋଲି କୁହାଯାଏ । ଦ୍ୱିତୀୟ ପ୍ରକାର ଲୋକେ ବଡ଼ ଉତ୍ସାହ ସହକାରେ କାର୍ଯ୍ୟ ଆରମ୍ଭ କରନ୍ତି । ବିଘ୍ନ ଉପସ୍ଥିତ-ହେଲେ ବିଚଳିତ ହୋଇପଡ଼ି କାର୍ଯ୍ୟ ତ୍ୟାଗକରି ଦିଅନ୍ତି । ଏମାନଙ୍କୁ ମଧ୍ୟମ ପୁରୁଷ ବୋଲି କୁହାଯାଏ । କିନ୍ତୁ ଯିଏ ଉତ୍ତମ ପୁରୁଷ ସେ ଯେତେ ବିଘ୍ନ ଆସିଲେ ମଧ୍ୟ ଆରମ୍ଭ କରିଥିବା କାର୍ଯ୍ୟକୁ ସମ୍ପୂର୍ଣ୍ଣ କରି ବିଶ୍ରାମ ଗ୍ରହଣ କରନ୍ତି । ଏମାନେ ଆଦୌ ନିରାଶ ହୁଅନ୍ତି ନାହିଁ । ତୁମେ ଭାଇ, ଉତ୍ତମ ପୁରୁଷମାନଙ୍କ ମଧ୍ୟରୁ ଜଣେ । କେବେହେଲେ ମନ ଦୁଃଖ କରନାହିଁ । ସାହସ ତ୍ୟାଗ କରନାହିଁ । ପୁନର୍ବାର ସୃଷ୍ଟି ବୃଦ୍ଧି ନିମନ୍ତେ ଯତ୍ନବାନ ହୁଅ । ଆଉ ଏଣିକି ପୁତ୍ର ଉତ୍ପନ୍ନ ନକରି କନ୍ୟା ଉତ୍ପନ୍ନ କର । ସେ ଯିନା ପୁଅମାନଙ୍କୁ ଭୁଲାଇ ନେଇଗଲା କିନ୍ତୁ ଝିଅମାନଙ୍କ ପାଖକୁ ସେ କେବେହେଲେ ଆସିବନାହିଁ । ସେମାନଙ୍କୁ କବଳକୁ ଆଣିବା ପାଇଁ ଚେଷ୍ଟାକଲେ ସେ ନିଜେ ଅସୁବିଧାରେ ପଡ଼ିଯିବ । ଝିଅମାନଙ୍କ ପାଖକୁ ନାରଦ କେବେହେଲେ ଆସିବେନାହିଁ । ଯଦି ସେମାନଙ୍କ ସହିତ କିଏ ବନ୍ଧନରେ ପଡ଼ିଯିବ ତେବେ ସେମାନେ ମିଶି ମନ ମିଳାଇ ଯୋଡ଼ି ହୋଇ ଯାଇ ପତିପତ୍ନୀ ହୋଇଯିବେ । ଏଣୁ ନାରଦ କ'ଣ କହିଲେ ମଧ୍ୟ ଏମାନେ କେବେହେଲେ ସନ୍ୟାସିନୀ ହୋଇଯିବେ ନାହିଁ । ତେଣୁ ଭାଇ ! ଏହି ଉପାୟ ହେଉଛି ଠିକ୍ । ପୁତ୍ରମାନଙ୍କ କଥା ଛାଡ଼ । ପୁତ୍ରମାନେ ବିବାହ କରିବା ନିମନ୍ତେ ପୂର୍ବରୁ ଆଶା ରଖନ୍ତି ନାହିଁ । ସେମାନେ ସିଂହ ଛୁଆପରି କୁଦାମାରନ୍ତି । ଦଶଦିଗକୁ ଚାହିଁ କେଉଁଆଡ଼େ ହେଲେ ପଳାଇ ଯିବେ ବୋଲି ଭାବୁଥାନ୍ତି । କିନ୍ତୁ ଯେତେବେଳେ ସେ ସ୍ତ୍ରୀରୂପୀ ଜଞ୍ଜିର ଭିତରେ ପଡ଼ିଯାଏ ସେତେବେଳେ ସିଂହ ଶୃଗାଳରେ ପରିଣତ ହୋଇଯାଏ । ସବୁକଥା ସେ ଭୁଲିଯାଏ । ନିଜକୁ ପରାଧୀନ ମନେକରି ଅନ୍ୟର ବଶ୍ୟତା

ସ୍ୱୀକାର କରେ ଏବଂ ସେହି ଜଞ୍ଜୀର ମଧ୍ୟରେ ରହି ତାର ମଧୁର ଶବ୍ଦରେ ମୋହିତ ହୋଇ ତାର ଇଙ୍ଗିତରେ ନୃତ୍ୟ କରିବାକୁ ଲାଗେ । ଏଣୁ ଭାଇ ସଂସାର ବନ୍ଧନକୁ ବଢ଼ାଇବାପାଇଁ ହେଲେ ଶିକୁଳୀ ତିଆରି କର । ତ୍ରୁଟିବାକୁ ଚେଷ୍ଟାକର. ମୋର ପ୍ରିୟ ପୁତ୍ର ! ଏମିତି ସୁନ୍ଦରୀକନ୍ୟା ଉତ୍ପନ୍ନ କର ଯେପରି କ ·ଲୋକେ ଆସି ତୁମ ପାଖରେ ଅନୁନୟ ବିନୟ ହେବେ ।"

ଦକ୍ଷ ବର୍ତ୍ତମାନ ଆଉ କ'ଣ କରିବେ ? ଗୁରୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ ଭାବି ମୁଣ୍ଡ ହଲାଇଲେ । ସେ ସ୍ୱପତ୍ନୀ ଅଶ୍ୱିନୀ ଉଦରରୁ ଷାଠିଏ କନ୍ୟା ଉତ୍ପନ୍ନ-କଲେ । ସେହି କନ୍ୟାମାନଙ୍କର ଆଖି ପଦ୍ମଫୁଲ ପରି ଥିଲା । ଶରୀର କାନ୍ତି ସୁବର୍ଣ୍ଣ ସମାନ । ସେମାନଙ୍କ ଅଙ୍ଗରୁ ଦିବ୍ୟ ସୁଗନ୍ଧ ବାହାରୁଥିଲା । ଏହି କନ୍ୟାଗଣ ରତ୍ନ ସଦୃଶ ଥିଲେ । ସେମାନଙ୍କ ଅନବଦ୍ୟ ସୌନ୍ଦର୍ଯ୍ୟକୁ ଯିଏ ଥରେ ମାତ୍ର ଅବଲୋକନ କରିବ, ସେ ନିଶ୍ଚୟ ବିମୋହିତ ହୋଇଯିବ । କନ୍ୟାମାନେ ବିବାହଯୋଗ୍ୟା ହୋଇ ସାରିବା ପରେ ଦକ୍ଷ ସେମାନଙ୍କୁ ଉପଯୁକ୍ତ ପାତ୍ର ଦେଖି ବିବାହ କରିଦେଲେ । ସେହି ସମୟରେ ବିବାହ କରିବା ନିମନ୍ତେ କମ୍ ଲୋକ ଥିଲେ । ଏଣୁ ସୃଷ୍ଟି ବୃଦ୍ଧି ନିମନ୍ତେ ପ୍ରତ୍ୟେକ ବର ବହୁତ କନ୍ୟାଙ୍କୁ ବିବାହ କରିଥିଲେ । ଫଳରେ ଦକ୍ଷ ତାଙ୍କର ଷାଠିଏ କନ୍ୟାଙ୍କ ମଧ୍ୟରୁ ୨୭ ଜଣଙ୍କୁ ଚନ୍ଦ୍ରଙ୍କ ସହ, ୧୦ ଜଣଙ୍କୁ ଧର୍ମ ଦେବତାଙ୍କ ସହ, ୧୩ ଜଣଙ୍କୁ ଭଗବାନ କଶ୍ୟପଙ୍କ ସହ ଏହିପରି ୫୦ ଜଣ କନ୍ୟାଙ୍କର ବିବାହ କରିଥିଲେ । ଭୂତ, ଅଙ୍ଗିରା ଏବଂ କୃଶାଶ୍ୱ ଏହି ତିନିଜଣଙ୍କୁ ପ୍ରତ୍ୟେକ୍ ଦୁଇଟି ଲେଖାଏଁ ବିବାହ ଦେଇଥିଲେ । ସର୍ବମୋଟ ହେଲା ୫୬ । ବାକି ଆଉ ଯେଉଁ ୪ଟି କନ୍ୟା ରହିଲେ ସେମାନଙ୍କୁ ତାର୍କ୍ଷ୍ୟ ମୁନିଙ୍କୁ ପ୍ରଦାନ କରିଦେଲେ । ଏହିପରି ଭାବରେ ଦକ୍ଷ ତାଙ୍କର ୬୦ଟି କନ୍ୟାଙ୍କୁ ବିବାହ ଦେଇଥିଲେ । ବର୍ତ୍ତମାନ ଦକ୍ଷଙ୍କର ବାଣ ଲକ୍ଷ୍ୟସ୍ଥଳରେ ଯାଇ ପହଞ୍ଚିଲା । ସେ ସଫଳତା ଲାଭକଲେ । ଏହି ୬୦ଟି କନ୍ୟାଙ୍କର ବଂଶ ଏପରି ଭାବରେ ବୃଦ୍ଧି ଘଟିଲା ଯେ, ଏହି ମନ୍ୱନ୍ତରର ସମସ୍ତ ପ୍ରଜା ଏହି କନ୍ୟାମାନଙ୍କର ସନ୍ତାନମାନଙ୍କଠାରୁ ଉତ୍ପନ୍ନ ହୋଇ ଚାରିଆଡ଼େ ପୂରିରହିଲେ । ପୁତ୍ର, ପୌତ୍ର, ପ୍ରପୌତ୍ର ଦ୍ୱାରା ଏହି ସମ୍ପୂର୍ଣ୍ଣ ତ୍ରୈଲୋକ୍ୟ ପୂର୍ଣ୍ଣ ହୋଇଗଲା ।

ଶୁକଦେବ କହିଲେ—"ରାଜା ! ଏହି ୬୦ କନ୍ୟାଙ୍କର ବଂଶ ଏତେ ବଢ଼ିଗଲା ଯେ, ସମସ୍ତଙ୍କର ବର୍ଣ୍ଣନା କଲେ କଳ୍ପ ଶେଷ ହୋଇଗଲେ ମଧ୍ୟ ସରିବ ନାହିଁ । ବର୍ତ୍ତମାନ ମୁଁ ଖୁବ୍ ସଂକ୍ଷେପ ଭାବରେ କେବଳ ସଙ୍କେତ ପ୍ରଦାନ କରି ଏହି ଷାଠିଏଟି ବଂଶର ବର୍ଣ୍ଣନା କରିବି । ତୁମେ ମନଦେଇ ତାହା ଶୁଣ । କାହାର ପୁତ୍ର କିଏ ଏହା ଆମର ଜାଣିବା ଦରକାର ନାହିଁ । ଏଥିରେ କ'ଣ ଲାଭ ? ଏମାନଙ୍କ ନାମକୀର୍ତ୍ତନରେ ବଡ଼ ମାହାତ୍ମ୍ୟ ରହିଛି ।"

—ଛପ୍‌ପୟ—

ଭାନୁ, ମୁହୂର୍ତ୍ତା କକୁପ୍ , ଜାମି, ବସୁ, ଲମ୍ବା, ସାଧ୍ୟା ।
ମରୁତ୍ୱତୀ, ସଂକଳ୍ପ, ଧର୍ମ କୀ ଯେ ସବ ଭାର୍ଯ୍ୟା ॥
ସ୍ୱଧା ସତୀ ଯେ ନାରୀ ଅଙ୍ଗିର୍ ମୁନି କୀ ପ୍ୟାରୀ ।
ବିନତା, କଦ୍ରୁ, ଔର ପତଙ୍ଗୀ ଯାମିନି ନାରୀ ॥
ତାର୍କ୍ଷ୍ୟ ବଧୂ ଯେ ଚ୍ୟାର ହୈଂ, ଧିଷଣା, ଅର୍ଚୀ ଗୁଣବତୀ ।
ପତ୍ନୀ କହୀଂ କୃଶାଶ୍ୱ କୀ, ସବଈ ସୁନ୍ଦର ସବ ସତୀ ॥



## ଦକ୍ଷ କନ୍ୟାମାନଙ୍କର ବଂଶ ବର୍ଣ୍ଣନ

ନାମଧେୟାନ୍ୟମୂଷାଂ ତ୍ୱଂ ସାପତ୍ୟାନାଂ ଚ ମେ ଶୃଣୁ ।
ଯାସାଂ ପ୍ରସୂତି ପ୍ରସବୈର୍ଲୋକା ଆପୂରିତାସ୍ତ୍ରୟଃ ॥

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୬ମ ଅଧ୍ୟାୟ ॥ ୩ୟ ଶ୍ଲୋକ ]

### ଛପ୍ପୟ

ଅବ କଶ୍ୟପ କୀ ନାରି ତ୍ରୟୋଦଶ କୀ ସଂତତି ସୁନି ।
ଅଦିତୀ, ଦିତି, ଦନୁ, ଇଲା ଅରିଷ୍ଟା ସୁରସା ଅରୁ ମୁନି ॥
କାଷ୍ଠା, ସରମା, ସୁରଭି, କହୀ ତିମି, କ୍ରୋଧବଶା ପୁନି ।
ତାମ୍ରା ପତ୍ନୀ ପାଇ ଭୟେ ଅତି ଆନନ୍ଦିତ ମୁନି ॥
ଲୋକମାତ ୟେ ଜଗତ୍ କୀ, ସବ ଇନକୀ ସନ୍ତାନ ହୈଂ ।
ଦେବାସୁର ପଶୁ ପକ୍ଷି ନର, ଲଘୁ ବଡ଼, କ୍ଷୁଦ୍ର ମହାନ୍ ହୈଂ ॥

ଋଷି ବଂଶ ଶ୍ରବଣ କରିବାର ପ୍ରଥା ବହୁ ସନାତନ ପ୍ରଥା । ଆମର ଏଠାରେ ଏକ ଶ୍ରାବଣୀ ପର୍ବ ହୁଏ । ଏହି ପର୍ବରେ ଋଷି ବଂଶର କୀର୍ତ୍ତନ, ଋଷିମାନଙ୍କ ବଂଶ କଥା ଶ୍ରବଣ କରିବାର ମାହାତ୍ମ୍ୟ ରହିଛି । ଏହି ବଂଶ କଥା ଶ୍ରବଣ କରିବା ଦ୍ୱାରା ବିଭିନ୍ନ ଭାବକୁ ଏକାଠି କରି ଏକତା ରକ୍ଷା କରିବା ଦିଗକୁ ଟାଣିନିଏ । ସଂକୁଚିତ ପରିଧି ଠାରୁ ଅଲଗା କରି ବିଶାଳ ବଂଶର ମାହାତ୍ମ୍ୟ ପ୍ରକଟିତ ହୁଏ । ପ୍ରାଣୀମାନେ ନିଜର ଆତ୍ମୀୟଜନଙ୍କୁ ଅନେକ ଭାଗରେ ବିଭକ୍ତ କରି ସଙ୍କୁଚିତ କରି ଦିଅନ୍ତି । ଆମେ ବ୍ରାହ୍ମଣ, ଏମାନେ ସମସ୍ତେ ଆମଠାରୁ ନୀଚ । ଆମେ ଦ୍ୱିଜ ଦ୍ୱିଜେତର ଲୋକମାନେ ଅଧମ । ଆମେ ମଣିଷ, ମଣିଷ ବ୍ୟତୀତ ଅନ୍ୟ ଜୀବମାନେ ଅଧମ । ଆମେ ବୁଦ୍ଧିଜୀବୀ ପୁରୁଷ, ଯେତେସବୁ ବୁଦ୍ଧିହୀନ ଲୋକ ଅଛନ୍ତି ସେମାନେ ସମସ୍ତେ ଅଜୀବିକାର ସାଧନ ଅଟନ୍ତି । ଏହିପରି ନାନା ପ୍ରକାର ଭେଦ ଭାବ ଦ୍ୱାରା ଅନ୍ୟ ଜୀବକୁ ଶୋଷଣ କରିବାକୁ, ତାକୁ ନୀଚ ଭାବିବା ପାଇଁ ସର୍ବଦା ଉଦ୍ୟତ ହୁଏ । ଋଷି ବଂଶର କୀର୍ତ୍ତନ ଏହି କ୍ଷୁଦ୍ର ମନୋଭାବକୁ ଦୂର କରିଥାଏ, ଏହା ଆମକୁ ନିର୍ଦ୍ଦେଶ

ହଏ ଯେ, ମନୁଷ୍ୟ, ପଶୁ, ପକ୍ଷୀ, ସିଂହ, ବ୍ୟାଘ୍ର, ସର୍ପ, ଦେବତା, ଅସୁର ସମସ୍ତେ ଏକ କଶ୍ୟପ ମୁନିଙ୍କର ସନ୍ତାନ ଅଟନ୍ତି । ଆମ ସମସ୍ତଙ୍କର ପୂର୍ବରୁ ଜଣେ ପିତାଥିଲେ, ବିଭିନ୍ନ ପ୍ରକାର ମା'ଙ୍କ ଯୋଗୁ ପୃଥକ ପୃଥକ ଜାତି, ପୃଥକ ବର୍ଗ ହୋଇ ଯାଇଅଛୁ । ଏଣୁ ଋଷିମାନଙ୍କର ବଂଶ କଥା ସର୍ବଦା ଶ୍ରବଣର ପରମ ମାହାତ୍ମ୍ୟ ବତେଇ ହଆଯାଇଥାଏ ।

ଶ୍ରୀ ଶୁକଦେବ କହିଲେ—"ରାଜା ! ବର୍ତ୍ତମାନ ମୁଁ ପ୍ରଜାପତି ଦକ୍ଷଙ୍କ ୬୦ କନ୍ୟାମାନଙ୍କର ବଂଶ ବର୍ଣ୍ଣନା କରୁଅଛି ଶୁଣନ୍ତୁ, ଦକ୍ଷ ତାଙ୍କର ୬୦ଟି କନ୍ୟାମାନଙ୍କ ମଧ୍ୟରୁ ଦଶ ଜଣଙ୍କୁ ଧର୍ମକୁ ଦେଇଥିଲେ । ସେମାନଙ୍କର ନାମ ସବୁ ହେଲା, ଭାନୁ, ଲମ୍ବା, କକୁପ, ଜାମି, ବିଶ୍ୱା, ସାଧ୍ୟା, ମରୁତ୍ୱତୀ, ବସୁ, ମୁହୂର୍ତ୍ତା, ଏବଂ ସଙ୍କଳ୍ପା । ସେମାନଙ୍କର ସବୁ ଯେଉଁ ସନ୍ତାନ ହେଲେ, ସେମାନଙ୍କର ନାମ ମଧ୍ୟ ଶୁଣ ।"

ଧର୍ମଙ୍କର ପ୍ରଥମ ପତ୍ନୀ ଭାନୁଙ୍କର ପୁତ୍ରମାନେ ହେଲେ ଦେବଋଷଭ ଓ ଇନ୍ଦ୍ରସେନ । ଦ୍ୱିତୀୟ ପତ୍ନୀ ଲମ୍ବାଙ୍କର ପୁତ୍ର ଥିଲେ ବିଦ୍ୟୋତ, ତାଙ୍କଠାରୁ ସ୍ତନୟିତ୍ନୁ ଜନ୍ମ ହୋଇଥିଲେ । ତୃତୀୟ ପତ୍ନୀ କକୁପଙ୍କର ପୁତ୍ର ନାମ ସଙ୍କଟ ଓ ସଙ୍କଟଙ୍କ ପୁତ୍ର ହେଲେ କୀକଟ । କୀକଟଙ୍କର ଅସଂଖ୍ୟ ପୁତ୍ର ଜାତ ହୋଇଥିଲେ । ଏମାନେ ଥିଲେ ସମସ୍ତେ ଦୁର୍ଗାଙ୍କ ଅଭିମାନୀ ଦେବତା । ଚତୁର୍ଥ ପତ୍ନୀ ଜାମୀଙ୍କର ସ୍ୱର୍ଗନାମରେ ପୁତ୍ର ଜନ୍ମ ହୋଇଥିଲେ ଏବଂ ସ୍ୱର୍ଗଙ୍କ ପୁତ୍ର ହେଉଛନ୍ତି ନନ୍ଦି । ପଞ୍ଚମ ପତ୍ନୀ ବିଶ୍ୱାଙ୍କର ବିଶ୍ୱଦେବ ନାମରେ ଦେବତା ପୁତ୍ର ଜାତ ହୋଇଥିଲେ । ବିଶ୍ୱଦେବଙ୍କ ବଂଶ ଆଉ ବଢ଼ି ନ ଥିଲା । ସେ ନିଃସନ୍ତାନ ଥିଲେ । ଷଷ୍ଠ ପତ୍ନୀ ସାଧ୍ୟାଙ୍କଠାରୁ ସାଧ୍ୟଗଣ ନାମକ ଦେବପୁତ୍ର ଜାତ ହୋଇଥିଲେ । ତାଙ୍କଠାରୁ ଅର୍ଥସିଦ୍ଧି ନାମରେ ପୁତ୍ର ଜନ୍ମ ହୋଇଥିଲେ । ସପ୍ତମ ପତ୍ନୀ ମରୁତ୍ୱତୀଙ୍କଠାରୁ ମାରୁତ୍ୱାନ ଓ ଜୟନ୍ତ ନାମରେ ଦୁଇପୁତ୍ର ଜନ୍ମ ହୋଇଥିଲେ । ଏହି ଜୟନ୍ତଙ୍କୁ ଉପେନ୍ଦ୍ର କୁହାଯାଏ । ସେ ଭଗବାନ ବିଷ୍ଣୁଙ୍କ ଅବତାର । ଅଷ୍ଟମ ପତ୍ନୀ ମୁହୂର୍ତ୍ତାଙ୍କଠାରୁ ମୁହୂର୍ତ୍ତ ନାମରେ ଅଭିମାନୀ ଦେବତା ଜାତ ହୋଇଥିଲେ । ଯିଏ କି ପ୍ରାଣୀମାନଙ୍କୁ ସେମାନଙ୍କର କର୍ମ ଅନୁସାରେ ଯଥାଯୋଗ୍ୟ ଫଳ ପ୍ରଦାନ କରିଥାଆନ୍ତି । ଧର୍ମଙ୍କର ନବମ ପତ୍ନୀ ସଙ୍କଳ୍ପାଙ୍କଠାରୁ ସଙ୍କଳ୍ପ ନାମକ ପୁତ୍ର ହୋଇଥିଲେ । ଏହି ସଙ୍କଳ୍ପଙ୍କ ପୁତ୍ର କାମଦେବ ଅଟନ୍ତି । ଯିଏ ସମସ୍ତ ପ୍ରାଣୀମାନଙ୍କ ଶରୀରରେ ଅଶରୀରୀ ଭାବରେ ପୀଡ଼ା ପ୍ରଦାନ କରନ୍ତି । କାମର ଉତ୍ପତ୍ତି ସଙ୍କଳ୍ପଙ୍କଠାରୁ ହୋଇଥିଲା । ଅଧ୍ୟବସାୟ ତାଙ୍କର ସହକାରୀ ଅଟନ୍ତି । ସେ ମହା ବଳବାନ୍ ଓ ଦୁର୍ଦ୍ଧର୍ଷ ଅଟନ୍ତି । ଦଶମ ପତ୍ନୀଙ୍କ ଉଦରରୁ ଦ୍ରୋଣ, ପ୍ରାଣ, ଧ୍ରୁବ, ଅର୍କ, ଅଗ୍ନି, ବସୁ ଓ ବିଭାବସୁ ନାମରେ ଅଷ୍ଟବସୁ ଜାତ ହୋଇଥିଲେ । ରାଜା ! ଧର୍ମଙ୍କର ଏହି ଦଶ ପତ୍ନୀଙ୍କ ଉଦରରୁ ଯେଉଁ

ସବୁ ସନ୍ତାନ ଜାତ ହୋଇଥିଲେ ସେମାନେ ସମସ୍ତେ ଦେବଗଣ ଅଟନ୍ତି । ସମସ୍ତଙ୍କ ଶରୀର ଦିବ୍ୟ ଓ ସୁନ୍ଦର । ଏମାନେ ମୃତ୍ୟୁଲୋକଙ୍କୁ ସ୍ଥୂଳ ଆଖିରେ ଦେଖାଯିବା ସ୍ଥୂଳ ପ୍ରାଣୀ ନୁହଁନ୍ତି । ଏମାନଙ୍କ ଅସ୍ତିତ୍ୱ ନେଇ ଶାସ୍ତ୍ରୀୟ ପ୍ରମାଣ ରହିଛି ଓ ଏମାନେ ଦିବ୍ୟ ଦୃଷ୍ଟିରେ ଦେଖା ଦିଅନ୍ତି ।

ଅଷ୍ଟବସୁଙ୍କ ମଧ୍ୟରେ ଦ୍ରୋଣ ନାମରେ ଯେଉଁ ପ୍ରଥମ ବସୁ ଥିଲେ ତାଙ୍କର ବିବାହ ଅଭିମତି (ଇଚ୍ଛା) ନାମକ ପତ୍ନୀ ସହ ହୋଇଥିଲା । ଯାହାଙ୍କଠାରୁ ହର୍ଷ, ଶୋକ, ଭୟ ଆଦି ପୁତ୍ରମାନେ ଜାତ ହୋଇଥିଲେ । ଏହି ଦ୍ରୋଣ ବସୁ ଦ୍ୱାପର ଯୁଗରେ ଆସି ବ୍ରଜରେ ଗୋପରାଜ ନନ୍ଦ ନାମରେ ଜନ୍ମ ହୋଇଥିଲେ, ଯାହାଙ୍କର ଆତ୍ମଜ ଭାବରେ ଆନନ୍ଦକନ୍ଦ ବୃନ୍ଦାବନଚନ୍ଦ୍ର, ନନ୍ଦନନ୍ଦନ ଶ୍ରୀକୃଷ୍ଣଚନ୍ଦ୍ର, ଆବିର୍ଭାବ ହୋଇଥିଲେ । ଦ୍ୱିତୀୟ ପ୍ରାଣ ନାମକ ବସୁଙ୍କର ଊର୍ଜସ୍ୱତୀ ନାମରେ ଭାର୍ଯ୍ୟାଙ୍କ ସହ ବିବାହ ହୋଇଥିଲା ଓ ତାଙ୍କଠାରୁ ଆୟୁ ଏବଂ ପୁରୋଜବ ନାମଙ୍କ ପୁତ୍ର ଜାତ ହୋଇଥିଲେ । ଚତୁର୍ଥ ଅର୍କ ନାମକ ବସୁଙ୍କର ବାସନା ନାମକ ପତ୍ନୀଙ୍କ ଠାରୁ ତପ ଆଦି ବହୁ ପୁତ୍ର ଜାତ ହୋଇ-ଥିଲେ । ପଞ୍ଚମ ଅଗ୍ନି ନାମକ ବସୁଙ୍କଧାରା ପତ୍ନୀଙ୍କ ଠାରୁ ଦ୍ରବିଣ ଆଦି କେତେକ ପୁତ୍ର ଜନ୍ମ ହୋଇଥିଲେ । ଦେବତାମାନଙ୍କର ସେନାପତି ଷଡ଼ାନନ ସ୍କନ୍ଦ ମଧ୍ୟ ଅଗ୍ନିଙ୍କର ପୁତ୍ର ଅଟନ୍ତି ଯାହାଙ୍କୁ କି କୃତ୍ତିକାଙ୍କ ପୁତ୍ର ଭାବରେ କାର୍ତ୍ତିକେୟ ବୋଲି କୁହାଯାଏ । ଏହାଙ୍କର ବର୍ଣ୍ଣନା ପ୍ରସଙ୍ଗ କ୍ରମରେ ହେବ । ଏହି ସ୍କନ୍ଦଙ୍କଠାରୁ ବିଶାଖ ଆଦି ପୁତ୍ର ଜନ୍ମ ହୋଇଥିଲେ । ଷଷ୍ଠ ଦୋଷ ନାମକ ବସୁଙ୍କ ଶର୍ବରୀ ନାମ୍ନୀ ଭାର୍ଯ୍ୟାଙ୍କଠାରୁ ଶିଶୁମାର ଚକ୍ର ଜାତ ହୋଇଥିଲେ । ଯିଏ କି ଭଗବାନଙ୍କ ଅଂଶାବତାର ଅଟନ୍ତି । ସପ୍ତମବସୁ ଯାହାଙ୍କ ନାମ ମଧ ବସୁ ତାଙ୍କର ଅଙ୍ଗିରସୀ ନାମକ ଭାର୍ଯ୍ୟାଠାରୁ ଦେବତାମାନଙ୍କର ବଢ଼େଇ ଶିଳ୍ପକାରଙ୍କ ଅଧିପତି ବିଶ୍ୱକର୍ମା ଜନ୍ମ ହୋଇଥିଲେ । ତାଙ୍କର ପୁତ୍ର ଚାକ୍ଷୁଷ ମନୁ ଏବଂ ମନୁଠାରୁ ବିଶ୍ୱଦେବା ଓ ସାଧ୍ୟଗଣ ଆଦି ଦେବତାମାନେ ଜନ୍ମଲାଭ କରିଥିଲେ । ଅଷ୍ଟମବସୁ ବିଭାବସୁଙ୍କର ଊଷା ନାମ୍ନୀ ପତ୍ନୀଙ୍କଠାରୁ ବ୍ୟୁଷ୍ଟ, ରୋଚିଷ ଏବଂ ଆତପ ଏହି ତିନିପୁତ୍ର ଜାତ ହୋଇଥିଲେ । ଏମାନଙ୍କ ମଧ୍ୟରୁ ଆତପଙ୍କଠାରୁ ପାଞ୍ଚପ୍ରହରରେ ପାଞ୍ଚ ଅଭିମାନୀ ଦେବତା ଜାତ ହୋଇଥିଲେ । ଏମାନେ ପ୍ରହର ବିଭାଗୀକରଣରେ ଜୀବ କର୍ମରେ ତତ୍ପର ରହନ୍ତି । ଏମାନେ ସମସ୍ତେ ଧର୍ମଙ୍କ ପତ୍ନୀମାନଙ୍କର ବଂଶ, ବର୍ତ୍ତମାନ ଦକ୍ଷଙ୍କ ଅନ୍ୟ କନ୍ୟାମାନଙ୍କର ବଂଶ କଥା ଶୁଣନ୍ତୁ ।

ପ୍ରଜାପତି ଦକ୍ଷଙ୍କର ସରୂପା ନାମରେ ଗୋଟିଏ କନ୍ୟା ଥିଲା । ସେ ଭୂତଙ୍କୁ ବିବାହ କରିଥିଲେ ତାଙ୍କଠାରୁ କୋଟିଏ ରୁଦ୍ର ଉତ୍ପତ୍ତି ହୋଇଥିଲେ । ଯେଉଁ ରୁଦ୍ର-ମାନଙ୍କ ମଧ୍ୟରୁ ଏକାଦଶ ରୁଦ୍ରଙ୍କୁ ପ୍ରଧାନ ଭାବରେ ଗ୍ରହଣ କରାଯାଏ । ଏମାନେ-

ହେଲେ, ରୈବତ, ଅଜ, ଭବ, ଭୀମ, ବାମ, ଉଗ୍ର, ବୃଷାକପି, ଅଜୈକ ପାଦ, ଅହିର୍ବୁଧ୍ନ୍ୟ, ବହୁରୂପ ଓ ମହାନ୍ । ଭୂତଙ୍କର ଦ୍ୱିତୀୟ ପତ୍ନୀଙ୍କଠାରୁ ଭୟଙ୍କର ଭୂତପ୍ରେତ, ବିନାୟକ ଆଦିଙ୍କର ଜନ୍ମ ହୋଇଥିଲା, ଯାହାଙ୍କୁ କି ରୁଦ୍ର ଦୂତ ବୋଲି କୁହାଯାଏ ।

ଦକ୍ଷଙ୍କର ଦୁଇ କନ୍ୟା ସତୀ ଓ ସ୍ୱଧା ଅଙ୍ଗିରା ନାମକ ମହର୍ଷିଙ୍କୁ ବିବାହ କରିଥିଲେ । ତାଙ୍କ ମଧ୍ୟରୁ ସ୍ୱଧା ପିତୃଗଣଙ୍କୁ ଉତ୍ପନ୍ନ କରିଥିଲେ ଏବଂ ଦ୍ୱିତୀୟ ସତୀ ଅଥର୍ବାଙ୍ଗିରସ ନାମକ ବେଦଙ୍କୁ ଜନ୍ମ ଦେଇଥିଲେ । ଏହିପରି ଦକ୍ଷ ପ୍ରଜାପତି ତାଙ୍କର ଦୁଇଟି କନ୍ୟାଙ୍କୁ କୃଶାଶ୍ୱ ନାମକ ଋଷିଙ୍କୁ ଦେଇଥିଲେ । ସେମାନଙ୍କ ମଧ୍ୟରୁ ପ୍ରଥମ ପତ୍ନୀ ଅର୍ଚ୍ଚିଙ୍କଠାରୁ ଧୂମ୍ରକେଶ ନାମରେ ପୁତ୍ର ଜାତ ହୋଇଥିଲେ ଓ ଦ୍ୱିତୀୟ ପତ୍ନୀ ଧିଷଣାଙ୍କଠାରୁ ବେଦଶିରା ଦେବଲ, ବୟୁନ ଏବଂ ମନୁ ନାମକ ମୁନିମାନେ ଜାତ ହୋଇଥିଲେ । ଏହି ଚାରିପୁତ୍ରଙ୍କଠାରୁ ଋଷିବଂଶର ଉତ୍ପତ୍ତି ହୋଇଥିଲା ।

ଦକ୍ଷ ପ୍ରଜାପତିଙ୍କର ବିନତା, କଦ୍ରୁ, ପତଙ୍ଗୀ ଏବଂ ଯାମିନୀ ଏହି ଚାରିକନ୍ୟା-ମାନଙ୍କର ବିବାହ ତାର୍କ୍ଷ୍ୟ ମୁନିଙ୍କ ସହ ହୋଇଥିଲା । ମୁନି ଚିନ୍ତାକଲେ ଯେ, ଦେବତା ଋଷି, ଭୂତ, ପ୍ରେତ, ପିଶାଚ, ପିତର ତଥା ମନୁଷ୍ୟ ଆଦିଙ୍କୁ ତ ସମସ୍ତେ ଜନ୍ମଦେଲେ । ମୁଁ ପଶୁ ପକ୍ଷୀମାନଙ୍କୁ ସୃଷ୍ଟି କରିବି । ଏଣୁ ବିନତାଙ୍କଠାରୁ ପକ୍ଷୀମାନଙ୍କର ରାଜା ଗରୁଡ଼ ଯିଏ କି ଭଗବାନଙ୍କ ବାହନ ହେଲେ ତଥା ସୂର୍ଯ୍ୟଙ୍କ ସାରଥୀ ଅରୁଣଙ୍କୁ ଉତ୍ପନ୍ନ କରିଥିଲେ । କଦ୍ରୁ ନାଗଙ୍କୁ ଜନ୍ମଦେଲେ । ପତଙ୍ଗୀ ସମସ୍ତ ପ୍ରକାର ପକ୍ଷୀମାନଙ୍କୁ ତଥା ଶଲଭ ପତଙ୍ଗ ଆଦି ଜୀବ ଜନ୍ତୁମାନଙ୍କୁ ଜନ୍ମକଲେ ।

ଏହାପରେ ଶୌନକ ପଚାରିଲେ—"ସୂତଜୀ ! ଏହି ବିନତା, କଦ୍ରୁ ପତଙ୍ଗୀ ତଥା ଯାମିନୀ ଯାହାଙ୍କୁ ଦକ୍ଷ ପ୍ରଜାପତିଙ୍କ କନ୍ୟା ଓ ତାର୍କ୍ଷ୍ୟ ମୁନିଙ୍କର ପତ୍ନୀ ବୋଲି କୁହା-ଯାଉଅଛି ଏମାନେ ମଣିଷ ପରି ଥିଲେ ନା କଦ୍ରୁ ସର୍ପିଣୀ ଓ ପତଙ୍ଗୀ ପକ୍ଷୀ ଭଳି ଥିଲେ । ଯଦି ସେମାନେ ମଣିଷ ଭଳି ଥିଲେ ତେବେ ସେମାନଙ୍କଠାରୁ ପକ୍ଷୀମାନଙ୍କର ଉତ୍ପତ୍ତି କିପରି ହେଲା ?"

ଏହା ଶୁଣି ସୂତ ହସିକରି କହିଲେ- "ମହାରାଜ ! ଆପଣ ଏଭଳି ପ୍ରଶ୍ନ ପଚାରୁଛନ୍ତି । ଭଗବାନ ! ଏମାନେ ସବୁ ମାତା । ଏମାନେ ସର୍ବସାମର୍ଥ ସେମାନେ ଯେପରି ରୂପ ଚାହାନ୍ତି ସେପରି ରୂପ ତିଆରି କରିପାରନ୍ତି । ଏମାନେ ଦକ୍ଷପ୍ରଜାପତିଙ୍କର କନ୍ୟା ଏଣୁ ଏମାନଙ୍କର ମାନବୀୟ ରୂପ, କିନ୍ତୁ ଋଷିଙ୍କର ଯେତେବେଳେ ଯେଉଁଭଳି ସଂକଳ୍ପ ହୁଏ ସେହି ରୂପ ରଖି ସେହି ଗର୍ଭକୁ ଧାରଣ କରି ନିଅନ୍ତି । ଏମାନଙ୍କ ପକ୍ଷେ କୌଣସି କଥା କଷ୍ଟସାଧ୍ୟ ନୁହେଁ ।"

ଏହାପରେ ଶୌନକ ପଚାରିଲେ—"ହଁ ଠିକ୍ କଥା ସୂତ ମହାଭାଗ । ଆଚ୍ଛା ! ଏବେ ମୁଁ ପଚାରିବାକୁ ଚାହେଁ, ଆପଣ ଯାହା କହିଛନ୍ତି ବିନତାଙ୍କ ପୁତ୍ର ଗରୁଡ଼ଙ୍କୁ ସ୍ୱୟଂ

ଭଗବାନ ଶ୍ରୀମନ୍ନାରାୟଣ ନିଜର ବାହନ କଲେ, ହେଲେ, ଭଗବାନ ଗରୁଡ଼ଙ୍କୁ କାହିଁକି ନିଜର ବାହନ କଲେ ? ଭଗବାନଙ୍କୁ କ'ଣ ଆଉ କିଛି ବାହନ ମିଳିଲା ନାହିଁ ? ଏହି ଗରୁଡ଼ଙ୍କଠାରେ କ'ଣ ଏତେ ବିଶେଷତ୍ୱ ଥିଲା ? କିପରି ତାଙ୍କର ତେଜ ପରାକ୍ରମଥିଲା ସେହିକଥା ମୋତେ ଟିକିଏ ଭଲଭାବରେ ବୁଝାଇକରି କହନ୍ତୁ, ଭଗବାନଙ୍କ ବାହନଙ୍କର ପବିତ୍ର ଚରିତ୍ର ମୋତେ ଶୁଣାନ୍ତୁ ।

ଏହା ଶୁଣି ସୂତ ଗମ୍ଭୀର ଭାବରେ କହିଲେ—"ଭଗବାନ୍ ! ବର୍ତ୍ତମାନ ମୁଁ ତ ଦକ୍ଷକନ୍ୟାମାନଙ୍କର ବର୍ଣ୍ଣନା କରୁଅଛି । ଯେପରି ଭଗବାନ ବିଷ୍ଣୁଙ୍କ ଚରିତ୍ର ଅନନ୍ତ ସେହିପରି ତାଙ୍କର ବାହନ ଗରୁଡ଼ଙ୍କ ଚରିତ୍ର ମଧ୍ୟ ମହାନ୍ ଅଟେ । ଯଦି ମୁଁ ଏଠାରେ ବିସ୍ତୃତ ଭାବରେ ଗରୁଡ଼ଙ୍କ ଚରିତ ଶୁଣାଇବି ତେବେ ଏହି ପ୍ରସଙ୍ଗ ଏଠାରେ ରହିଯିବ । ନୂତନ ଗରୁଡ଼ ପୁରାଣଟିଏ ହୋଇଯିବ । ଏଣୁ ଏଠାରେ ମୁଁ ଏହି ବିଷୟକୁ ବିସ୍ତାରିତ ଭାବରେ ବର୍ଣ୍ଣନା ନ କରି ଅତ୍ୟନ୍ତ ସଂକ୍ଷେପ ଭାବରେ ଶ୍ରୀଗରୁଡ଼ଙ୍କ ସମ୍ବନ୍ଧରେ କହୁଅଛି । ଆପଣ ମନଯୋଗ ସହକାରେ ଏହି ପୁଣ୍ୟ ପବିତ୍ର ପ୍ରସଙ୍ଗକୁ ମନଦେଇ ଶୁଣନ୍ତୁ ।"

—ଛପ୍ପୟ—

ଦେବ ଋଷଭ ସୁତ 'ଭାନୁ' ଜନେ୍ୟାଂ 'ଲମ୍ବା' ବିଦ୍ୟୋତହିଁ ।
'କକୁଭ' ବଂଶମହିଁ ଭୟେ ଦେବ ଜୋ ଦୁର୍ଗନି ମହିଁ ରହିଁ ॥
ଦେବ 'ମୁହୂର୍ତ୍ତା' ଜନେ ମୁହୂର୍ତ୍ତନି କେ ଅଭିମାନୀ ।
ମରୁତ୍ୱତୀ କେ ପୌନ୍ତ୍ର ଜୟନ୍ତ ଉପେନ୍ଦ୍ର ସୁଜ୍ଞାନୀ ॥
'ସଂକଲ୍ପା' ସଂକଲ୍ପ ସୁତ, ତାକେ ସୁତ ଭୟେ କାମ ହିଁ ।
ଅଷ୍ଟବସୁ 'ବସୁ' ନେ ଜନେ, ଦ୍ରୋଣାଦିକ ଜିନ ନାମ ହିଁ ॥



# ତାର୍କ୍ଷ୍ୟ ଗରୁଡ଼ ଏବଂ ଅରୁଣ

ସୁପର୍ଣ୍ଣାସୂତ ଗରୁଡ଼ଂ ସାକ୍ଷାଦ୍ ଯଜ୍ଞେଶବାହନମ୍ ।
ସୂର୍ଯ୍ୟସୂତମନୂରୁଂ ଚ କଦ୍ରୂର୍ନାଗାନନେକଶଃ ॥

[ ଶ୍ରୀଭାଗବତ ॥ ୬ସ୍କନ୍ଧ ॥ ୬ଅଧ୍ୟାୟ ॥ ୨୨ ଶ୍ଳୋକ ]

ଛପପଦ୍ମ

'ସାଧ୍ୟା' କେ ସୁତ ସାଧ୍ୟ 'ବିଶ୍ୱ' କେ ବିଶ୍ୱେଦେବା ।
ଭୂତ 'ସରୂପା' ନାରୀ ରୁଦ୍ରଗଣ ଜନେ କୁଦେବା ॥

ଦୁସର ପତ୍ନୀ ପୁତ୍ର ଭୂତ ପ୍ରେତାଦି ବିନାୟକ ।
ସ୍ୱଧା, ଅଙ୍ଗିରା ନାରୀ ପିତୃଗଣ ଜନେ ପ୍ରଭାବକ ॥

'ସତୀ' ସୁମାତା ବେଦକୀ 'ଧିଷଣା' ଅଚ କୃଶାଶ୍ୱ କୀ ।
ନାରୀ ପତଙ୍ଗୀ ଯାମିନୀ, ବିନତା କଦ୍ରୂ ତାର୍କ୍ଷ୍ୟ କୀ ॥

ଜଗତର ସୃଷ୍ଟି ବିନାଶ ଆଦିକୁ ଯଦି ଆମେ ଶ୍ରୀହରିଙ୍କର ନିତ୍ୟଲୀଳା ବୋଲି ମାନିନେବା ତେବେ କୌଣସି ବିଷୟରେ ସନ୍ଦେହ ରହିବ ନାହିଁ । "ଏହା କାହିଁକି ହେଉଛି ? ଏହା ହେବା ସମ୍ଭବ ନୁହେଁ ।" ଏହି ପ୍ରଶ୍ନ ସେତେବେଳେ ଉଠେ ଯେତେବେଳେ କି ଆମେ ଅସତରେ ସତ୍ତ୍ୱକୁ ତଥା ଅନିତ୍ୟକୁ ନିତ୍ୟ ଭାବରେ ଭାବନା କରିଥାଏ । ଯଦି ଏହି ଦୃଶ୍ୟ ପ୍ରପଞ୍ଚକୁ ପ୍ରଭୁଙ୍କର ବିନୋଦ ତଥା ତାଙ୍କର ସ୍ୱାଭାବିକ ଲୀଳା ଭାବରେ ଗ୍ରହଣ କରିନେବା ବୋଲି କହିବା, ତାହା ତାଙ୍କର ମାୟା ଏବଂ ମାୟାଦ୍ୱାରା କିଛି ଅସମ୍ଭବ ନୁହେଁ ସବୁ ସମ୍ଭବ । ଶଙ୍କା ତଥା ଚିନ୍ତା ଆମେ ନିଜେ ସବୁ ମାନିନେଉ । ନିଜେ ମାନ ଅପମାନ, ଭଲ ମନ୍ଦ, ତ୍ୟାଜ୍ୟ ଗ୍ରହଣୀୟ ଆଦି ଦ୍ୱନ୍ଦ୍ୱକୁ କଳ୍ପନା କରି ଦୁଃଖି ସୁଖୀ ହୋଇଥାଏ । ତୁମେ ସର୍ବଦା ନଜର ଶ୍ୟାମ ସୁନ୍ଦର ରୂପକୁ ଦେଖୁନାହିଁ । ଏକଥା କାହିଁକି ଭାବୁନାହିଁ ଯେ, ଗରୁଡ଼ଧ୍ୱଜ ନିଜ ବିନୋଦ ପାଇଁ କେଉଁଠି ହାରିଯାଆନ୍ତି ତ କେଉଁଠି ଅନ୍ୟକୁ ମଧ୍ୟ ହରାଇ ଦିଅନ୍ତି । କେଉଁଠି କଇଁଛ ହୋଇ ଯାଆନ୍ତି କେଉଁଠି ପଶୁ ପକ୍ଷୀ ହୋଇ

ଯାଆନ୍ତି, ସେ ସବୁଠାରେ ରମଣ କରନ୍ତି, ସେ କ୍ରୀଡ଼ା କରନ୍ତି, ତାଙ୍କର ସବୁକଥା ବିନୋଦ, ତାଙ୍କର ମାୟାର ପସରା ଅଟେ ।

ଶ୍ରୀସୂତ କହିଲେ—"ମୁନି ! ଯେପରି ଆମର ମନୁଷ୍ୟମାନଙ୍କ ହୃଦୟରେ ସବୁଦିନ ନୂଆ ନୂଆ କଥା ସୃଷ୍ଟି ହୁଏ ସେହିପରି ବ୍ରହ୍ମାଙ୍କର ପ୍ରତ୍ୟେକ ଦିନ ନୂଆ ନୂଆ ସୃଷ୍ଟି ଜାତ ହୁଏ । କେତେକ ସୃଷ୍ଟିରେ କିଛି କମ୍ ବହୁତ ଏପଟ ସେପଟ ମଧ୍ୟ ହୋଇଯାଏ । ତାହାକୁ କଳ୍ପ ସୃଷ୍ଟି ବୋଲି କୁହାଯାଏ । କଶ୍ୟପଙ୍କର କେଉଁ କଳ୍ପରେ ସତର ପତ୍ନୀ ହୋଇଛି, କେଉଁ କଳ୍ପରେ ବିନତା, କଦ୍ରୁ, ପତଙ୍ଗୀ ଓ ଯାମିନୀ ଏଇ ଚାରି ତାର୍କ୍ଷ୍ୟ ମୁନିଙ୍କର ପତ୍ନୀ କୁହାଯାଇ ଶେଷ କଶ୍ୟପ କୁହାଯାଏ । କେଉଁଠି କେଉଁଠି ତାର୍କ୍ଷ୍ୟ କଶ୍ୟପଙ୍କର ପର୍ଯ୍ୟାୟ ବୋଲି ଜଣାଯାଏ । କଳ୍ପଭେଦ ଯୋଗୁ ଏହିସବୁ ପ୍ରଭେଦ ଦେଖାଦିଏ । ଆପଣ ମୋତେ ଏହି ପ୍ରଶ୍ନ କରିଥିଲେ ଯେ, ଗରୁଡ଼ ଭଗବାନଙ୍କର ବାହନ କିପରି ହେଲେ ? ଏବେ ମୁଁ ଖୁବ୍ ସଂକ୍ଷେପରେ ଗରୁଡ଼ଙ୍କର ଉତ୍ପତ୍ତି ବିଷୟ କହି ତାଙ୍କର ଆଗୁଆ କଥା କହିବି । ବିନତା ଏବଂ କଦ୍ରୁ ଏମାନେ ଦୁଇ ଭଉଣୀ ଏବଂ ଗୋଟିଏ ସ୍ୱାମୀ ସହ ଏମାନଙ୍କର ବିବାହ ହୋଇଥିଲା । ଭଉଣୀ ଭଉଣୀ ମଧ୍ୟରେ ପ୍ରେମଭାବ ରହେ । କିନ୍ତୁ ଏମାନେ ଯେତେବେଳେ ସଉତୁଣୀ ହୋଇଗଲେ ସେତେବେଳେ ସେମାନଙ୍କ ମଧ୍ୟରେ ଝଗଡ଼ା ଆରମ୍ଭ ହେଲା । ଭଗବାନ ଏହି ସଉତୁଣୀ ପ୍ରଥା ସୃଷ୍ଟିକରି ବହୁତ ଖରାପ କାମ କରିଛନ୍ତି ଯେ ଏହି ପ୍ରଥାରେ ବଶୀଭୂତ ହୋଇ ସ୍ତ୍ରୀମାନେ ଅନୁଚିତ କାମକୁ ମଧ୍ୟ କରି ବସନ୍ତି । ଦିନେ ବିନତା ଓ କଦ୍ରୁ ଉପରେ ସେମାନଙ୍କର ସ୍ୱାମୀ ପ୍ରସନ୍ନ ହୋଇ ବର ମାଗିବା ପାଇଁ ସେମାନଙ୍କୁ କହିଲେ । ଫଳରେ "ମୋର ଏକ ହଜାର ସୁନ୍ଦର ନାଗପୁତ୍ର ଜାତ ହୁଅନ୍ତୁ" ବୋଲି କଦ୍ରୁ ତାର ସ୍ୱାମୀଙ୍କୁ ବର ମାଗିଲା । ସେହିପରି ବିନତା "ତାର ଦୁଇଟି ପରାକ୍ରମୀ ପୁତ୍ର ହେଉ" ବୋଲି ବର ମାଗିଲା । ପତିଙ୍କର ପ୍ରସନ୍ନତା ଯୋଗୁ ଦୁହିଁଙ୍କୁ ଏହି ବର ପ୍ରାପ୍ତହେଲା । ନିୟମ ଅନୁସାରେ କଦ୍ରୁ ଏକ ହଜାର ଅଣ୍ଡା ଓ ବିନତା ଦୁଇଟି ବଡ଼ ବଡ଼ ଅଣ୍ଡା ଜାତ କଲେ । ଦାସୀମାନେ ଏହିସବୁ ଅଣ୍ଡାକୁ ଅଲଗା ଅଲଗା ଭାବରେ ଗରମ ପାତ୍ରରେ ରଖିଦେଲେ ।

ଶୁଣନ୍ତୁ ! ନିୟମ ଅଛି ଯେ ବାଳକ ଗର୍ଭରେ ଯେତେ ଅଧିକ ଦିନ ରହେ ସେ ସେତେ ଅଧିକ ବଳଶାଳୀ ହୁଏ । ବହୁତ ପିଲା ସାତ ମାସରେ ଜନ୍ମ ହୋଇ-ଯାଆନ୍ତି ଫଳରେ ସେମାନେ ବହୁତ ଦୁର୍ବଳ ହୋଇଥାଆନ୍ତି । ପାଞ୍ଚଶହ ବର୍ଷ ପରେ କଦ୍ରୁଙ୍କର ସମସ୍ତ ଅଣ୍ଡା ଆପେ ଆପେ ଫୁଟିଗଲା ଏବଂ ତା ଭିତରୁ ବଡ଼ ବଡ଼ ବଳଶାଳୀ ସର୍ପ ଜାତ ହେଲେ । ଯେଉଁମାନଙ୍କର ସ୍ୱଭାବ ବହୁତ କ୍ରୂର ଥିଲା । କଦ୍ରୁଙ୍କର ଏହି ହଜାରେ ପୁଅ ଏଣେତେଣେ ଭୟଙ୍କର ଭାବ ଧାରଣ କରି ବୁଲିବାକୁ ଲାଗିଲେ । କିନ୍ତୁ ବିନତାଙ୍କର ଅଣ୍ଡା ଯେମିତି ସେମିତି ରହିଥାଏ । ଫଳରେ ବିନତା ମନରେ

ସଉତୁଣୀ ପ୍ରତି ହିଂସାଜାତ ହେଲା – "ହାୟ ! ତାର ହଜାରେ ପୁତ୍ର ଜାତହୋଇ ଏଣେତେଣେ ବୁଲୁଛନ୍ତି । ସେମାନେ ତାଙ୍କର ମାଙ୍କୁ କେତେ ପ୍ରେମ ନ କରୁଛନ୍ତି, କେତେବେଳେ ମା କୋଳରେ ବସୁଛନ୍ତି ତ କାନ୍ଧରେ ଲଟକି ଯାଇ ଦୋଳି ଖେଳୁଛନ୍ତି ଆଉ କେତେବେଳେ ମୁଣ୍ଡରେ ଚଢ଼ି ତାଙ୍କ ମାକୁ ଆନନ୍ଦ ଦେଉଛନ୍ତି । ମୋର ଦୁଇଟି ପୁତ୍ର ହେବାର ଅଛି ଅଥଚ ଏ ଯାଏ ସେମାନେ ଜନ୍ମ ହେଲେନାହିଁ । ଯେତେ ଡେରି ହେବ ସେମାନେ ସେତିକି ବୟସରେ ସାନ ଭାବରେ ବିବେଚିତ ହେବେ । ମୋର ସଉତୁଣୀ ପିଲାମାନେ ତାଙ୍କଠାରୁ ଜ୍ୟେଷ୍ଠ ଭାବରେ ପରିଗଣିତ ହୋଇଯିବେ । ସଉତୁଣୀର ପିଲାମାନଙ୍କ କଥା ଘାରିହୋଇ ସେ ସେହି ଦୁଇଟି ଅଣ୍ଡାରୁ ଗୋଟିକୁ ସମୟ ହୋଇ ନ ଥିଲେ ମଧ୍ୟ ଫୁଟାଇଦେଲା । ଫୁଟାଇ ଦେବା ଫଳରେ ସେଥିରୁ ଗୋଟିଏ ପରମ ସୁନ୍ଦର ବାଳକ ବାହାରି ଆସିଲା । ତାର ନାଭିର ଉପରକୁ ସମସ୍ତ ଅଙ୍ଗ ଠିକ୍ ଭାବରେ ତିଆରି ହୋଇଥିଲା କିନ୍ତୁ ନାଭିର ତଳଦେଶ-ଠାରୁ ସମସ୍ତ ଶରୀର ଗୋଡ଼ ଆଦି ତିଆରି ହୋଇ ନଥିଲା । ମା'ର ଏହି ଅଧିରତା ତଥା ଈର୍ଷ୍ୟାଭାବ ଯୋଗୁଁ ସେହି ତେଜସ୍ୱୀ ବାଳକ ମନରେ କ୍ରୋଧ ଜାତହେଲା । ସେ ରାଗିକରି ତା ମାକୁ ଅଭିଶାପ ଦେଇ କହିଲା – "ମା ! ତୁ ମୋହବଶତଃ ଈର୍ଷ୍ୟା-ପରାୟଣ ହୋଇ ମୋତେ ପଙ୍ଗୁ କରିଦେଲୁ, ଏଣୁ ତୁ ଯାହାଠୁ ବଡ଼ହେବାକୁ ଚାହୁଁଥିଲୁ, ତାର ତୁ ୫୦୦ ବର୍ଷ ପର୍ଯ୍ୟନ୍ତ ଦାସୀ ହୋଇ ରହିବୁ । ଯଦି ଏଇ ମୋ ଭାଇର ଅଣ୍ଡାକୁ ତୁ ମଝିରେ ନ ଫୁଟାଇ ଧୈର୍ଯ୍ୟ ସହକାରେ ଜନ୍ମହେବା ପର୍ଯ୍ୟନ୍ତ ରହିବୁ ତେବେ ୫୦୦ ବର୍ଷ ପରେ ସେ ଜନ୍ମଲାଭ କରି ତୋତେ ଦାସୀ ପଦରୁ ମୁକ୍ତ କରି ପାରିବ । ଏତିକି କହି ସେ ଆକାଶକୁ ଉଡ଼ିଗଲା । ସେଠାରେ ସେ ଭଗବାନ ସୂର୍ଯ୍ୟଙ୍କର ଆରାଧନା କରି ତ୍ରୈଲୋକ୍ୟ ପରିକ୍ରମା ନିମନ୍ତେ ବର ମାଗିଲା । ପଙ୍ଗୁ ପୁରୁଷ କିପରି ପରିକ୍ରମା କରି ପାରିବ ! ଏଣୁ ଭଗବାନ ସୂର୍ଯ୍ୟ ତାକୁ ନିଜ ରଥର ସାରଥି କରି ରଖିଲେ । ତାଙ୍କର ନାମ ଅରୁଣ ହେଲା । ମୁନି ! ପ୍ରାରବ୍ଧର କିପରି ବିଚିତ୍ର ମହିମା । ସୂର୍ଯ୍ୟମଣ୍ଡଳ କେତେ ବଡ଼ । ଭଗବାନ ଭୁବନ ଭାସ୍କରଙ୍କର ରଥ କେତେ ବିରାଟ ଓ ସୁନ୍ଦର ଯେଉଁଥିରେ କି ସାତ ଛନ୍ଦ ଘୋଡ଼ା ଯୋଗ ହୋଇଛନ୍ତି । ଏହି ଦିବ୍ୟ ସୁନ୍ଦର ରଥର ସାରଥୀ ଗୋଟିଏ ପଙ୍ଗୁ । ସେ ସୂର୍ଯ୍ୟଙ୍କ ଆଡ଼କୁ ପିଠି କରେ-ନାହିଁ । କିନ୍ତୁ ହାତରେ ଘୋଡ଼ାଙ୍କର ବାଲଧରି ଘୋଡ଼ାଙ୍କ ଆଡ଼କୁ ପିଠିକରି ସେମାନଙ୍କୁ ଚଳାଏ । ଏହିପରି ଭାବରେ ସେ ରଥରେ ବସି ପୃଥିବୀକୁ ପ୍ରଦକ୍ଷିଣ କରୁଅଛି । ପ୍ରତ୍ୟେକ ଦିନ ସୂର୍ଯ୍ୟୋଦୟ ପୂର୍ବରୁ ପ୍ରଥମେ ଅରୁଣୋଦୟ ହୁଏ । ଅରୁଣଙ୍କ ଦର୍ଶନ ପରେ ଯାଇ ସୂର୍ଯ୍ୟଙ୍କର ଦର୍ଶନ ମିଳେ । ମୁଁ ଗରୁଡ଼ଙ୍କ ବଡ଼ଭାଇ ଅରୁଣଙ୍କର ସଂକ୍ଷିପ୍ତ କାହାଣୀ କହିଲି । ବର୍ତ୍ତମାନ ଆପଣଙ୍କୁ ଭଗବାନ ଗରୁଡ଼ଙ୍କର ସୁନ୍ଦର ଓ କମନୀୟ କାହାଣୀ କହିବି ।

ଶୁଣନ୍ତୁ ! ସମର୍ଥ ପୁରୁଷର ଅଭିଶାପ ଏବଂ ଅନୁଗ୍ରହ କେବେ ବ୍ୟର୍ଥରେ ପରିଣତ ହୁଏନାହିଁ । ବିଗୃକ୍ଷ ବିନତାକୁ ତାର ତେଜସ୍ୱୀ ପୁତ୍ର ଅରୁଣ ଅଭିଶାପ ଦେଇଥିଲା । ସେ ପୂର୍ଣ୍ଣାଙ୍ଗପ୍ରାପ୍ତ ଲାଭକରି ନଥିଲେ । ଦିନେ ଦୈବଯୋଗକୁ ବିନତା ଓ କଦ୍ରୁ ବସିଥିବା ସମୟରେ ଆକାଶମାର୍ଗରେ ସମୁଦ୍ର ମନ୍ଥନରୁ ବାହାରିଥିବା ସୁନ୍ଦର ଉଚ୍ଚୈଃଶ୍ରବାନାମକ ଘୋଡ଼ା ଯାଉଥିଲା । ଦୁଧର ଫେଣ ସଦୃଶ ଏହି ଅପ୍ରାକୃତ ଅଶ୍ୱ ଦ୍ୱିତୀୟ ପୂର୍ଣ୍ଣଚନ୍ଦ୍ର ପରି ଶୋଭା ପାଉଥିଲା । ତାକୁ ଦେଖି କଦ୍ରୁ ବିନତାକୁ ପଚାରିଲା—"ଭଉଣୀ ଉଚ୍ଚୈଃଶ୍ରବାର ରଙ୍ଗ କିପରି ?"

ହସିହସି ବିନତା କହିଲା—"ଆରେ ଏଥିରେ କ'ଣ କିଛି ପଚାରିବାକୁ ଅଛି ! ଉଚ୍ଚୈଃଶ୍ରବା ପୂରା ଧଳା ।"

କଦ୍ରୁ ପଚାରିଲା— "ଆଚ୍ଛା ! ତାର ପୁଚ୍ଛର କେଶ କି ପ୍ରକାର ?" ବିନତା କହିଲା—"ସେ ଯେପରି ଶୁଭ୍ରବର୍ଣ୍ଣ ସେହିପରି ତାର ପୁଚ୍ଛ ମଧ୍ୟ ଶୁଭ୍ର । ଧଳା ରେଶମ ଭଳି ତଳ ପର୍ଯ୍ୟନ୍ତ ଲମ୍ବିଛି । ବଡ଼ ସୁନ୍ଦର ମନମୋହନ ପୁଚ୍ଛ ।"

କଦ୍ରୁ କହିଲା—"ଆଲୋ, ଭଉଣୀ ତୁ ଏଡ଼େ ଓଲୁ । ଆଲୋ ତାର ପୁଚ୍ଛ ହେଉଛି ପୁରାପୂରି କଳା ରଙ୍ଗର, ବୁଝିଲୁ ।" ଏକଥା ଶୁଣି ବିନତା ମନରେ ରାଗ ଜାତହେଲା । ସେ କହିଲା—"ତୁ କେମିତି ମିଛକଥା କହୁଛୁ । ତା ଆଖିରେ କାଳିମା ଘୋଟି ହୋଇଛି, ଯେଉଁଟା ଧଳା ଜିନିଷ ତାହା ତୋ ଆଖିକୁ କଳା ଦେଖାଯାଉଛି ନଚେତ ତୋ ମନ କଳା ହୋଇଗଲାଣି ।" ଏକଥା କହି ବିନତା ଠୋ ଠୋ କରି ହସିବାକୁ ଲାଗିଲା ।

ବିନତାକୁ ହସିବାର ଦେଖି କଦ୍ରୁ ମନରେ କ୍ରୋଧ ଜାତ ହେଲା । ନିଜର ଅସତ୍ୟ କଥା ଉପରେ ଜିଦ୍‌ଧରି ସେ କହିଲା—"ମୁଁ ଥରେ ନୁହେଁ ହଜାର ଥର କହିବି, ଉଚ୍ଚୈଃଶ୍ରବାର ପୁଚ୍ଛ କଳା, ନିଶ୍ଚୟ କଳା ; ଘର ବାହାର, ଆକାଶ, ପାତାଳ ସବୁଠାରେ ମୁଁ ଏହି କଥା ବରାବର କହିବି ।"

ବିନତା କହିଲା – "ତୁ ଗୋଟେ ବଡ଼ ପାଗଳୀ । ମିଛରେ ତୁ ମିଛ କଥା ଉପରେ ଅଡ଼ି ବସିଛୁ । ତୋର ମୋର ଏଇଟା ଜିଦ୍ ପଡ଼ିଲା, ଯଦି ଉଚ୍ଚୈଃଶ୍ରବାର ବାଳ କଳା ହୋଇ ନଥିବ ତେବେ ?"

କଦ୍ରୁ ତା କଥା ଉପରେ ଚିଡ଼ିଯାଇ କହିଲା –"ତେବେ ଆଉ କ'ଣ ? ଯଦି କଳା ହୋଇ ନ ଥିବ ତେବେ ଜୀବନ ତମାମ ମୁଁ ତୋର ଦାସୀ ହୋଇ ରହିବି । ତୋର ସେବା କରିବି । ଯାହା କହୁଛି ତାହା ନିଶ୍ଚୟ କରିବି । ଯଦି କାଳି ହୋଇଥିବ ତେବେ ଜୀବନସାରା ତୁ ମୋର ଦାସୀ ହୋଇ ରହିବାକୁ ହେବ । କହ ତୁ ଏଥିରେ ଏକମତ ?"

ବିନତା ଦୃଢ଼ ଭାବରେ କହିଲା – "ଠିକ୍ ଅଛି, ମୁଁ ଏଥିରେ ଏକମତ । ପରେ ଏହି କଥାରୁ ତୁ ବାହାର ଯିବୁ ନାହିଁ । ଏଇଟା ହସକଥା ନୁହେଁ । ସେଇଆ କରିବାକୁ ପଡ଼ିବ ।"

କଥାରେ କଥାରେ ହସରେ ହସରେ କଥା ବଢ଼ିବାକୁ ଲାଗିଲା । ଏବେ କଦ୍ରୁ ଚିନ୍ତା କରିବାକୁ ଲାଗିଲା । ପ୍ରକୃତରେ ଉଚ୍ଚୈଃଶ୍ରବାର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଅତ୍ୟନ୍ତ ଶୁଭ୍ରବର୍ଣ୍ଣର ଥିଲା । ତାର ପୁଚ୍ଛର ବାଳ ମଧ୍ୟ ଧଳା ରଙ୍ଗର ଥିଲା । କଦ୍ରୁ ଭାବିଲା ଏଥିରେ କିଛି ଗଣ୍ଡଗୋଳ କରିବାକୁ ହେବ । ସେ ତାର ପୁତ୍ର ନାଗଙ୍କୁ ଡାକି କହିଲା –"ଦେଖ ବାପା ! ଆଜି ମୋର ବିନତା ସଙ୍ଗରେ ଜିଦ୍ ପଡ଼ିଛି । ତୁମେମାନେ ସମସ୍ତେ କଳା ବାଳ ସଦୃଶ ସାପ ହୋଇଯାଇ ଉଚ୍ଚୈଃଶ୍ରବାର ପୁଚ୍ଛରେ ଲାଗିଯାଅ । ଯାହାଫଳରେ କି ତାର ପୁଚ୍ଛ କଳା ହୋଇଯିବ । ଏଥିରେ ଯାଇ ମୋର ବିଜୟ ସମ୍ଭବ ହେବ ।" ଏକଥା ଶୁଣି ସେମାନଙ୍କ ମଧ୍ୟରୁ ଅଧେ ସାପ ମା'ର ଏହି ଅନ୍ୟାୟ କଥାରେ ଏକମତ ହେଲେ ନାହିଁ । ଫଳରେ କଦ୍ରୁ ରାଗିଯାଇ ସେମାନଙ୍କୁ ଅଭିଶାପ ଦେଲା –"ତୁମେ ଜନ୍ମେଜୟଙ୍କ ଯଜ୍ଞରେ ଭସ୍ମ ହୋଇଯାଅ ।" ତରି କରି ବାକି ଅଧେ ସାପ ଉଚ୍ଚୈଃଶ୍ରବାର ପୁଚ୍ଛରେ ଗୁଡ଼ାଇ ହୋଇଗଲେ ।

ଦୁଇ ଭଉଣୀଯାକ ସମୁଦ୍ର ପାରହୋଇ ଉଚ୍ଚୈଃଶ୍ରବାକୁ ଦେଖିବାପାଇଁ ବାହାରିଲେ । ସେମାନେ ଯାଇ ଆକାଶସ୍ଥିତ ଚନ୍ଦ୍ରମାର କିରଣ ସମାନ ଉଜ୍ଜ୍ୱଳ ଓ ଚକମକ କରୁଥିବା ଉଚ୍ଚୈଃଶ୍ରବାକୁ ଦେଖିଲେ । ଉଚ୍ଚୈଃଶ୍ରବା, ପାଞ୍ଚଜନ୍ୟ ଶଙ୍ଖ ସମାନ, ଦୁଗ୍ଧର ଫେଣ ସମାନ, ହଂସ ପକ୍ଷୀ ସମାନ, ନବ ଯୌବନା ନବବେଗୀ ନାରୀର ଉଜ୍ଜ୍ୱଳ ଦାନ୍ତ ସମାନ, କଲେଇ ହୋଇଥିବା ସ୍ୱଚ୍ଛ ଭବନ ସମାନ, ଧୂଆ ହୋଇଥିବା ଗୃଉଳ ସମାନ, କଚ୍ଚା ହୋଇଥିବା ଧଳାବସ୍ତ୍ର ସମାନ, ବାଳକର ମିଠା ହସ ସମାନ ଓ ପ୍ରସ୍ଫୁଟିତ କାଁସ ଫୁଲ ସଦୃଶ ଧଳା ରଙ୍ଗର ଦେଖାଯାଉଥିଲା । କିନ୍ତୁ ନାଗମାନେ ତାର ପୁଚ୍ଛରେ ଗୁଡ଼ାଇ ହୋଇଥିବା ଯୋଗୁ ତାର ପୁଚ୍ଛଟି କଳା ଦେଖାଯାଉଥାଏ । ଏକଥା ଦେଖି ବିନତା ମନରେ ଦୁଃଖ ଜାତହେଲା । ଫଳରେ ତାକୁ କଦ୍ରୁର ଦାସୀ ହେବାକୁ ପଡ଼ିଲା । ଶୁଣନ୍ତୁ ! ଈର୍ଷ୍ୟାଦ୍ୱେଷ ବଶତଃ ମନୁଷ୍ୟ ଅନୁଚିତ କର୍ମକରି ଗର୍ବ ମଧ୍ୟ ଅନୁଭବ କରେ । କଦ୍ରୁ ବିନତାକୁ କ୍ଷମା ଦେଲା ନାହିଁ । ସେ ତାକୁ ନିଜର ଦାସୀ କରି ନିଜ ସେବାରେ ନିଯୋଗ କଲା । ଏହିଭଳି ଭାବରେ ବିନତା କଦ୍ରୁର ସେବାରେ ଖଟି ଖଟି ୫୦୦ବର୍ଷ ଅତିବାହିତ ହେଲା ।

ଗରୁଡ଼ ଜନ୍ମହେବାର ସମୟ ଆସି ପହଞ୍ଚିଲା । ସେ ଅଣ୍ଡାକୁ ଫାଡ଼ି ନିଜେ ବାହାରି ଆସିଲେ । ଜନ୍ମହେବା ସମୟରେ ସେ ମହାନ୍ ତେଜସ୍ୱୀ, ପରାକ୍ରମୀ ଏବଂ ବଡ଼ ଡଉଲ ଡାଉଲ ଜନ୍ତୁ ଥିଲେ । ତାଙ୍କର ପରଗୁଡ଼ିକ ସୁବର୍ଣ୍ଣ ଭଳି ଥିଲା । ସେ

ଅଗ୍ନିଭଳି ତେଜ ଧାରଣ କରିଥିଲେ । ଜନ୍ମହେବା ମାତ୍ରକେ ସେ ଆକାଶରେ ଉଡ଼ିବାକୁ ଲାଗିଲେ । ତାଙ୍କୁ ଆକାଶରେ ଉଡ଼ୁଥିବାର ଲକ୍ଷ୍ୟକରି ଦେବତାମାନେ ଆଶ୍ଚର୍ଯ୍ୟ ହୋଇ ଡରରେ କମ୍ପିବାକୁ ଲାଗିଲେ । ଇନ୍ଦ୍ରଙ୍କ ଦଶା ଶୋଚନୀୟ ହୋଇପଡ଼ିଲା । ସେ ଅଗ୍ନିଙ୍କୁ ଯାଇ କହିଲେ— 'ଅଗ୍ନିଦେବ ! ଆପଣଙ୍କଠାରୁ ଅଧିକ ତେଜସ୍ୱୀ ଏକ ପ୍ରକାରର ଜୀବ । ସେ ମୋ ଆଡ଼କୁ ଦୌଡ଼ିଆସୁଛି । ଏ କ'ଣ ସ୍ୱର୍ଗକୁ ନଷ୍ଟ କରିଦେବ ?''

ତିନଲୋକର ସ୍ୱାମୀ ଦେବରାଜ ଇନ୍ଦ୍ରଙ୍କଠାରୁ ଏପରି କଥା ଶୁଣି ଅଗ୍ନିଦେବ ହସି ହସି କହିଲେ – ''ଦେବେନ୍ଦ୍ର ! ଆପଣ ଭୟ କରନ୍ତୁ ନାହିଁ । ପ୍ରକୃତରେ ସେ ମୋଠାରୁ ଅଧିକ ତେଜୀୟାନ ; କିନ୍ତୁ ସେ ଦେବତାମାନଙ୍କର ପକ୍ଷପାତୀ । ଏ ହେଉଛି ରାକ୍ଷସ, ଅସୁର ତଥା ନାଗଆଦି କ୍ରୁର କର୍ମକାରୀଙ୍କ ବିନାଶକ ବା ଶତ୍ରୁ । ସମସ୍ତ ଦେବତା ମିଳି ତାହାଙ୍କୁ ସ୍ତୁତି କରିବା ଉଚିତ ।'' ଏହି କଥା ଶୁଣି ହାତରେ କଳ୍ପବୃକ୍ଷର ପୁଷ୍ପ ଧରି ସର୍ବ ଦେବତା ଗରୁଡ଼ଙ୍କର ସ୍ତୁତି କରିବା ପାଇଁ ଆସି ବିଭିନ୍ନ ପ୍ରକାର ସ୍ତୋତ୍ର ଉଚ୍ଚାରଣ ପୂର୍ବକ ତାଙ୍କର ପ୍ରଶଂସା ଗାୟନ କରି ଶେଷରେ କହିଲେ ''ହେ ପ୍ରଭୁ ! ଆଜି ଆମେ ଆପଣଙ୍କୁ ସମସ୍ତ ପକ୍ଷୀମାନଙ୍କର ଇନ୍ଦ୍ର ଭାବରେ ଗ୍ରହଣ କଲୁ । ଆପଣ ଆପଣଙ୍କର ଉଗ୍ର ରୂପକୁ ସମ୍ବରଣ କରନ୍ତୁ । ଏହି ଭୟଙ୍କର ଶରୀରକୁ ଲଘୁ କରିଦେଇ ସର୍ବଦା ଆମ ଉପରେ ଦୟା ରଖନ୍ତୁ । ଗରୁଡ଼ ଦେବତାମାନଙ୍କର ପ୍ରାର୍ଥନା ଗ୍ରହଣ କଲେ ଏବଂ କ୍ଷୁଦ୍ର ଶରୀର ଧାରଣ କରି ମା'ର କୋଳରେ ବସି ଖେଳିବାକୁ ଲାଗିଲେ ।''

ସେ କଦ୍ରୁର ଦାସୀ ବିନତାର ପୁତ୍ର । ମା ଦାସୀ ହେଲେ ପୁଅ ମଧ୍ୟ ଦାସ । ଏଣୁ କଦ୍ରୁର ପୁତ୍ର ନାଗମାନେ ଗରୁଡ଼ଙ୍କୁ ଆଦେଶ ପ୍ରଦାନ କରି କହନ୍ତି । ଆମକୁ ଏଠାରୁ ପିଠିରେ ବସାଇ ନେଇଚାଲ, ଆମର ଏଇ କାମ କରିଦିଅ । ଏଇସବୁ କାମ ଗରୁଡ଼ ମା'ଙ୍କର ଗୌରବ ନିମନ୍ତେ କରୁଥିଲେ ହେଁ ତାଙ୍କ ମନରେ ରାଗ ହେଉଥିଲା । ସେ ମନେ ମନେ ଭାବୁଥିଲେ ଯଦି ମା ଆଦେଶ ଦିଅନ୍ତେ ତେବେ ଏଗୁଡ଼ାଙ୍କୁ ମୁଁ ଛିନ୍ନ ଭିନ୍ନ କରି କାମୁଡ଼ି ପକାନ୍ତି । କିନ୍ତୁ କ'ଣ କରିବେ ! ସେ ମାଙ୍କ ଆଦେଶରେ ବନ୍ଧା ।

ଦିନେ ସେ ତାଙ୍କର ମାଙ୍କୁ ପଚାରିଲେ—''ମା ! ଏହି ନାଗମାନେ କାହିଁକି ଆମକୁ ଦାସ କାମ କରାଉଛନ୍ତି ? ତୁ ନାଗମାନଙ୍କର ମାତା କଦ୍ରୁକୁ ଉପରେ ବସାଇ କରି କାହିଁକି ଏଠିକି ସେଠିକୁ ବୋହି ନେଉଛୁ ?',

ଏକଥା ଶୁଣି ବିନତାର ଆଖିରେ ଲୁହ ବୋହିଆସିଲା ସେ ଆଦ୍ୟରୁ ପ୍ରାନ୍ତଯାଏ ସବୁକଥା ପୁଅ ଗରୁଡ଼ଙ୍କୁ ଶୁଣାଇ ସାରି କହିଲେ – ''ପୁଅ ! ମୋ ପ୍ରତି ଏହିପରି ଛଳନା

କରାଯାଇଥିଲା, ଏବେ ଆଉ କ'ଣ ହେବ । ଆମକୁ ଜୀବନସାରା ସେମାନଙ୍କର ଦାସତ୍ୱ ସ୍ୱୀକାର କରିବାକୁ ପଡ଼ିବ । ଯଦି ତୁ ସକ୍ଷମ, ତେବେ ମୋତେ ଦାସତ୍ୱରୁ ମୁକ୍ତ କରପାରୁ ।"

ଏକଥା ଶୁଣି ଗରୁଡ଼ କଦ୍ରୁ ଏବଂ ନାଗମାନଙ୍କ ପାଖକୁ ଯାଇ କହିଲେ—"ତୁମେମାନେ ସମସ୍ତେ ଯେଉଁ କାମ ଚାହୁଁଛ ସବୁ ମୋଦ୍ୱାରା କରାଅ । ମୁଁ ତୁମର କଣ ଦୁର୍ଲ୍ଲଭ କାର୍ଯ୍ୟ କରଦେଲେ, ତୁମେମାନେ ମୋତେ ଏବଂ ମୋ ମାଙ୍କୁ ଦାସତ୍ୱ ବନ୍ଧନରୁ ମୁକ୍ତ କରଦେବ ?"

ନାଗମାନେ କହିଲେ—"ଯଦି ଆପଣ ଆମପାଇଁ ସ୍ୱର୍ଗରୁ ଅମୃତଭାଣ୍ଡ ଆଣି ଦେଇପାରବେ ତେବେ ଆପଣ ମା ଓ ପୁଅ ଦୁହିଁଙ୍କୁ ଆମେ ଦାସତ୍ୱରୁ ମୁକ୍ତ କରଦେବୁ ।"

ଗରୁଡ଼ ତାଙ୍କର ଆକାରକୁ ବର୍ଦ୍ଧିତ କରି ପ୍ରଚଣ୍ଡ ଅଗ୍ନି ସମାନ ପ୍ରଜ୍ୱଳିତ ହୋଇ ଆକାଶ ମାର୍ଗରେ ସ୍ୱର୍ଗଆଡ଼କୁ ଉଡ଼ିବାକୁ ଲଗିଲେ । ତାଙ୍କର ଏହି ଭୟଙ୍କର ରୂପ ଦେଖି ସମସ୍ତ ଜୀବ ଡର ଗ୍ରାନଆଁ ହୋଇଗଲେ । ଯିବା ପୂର୍ବରୁ ସେ ଚିନ୍ତାକଲେ ଯେ ମୁଁ ଏତେବାଟ ଯିବି ଟିକଏ କିଛି ଜଳପାନ କରିନେବା ଦରକାର । ଏହିକଥା ଭାବି ସେ ମାଙ୍କୁ ପଚାରିଲେ—"ମା କ'ଣ ଜଳପାନ କରିବି ମୋତେ ବତାଇ ଦେ ।" ମା କହିଲେ "ପୁଅ ! ତୁ ତ ଦ୍ୱିତୀୟ ହିମାଳୟ ପାହାଡ଼ ପରି ଦିଶୁଛ, ସାଧାରଣ ବସ୍ତୁରେ ତୋର ପେଟ ପୂରିବ ନାହିଁ । ଏହି ଦ୍ୱୀପରେ ଦସ୍ୟୁ, ଅଧର୍ମୀ, କ୍ରୁରକର୍ମକାରୀ, ଲୁଣ୍ଠନକାରୀ, ବହୁତ ଜୀବ ରହି ଭୟ ଦେଖାଉଛନ୍ତି ସେମାନଙ୍କୁ ଖାଇ ତୋର ପେଟ ପୁରାଇ ଦେ, କିନ୍ତୁ ବ୍ରାହ୍ମଣମାନଙ୍କୁ ଆଦୌ ଖାଇବୁନାହିଁ । ଏକଥା ଶୁଣି ସେ ଏସବୁ ଜୀବମାନଙ୍କୁ ଗିଳିବା ଇବାକୁ ଆରମ୍ଭ କଲେ । ସେମାନଙ୍କ ମଧ୍ୟରେ ତାଙ୍କର ପୁରୋହିତ ମଧ୍ୟ ଗରୁଡ଼ଙ୍କ ମୁହଁ ଭିତରକୁ ଚାଲିଗଲା । କଣ୍ଠ ଜଳିଯିବାରୁ ଲକ୍ଷ୍ୟକରି ଗରୁଡ଼ ସେହି ବ୍ରାହ୍ମଣର ସ୍ତ୍ରୀ, ପୁତ୍ର ଆଦି ପରିବାର ସହିତ ସେହି ବ୍ରାହ୍ମଣକୁ ବାନ୍ତି କରିଦେଲେ । କିନ୍ତୁ ଏତେ ଭୋଜନ କରି ମଧ୍ୟ ତାଙ୍କର ପେଟ ପୂରିଲାନାହିଁ । ବରଂ ତାଙ୍କର ଭୋକ ଆହୁରି ବଢ଼ିବାକୁ ଲାଗିଲା । ସେତିକି ଖାଇ ସେ ଉଡ଼ିବାକୁ ଲାଗିଲେ । ଯାଉ ଯାଉ ବାଟରେ ସୁମେରୁ ପାହାଡ଼ଠାରେ ତାଙ୍କର ପିତାଙ୍କ ସହ ସାକ୍ଷାତ ହେଲା । ସେ ପୁତ୍ର ଗରୁଡ଼ଙ୍କୁ କୁଶଳାଦି ପଚାରିଲେ । ଗରୁଡ଼ କହିଲେ "ମର୍ତ୍ତ୍ୟଲୋକରେ ସବୁ ଠିକ୍ ଅଛି କିନ୍ତୁ ସେଠାରେ ମୋ ପେଟ ପୂରିଲାନାହିଁ । ବର୍ତ୍ତମାନ ମୋତେ ଭାରି ଭୋକ ଲାଗୁଛି । ମୋତେ କିଛି ଆହାର ଦିଅନ୍ତୁ । ପିତା ଗରୁଡ଼ଙ୍କୁ କିଛି ଆହାର ଖାଇବା ପାଇଁ ବତାଇଦେଲେ । ତାକୁ ଖାଇ ଗରୁଡ଼ ଯାଇଁ ସ୍ୱର୍ଗରେ ପହଞ୍ଚିଲେ ।

ଦେବତାମାନେ ଅମୃତ ଭାଣ୍ଡକୁ ବଡ଼ ସାବଧାନତା ସହକାରେ ରଖିଥିଲେ । ଅମୃତଭାଣ୍ଡ ଏକ ଅତ୍ୟନ୍ତ ସୁରକ୍ଷିତ ସ୍ଥାନରେ ଥିଲା । ତା ଉପରେ ଗୋଟିଏ ତୀକ୍ଷ୍ଣ ଧାରଥିବା ଚକ୍ର ସବୁବେଳେ ଘୂରୁଥାଏ ତାଙ୍କୁ ଛୁଇଁବାକୁ କେହି ସମର୍ଥ ନ ଥିଲେ । ଗରୁଡ଼ ନିଜର କ୍ଷୁଦ୍ରରୂପ ପ୍ରକାଶ କରି ତା ଭିତରକୁ ପଶିଗଲେ । ତା ଭିତରେ ଦୁଇଟି ବିଷଧର ସର୍ପ ତାକୁ ଜଗି ବସିଥିଲେ । ସେମାନଙ୍କୁ ଗରୁଡ଼ ଏପରି କରିଦେଲେ ଯେ, ସେମାନେ ପାତାଳ ଆମ୍ବଭଳି ତଳକୁ ଖସିପଡ଼ିଲେ । ସାପମାନଙ୍କୁ ମାରି ସେଇ ଚକ୍ରକୁ ଫୋପାଡ଼ି ଦେଇ ଅମୃତ ଭାଣ୍ଡକୁ ସେଠାରୁ ଉଠାଇ ନେଇ ଆସିଲେ । ସବୁ ଦେବତା-ମାନେ ଆସି ଖାଲି ତାଙ୍କ ମୁହଁକୁ ଚାହିଁ ରହିଗଲେ । ଦେବତାମାନେ ଅସ୍ତ୍ର ଶସ୍ତ୍ର ଧାରଣ କରି ମଧ୍ୟ ନିସ୍ତେଜ ଭାବରେ ଠିଆ ହୋଇ ରହିଲେ । ଇନ୍ଦ୍ରଙ୍କର ସମସ୍ତ ବଳ ବ୍ୟର୍ଥ ହୋଇଗଲା । ଗରୁଡ଼ଙ୍କ ସମ୍ମୁଖକୁ କେହି ଆସିଲେ ସମସ୍ତେ ହତବାକ୍ୟ ହୋଇ କେବଳ ଗରୁଡ଼ଙ୍କୁ ଚାହିଁରହିଲେ । ତାଙ୍କର ବଳ ପରାକ୍ରମ ଦେଖି ସମସ୍ତେ ଭୟଭୀତ ହୋଇ ଚକିତ ହୋଇ ପଡ଼ିଲେ ।

ନିର୍ଭୟରେ ଗରୁଡ଼ ଅମୃତଭାଣ୍ଡ ଧରି ଆକାଶରେ ଉଡ଼ିବାକୁ ଲାଗିଲେ । କିନ୍ତୁ ଅମୃତ ଖାଇ ଅଜର ଅମର ହୋଇ ରହିବା ପାଇଁ ତାଙ୍କ ମନକୁ ଆସିଲାନାହିଁ । ସେ କେତେ ନିର୍ଲୋଭୀ, ତାଙ୍କର କେତେ ସଂଯମତା ଓ କେତେ ତାଙ୍କର ସାହସ । ଭଗବାନ ତାଙ୍କର ଏହି ନିସ୍ପୃହତାରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ପଥ ମଧ୍ୟରେ ଦର୍ଶନ ଦେଇ କହିଲେ—"ଗରୁଡ଼ ! ଭାଇ, ତୁମେ ଯେପରି ସାହସ କଲ ଅନ୍ୟ କେହି ଏପରି ସାହସ କରିପାରିବ ନାହିଁ । ଏକାକୀ ସ୍ୱର୍ଗପୁରକୁ ଯାଇ ସବୁ ଦେବତାମାନେ ଦେଖୁଥିବା ଅବସ୍ଥାରେ ବଳପୂର୍ବକ ଅମୃତଭାଣ୍ଡକୁ ଉଠାଇ ଆଣିଲେ, ଏପରି ସାହସ ଓ ଧୈର୍ଯ୍ୟର କାର୍ଯ୍ୟ ତୁମେ ସାଧିତ କରି ମଧ୍ୟ ଅନୁପମ ଅମୂଲ୍ୟ ଅମୃତ ପାନ କରିବାର ଲୋଭ ତୁମ ମନ ଭିତରେ ପ୍ରବେଶ କରିନାହିଁ । ଏଣୁ ମୁଁ ତୁମର ଏହି ନିସ୍ପୃହତା ଭାବରେ ସନ୍ତୁଷ୍ଟହୋଇ ତୁମକୁ କିଛି ବରଦାନ କରିବାକୁ ଇଚ୍ଛା କରୁଛି, ତୁମେ ଯାହା ଚାହୁଁଛ ତାହା ମାଗି ନେଇପାର ।"

ଭଗବାନଙ୍କ କଥାଶୁଣି ଗରୁଡ଼ ନିର୍ଭୟଭାବରେ ବିନମ୍ର ସହକାରେ କହିଲେ - "ଦେବ ! ଯଦି ଆପଣ ମୋତେ ବରଦାନ କରିବାକୁ ଇଚ୍ଛା କରୁଛନ୍ତି ତେବେ ଏହି ବର ଦିଅନ୍ତୁ ଯେପରି ମୁଁ ସବୁବେଳେ ଆପଣଙ୍କଠାରୁ ଉଚ୍ଚରେ ରହିବି । ଆପଣଙ୍କ ଧ୍ୱଜାରେ ମୋର ନାମ ରହିବ । ଆପଣଙ୍କୁ ଗରୁଡ଼ଧ୍ୱଜ ବୋଲି କୁହାଯିବ, ଫଳରେ ମୁଁ ଅମୃତ ପାନ ନ କରି ମଧ୍ୟ ଅଜର ଅମର ତଥା ଅପରାଜିତ ହୋଇ ରହିବି ।"

ଅବିନାଶୀ ଭଗବାନ ନାରାୟଣ କହିଲେ "ତଥାସ୍ତୁ, ଗରୁଡ଼ । ସେଇଆ ହେଉ । ଆଜିଠାରୁ ତୁମେ ମୋର ଧ୍ୱଜାରେ ସ୍ଥାନ ପାଇ ସଦା ଅଜର ଅମର ହୋଇ ରୁହ ।"

ଏକଥା ଶୁଣି ଗରୁଡ଼ ନିର୍ଭୟରେ କହିଲେ—"ହେ ମଧୁସୂଦନ ! ମୁଁ ଆପଣଙ୍କୁ ମଧ୍ୟ କିଛି ବରଦାନ କରିବାକୁ ଇଚ୍ଛା କରୁଅଛି । ଆପଣ ମୋଠାରୁ ନିଜ ଇଚ୍ଛାରେ ବର ମାଗିନିଅନ୍ତୁ ।"

ଏହାଶୁଣି ହସି ହସି ଶ୍ରୀହରି କହିଲେ—"ହେ ପକ୍ଷିରାଜ ! ଯଦି ଆପଣ ମୋତେ ବରଦାନ କରିବାକୁ ଇଚ୍ଛା କରୁଛନ୍ତି ତେବେ ଆପଣ ମୋର ବାହନ ହୋଇ ରହନ୍ତୁ । ମୁଁ ଆପଣଙ୍କ ପିଠିରେ ବସି ଉଡ଼ି ବୁଲିବି ।"

ଗରୁଡ଼ କହିଲେ 'ଠିକ୍ ଅଛି ! ଆପଣ ଯାହା କହିଲେ ସେଥିରେ ମୁଁ ଏକମତ । ଏତେବେଳ ଯାଏ ମୁଁ ଦୁଷ୍ଟ ନାଗମାନଙ୍କର ଦାସହୋଇ ସେମାନଙ୍କୁ ପିଠିରେ ବସାଇ ଉଡ଼ାଉଥିଲି । ଆଜିଠାରୁ ଶଙ୍ଖ ଚକ୍ରଧାରୀଙ୍କୁ ଧାରଣ କରି ବୁଲିବି ।" ଏତିକ କହି ଗରୁଡ଼ ଭଗବାନଙ୍କୁ ପ୍ରଣାମ କରି ଯେମିତ ଉଡ଼ିଗଲେ ଭଗବାନ ସେଠାରୁ ସେମିତ ଅନ୍ତର୍ଦ୍ଧାନ ହୋଇଗଲେ ।

ସୂତ କହିଲେ—"ଆପଣ ପଚାରିଥିଲେ ଗରୁଡ଼ ଭଗବାନଙ୍କର ବାହନ କପରି ହେଲେ, ସେ କଥା ମୁଁ ଆପଣଙ୍କୁ କହିଲି । ଏବେ କୁହନ୍ତୁ ଆପଣ ଆଉ କ'ଣ ଜାଣିବାକୁ ଇଚ୍ଛା କରୁଛନ୍ତି ?"

ଏହାପରେ ଶୌନକ କହିଲେ—"ସୂତ ମହାଶୟ ! ଆପଣ ଗରୁଡ଼ଙ୍କର ଅଦ୍ଭୁତ କଥା ଶୁଣାଇଲେ । ମହାଭାଗ ! ଗରୁଡ଼ଙ୍କର ଏହି ବଳ ପରାକ୍ରମ ଜାଣି ମୋର ଆଶ୍ଚର୍ଯ୍ୟର ସୀମା ରହିଲିନାହିଁ । ଇନ୍ଦ୍ର ଯାହାଙ୍କ ସମ୍ମୁଖରେ ଥର ଥର ହୋଇ କମ୍ପୁଥିଲେ ସେ ସାଧାରଣ ପୁରୁଷ ନୁହଁନ୍ତି । ଗରୁଡ଼ଙ୍କଠାରେ ଏତେ ବଳ କେଉଁଠୁ ଆସିଲା ? କାହାର ବରଦାନରେ ସେ ଏପରି ବଳୀୟାନ ହୋଇଥିଲେ, ଏହିକଥା ମୋତେ ଆପଣ ଦୟାକରି କହନ୍ତୁ ।"

ଏ କଥା ଶୁଣି ସୂତ କହିଲେ—"ଯିଏ ଅନ୍ୟର ଦୁର୍ବଳତା ଦେଖି ହସେ, ତାକୁ ନିଜେ ମଧ୍ୟ ଆପେ ଆପେ ଲଜ୍ଜିତ ହେବାକୁ ପଡ଼େ । ଏହା ହେଉଛି ସଂସାରର ନିୟମ ଯିଏ ଯାହା କରେ ସେ ସେଇଆ ଭୋଗକରେ ।"

କେଉଁଠି ହେଉଛି ଥରେ କଶ୍ୟପ ମୁନି ଯଜ୍ଞ କରୁଥିଲେ । ଦେବତା, ଋଷି, ଅସୁର, ପଶୁ, ପକ୍ଷୀ ଆଦି ସମସ୍ତେ ତାଙ୍କର ପୁତ୍ର ଥିବାରୁ ପିତାଙ୍କ ଯଜ୍ଞରେ ସମସ୍ତେ ସହଯୋଗ କରିବା ନିମନ୍ତେ ଆସିଥିଲେ । କଶ୍ୟପଙ୍କର କିଛି ପୁତ୍ର ବାଲଖିଲ୍ୟ ଋଷି ନାମରେ ଥିଲେ । ସେମାନଙ୍କର ଆକାର ଆଙ୍ଗୁଠିର ଟିପ ପରି ସମାନ । ଗଛ ଉପରେ ଓହଳି କରି ସେମାନେ ତପସ୍ୟା କରୁଥିଲେ । ପିତା ଯଜ୍ଞ କରୁଛନ୍ତି ଶୁଣି ସେମାନେ ଆସି ପହଞ୍ଚିଲେ । କଶ୍ୟପ ସ୍ନେହବଶତଃ ଦେବତାମାନଙ୍କର ରାଜା ଇନ୍ଦ୍ରଙ୍କୁ ତଥା

ଏହି ଋଷିମାନଙ୍କୁ ଯଜ୍ଞକାଠ ଆଣିବାକୁ ବଣକୁ ପଠାଇଲେ । ଇନ୍ଦ୍ର ଖୁବ୍ ବଳୁଆ ଓ ଡେଙ୍ଗା ଥିବାରୁ ସେ ଗୋଟିଏ ଖୁବ୍ ବଡ଼ ଓ ଭାରୀ କାଠ ଧରି ଆସିଲେ । ଏମାନେ ବଟରି ଆଙ୍ଗୁଠିର ଟିପ ଭଳି ଥିବାରୁ ହଜାରେ ପର୍ଯ୍ୟନ୍ତ ଏକାଠି ହୋଇ ଗୋଟିଏ ଗ୍ଲେଟିଆ କାଠକୁ ଧରି ଆସୁଥିଲେ । ରାସ୍ତାରେ ଗାଈଖୁରା ଭଳି ଗୋଟିଏ ଜଳାଶ୍ରୟ ପଡ଼ିଲା । ଏହି ଜଳାଶ୍ରୟରେ ଏମାନେ ସମସ୍ତେ ପଡ଼ିଯାଇ ଉବୁଟୁବୁ ହେବାକୁ ଲାଗିଲେ । କାଠ ଖଣ୍ଡିକ ଆଉ ଗୋଟିଏ ପାଖରେ ପଡ଼ି ବେଙ୍ଗ ଫୁଲା ସଦୃଶ ଭାସିବାକୁ ଲାଗିଲା । ଏ ଘଟଣା ଦେଖି ଇନ୍ଦ୍ରଙ୍କୁ ହସ ଲାଗିଲା । ସେ କହିଲେ-"ଦେଖ ଏମାନେ ମଧ୍ୟ ଜୀବ । ଗାଈ ଖୁରା ସଦୃଶ ଜଳାଶୟରେ ପଡ଼ି କେମିତି ବୁଡ଼ି ଯାଉଛନ୍ତି ।"

ବାଲଖିଲ୍ୟମାନଙ୍କର ଶରୀର ଦେଖିବାକୁ କ୍ଷୁଦ୍ର । କିନ୍ତୁ ତପସ୍ୟାରେ ଇନ୍ଦ୍ରଙ୍କୁ ସେମାନେ ବଳି ଯାଇଥିଲେ । ଏଣୁ ଇନ୍ଦ୍ରଙ୍କର ଏହି ପରିହାସ କଥା ଶୁଣି ସେମାନଙ୍କ ମନରେ କ୍ରୋଧ ଜାତ ହେଲା । ସେମାନେ କହିଲେ—"ଆଚ୍ଛା ! ପିଲା ! ଦେଖେଇଦେବୁ ଆମେ କି ରକମର । ତୋତେ ଇନ୍ଦ୍ର ପଦରୁ ଯଦି ନ ହଟାଇବୁ ତେବେ ଆମମାନଙ୍କର ନାମ ବାଲଖିଲ୍ୟ ନୁହେଁ ।" ଏତକ କହି ସେମାନେ ଆଉ ଗୋଟିଏ ଦ୍ୱିତୀୟ ଇନ୍ଦ୍ର ପାଇଁ ଯଜ୍ଞ କରିବାକୁ ଲାଗିଲେ ।

ଏବେ ଇନ୍ଦ୍ରଙ୍କ ମନରେ ଚେତନା ପଶିଲା । ସେ ଦୌଡ଼ି ଦୌଡ଼ି ଆସି ପିତାଙ୍କ ପାଖରେ ପହଞ୍ଚି ସବୁକଥା କହିଲେ । କଶ୍ୟପ ବାଲଖିଲ୍ୟମାନଙ୍କ ପାଖରେ ଯାଇ ପହଞ୍ଚି ବହୁତ ବୁଝେଇ ଶୁଝେଇ କହିଲେ—"ଆରେ ବାପ ! କାହିଁକି ଝଗଡ଼ା ବଢ଼ାଉଛ । ଇନ୍ଦ୍ରଙ୍କୁ ଇନ୍ଦ୍ର ପଦରେ ରହିବାକୁ ଦିଅ । ତାଙ୍କୁ ଇନ୍ଦ୍ର ଆସନରୁ ବାହାର କରିଦେଲେ ତୁମକୁ କ'ଣ ମିଳିବ ?"

ବ୍ରହ୍ମା ଏହି ଇନ୍ଦ୍ରଙ୍କୁ ତ୍ରିଲୋକର ସ୍ୱାମୀ କରିଛନ୍ତି । ବର୍ତ୍ତମାନ ତୁମେ ଦ୍ୱିତୀୟ ଇନ୍ଦ୍ର ତିଆରି କରୁଅଛ । ଏଭଳି ଅନ୍ୟାୟ କରନାହିଁ । ବ୍ରହ୍ମାଙ୍କର ମାନମର୍ଯ୍ୟାଦାକୁ ତୁମେମାନେ ମାନିବ ନାହିଁ ତ ଆଉ କିଏ ମାନିବ !"

ବାଲଖିଲ୍ୟମାନେ କହିଲେ -"ତେବେ ମହାରାଜ ! ଆମେମାନେ ସବୁ ଏତେ ଯାଗ ଯଜ୍ଞ କରୁଛୁ ଏ କ'ଣ ସବୁ ବ୍ୟର୍ଥରେ ପରିଣତ ହେବ !"

କଶ୍ୟପ କହିଲେ—"ନା, ନା, ସେକଥା ନୁହେଁ । ମୁଁ କ'ଣ କହିଲି ତୁମର ଏହି ଯଜ୍ଞ ଅନ୍ୟଥା ହେଉ ନା ତୁମର ସଂକଳ୍ପ ବ୍ୟର୍ଥ ହେଉ ବୋଲି । ଆପଣମାନଙ୍କ ଯଜ୍ଞର ଫଳ ସ୍ୱରୂପ ଇନ୍ଦ୍ର ନିଶ୍ଚୟ ଉତ୍ପନ୍ନ ହେବେ । କିନ୍ତୁ ସେ ଦେବତାମାନଙ୍କର ଇନ୍ଦ୍ର ନହୋଇ ପକ୍ଷୀମାନଙ୍କର ଇନ୍ଦ୍ର ଖଗେନ୍ଦ୍ର ହେବେ । ସେ ବଳ, ପରାକ୍ରମ, ତେଜ ଏବଂ କୀର୍ତ୍ତିଦ୍ୱାରା ସବୁଠାରୁ ଉପରେ ରହିବେ । ତାଙ୍କ ସମ୍ମୁଖରେ ଇନ୍ଦ୍ର ମଧ୍ୟ ଘୋର ଲଜ୍ଜିତ ହେବେ ।"

ସୂତ କହିଲେ ମୁନି ! ଏହି ବାଲଖିଲ୍ୟମାନଙ୍କ ଯଜ୍ଞର ଫଳ ସ୍ୱରୂପ ଗରୁଡ଼ ଏତେ ବଳବାନ ହୋଇଥିଲେ ଯଦ୍ୱାରା କି ଇନ୍ଦ୍ର ମଧ୍ୟ ତାଙ୍କ ପାଖରେ ପରାଜିତ ହୋଇଥିଲେ ।"

ଏହା ଶୁଣିସାରି ଶୌନକ ପଚାରିଲେ – "ହଁ, ସୂତ ମହାଶୟ ! ତାପରେ ପୁଣି କ'ଣ ହେଲା ? ଗରୁଡ଼ ତାଙ୍କର ମା ବିନତାଙ୍କୁ ଦାସତ୍ୱରୁ ମୁକ୍ତ କଲେ କି ନାହିଁ ? ନାଗମାନେ ଅମୃତ ପାନ କଲେ ନା ନାହିଁ ?"

ଏହା ଶୁଣି ସୂତ କହିଲେ "ହଁ ମହରାଜ ! ଏହା ଏକ ଅସରନ୍ତି କାହାଣୀ, ତାହା ମୁଁ କେଉଁଯାଏ କହିବି ? ମୋର ଅଭିପ୍ରାୟ ତ ଆପଣଙ୍କର ଏହି ପ୍ରଶ୍ନର ଉତ୍ତର ଦେବା ପର୍ଯ୍ୟନ୍ତ ଥିଲା । 'ଗରୁଡ଼ ଭଗବାନଙ୍କର ବାହନ କିପରି ହେଲେ' । ପ୍ରଶ୍ନର ଉତ୍ତର ତ ମୁଁ ଦେଇସାରିଛି । ବର୍ତ୍ତମାନ ସଂକ୍ଷେପରେ ଏହା ଜାଣିରଖ ଇନ୍ଦ୍ର ଏବଂ ଗରୁଡ଼ଙ୍କ ମଧ୍ୟରେ ପରସ୍ପର ମିତ୍ରତା ଆସିଯାଇଛି । ତାଙ୍କ ଦୁହିଁଙ୍କ ଭିତରେ ଏପରି ଏକ ସନ୍ଧି ହେଲା "ଗରୁଡ଼ ଅମୃତକୁ ନେଇଯାଇ ନାଗଙ୍କ ସାମନାରେ ରଖିଦେବେ, ସେତେବେଳେ ନାଗମାନେ ନିଶ୍ଚୟ କହିବେ ତୁମେ ମା ପୁଅ ଦୁହେଁଯାକ ଆମ ଦାସତ୍ୱରୁ ମୁକ୍ତ ହେଲ । ଅବକାଶ ଦେଖି ଇନ୍ଦ୍ର ଯାଇ ସେହି ଅମୃତକୁ ଉଠାଇ ଆଣିବେ ।"

ଠିକ୍ ସେଇଆ ହେଲା । ଗରୁଡ଼ ନାଗମାନଙ୍କୁ କହିଲେ— "ନିଅ ଭାଇ, ଅମୃତ ନିଅ ।" ଅମୃତ ପାଇ ସେମାନେ ଆନନ୍ଦିତ ହୋଇ କହିଲେ "ଆଚ୍ଛା ଭାଇ, ଅମୃତ ଆଣିଲ, ଆମେ ଯାଉଛୁ ସ୍ନାନ କର୍ମ ସାରି ପବିତ୍ର ଭାବରେ ଆସି ଏହି ପବିତ୍ର ଜିନିଷକୁ ପାନ କରିବୁ ।"

ଗରୁଡ଼ କହିଲେ— "ହଁ ତୁମେମାନେ ସ୍ନାନ କରିବାକୁ ଯାଅ । ମୁଁ ଏହି ଅମୃତକୁ ଏହି କୁଶ ଉପରେ ରଖିଦେଇ ଯାଉଛି । କୁହନ୍ତୁ ଏବେ ଆମେମାନେ ଦାସତ୍ୱରୁ ମୁକ୍ତ ହେଲୁ ନା ନାହିଁ ?

ନାଗମାନେ କହିଲେ— "ହଁ ଭାଇ, ମୁକ୍ତ ହୋଇଗଲ, ମୁକ୍ତ ହୋଇଗଲ" । ଏତିକି କହି ସେମାନେ ଗାଧୋଇବା ପାଇଁ ତରତର ହୋଇ ବାହାରିଗଲେ । ଏହି ସମୟରେ ଦେବରାଜ ଇନ୍ଦ୍ର ଆସି ପହଞ୍ଚି ଚଟ୍‌କରି ଅମୃତ ଭାଣ୍ଡକୁ ଉଠାଇ ନେଇ ଚାଲିଗଲେ । ନାଗମାନେ ତାହା ଦେଖି ଦେଖି କେବଳ ରହିଗଲେ । "ଏହା ସତ୍ୟ ଯିଏ ଅନ୍ୟକୁ ଠକେ, ସେହିଭଳି ସେ ଦିନେ ନା ଦିନେ ଠକିଯାଏ ।" ଶୁଣନ୍ତୁ ! ବିନତାନନ୍ଦନ ଶ୍ରୀଗରୁଡ଼ ନିଜର ବଳ ପରାକ୍ରମ ତଥା ନିର୍ଲୋଭ ଗୁଣରେ ଭଗବାନ ବାସୁଦେବଙ୍କୁ ପ୍ରସନ୍ନ କରିଥିଲେ । ସେ ଇନ୍ଦ୍ରଙ୍କର ମିତ୍ର ହେଲେ, ସଉତୁଣୀର ବନ୍ଧନରୁ ଆପଣାର ମାତାଙ୍କୁ ଉଦ୍ଧାର କଲେ ଏବଂ ଦୁଷ୍ଟ ନାଗମାନଙ୍କୁ ମଧ୍ୟ ଉଚିତ୍ ଶିକ୍ଷା ପ୍ରଦାନକଲେ । ତାର୍କ୍ଷ୍ୟ ପୁତ୍ର ଗରୁଡ଼ ନିଜ ଯଶରେ ସମଗ୍ର ସଂସାରକୁ ପୂର୍ଣ୍ଣ କରିଦେଲେ ।

ଭଗବାନ ତାଙ୍କ ପିଠିରେ ଚଢ଼ି ଯେତେବେଳେ ଅସୁରମାନଙ୍କୁ ସଂହାର କରନ୍ତି, ଗରୁଡ଼ ନିଜର ପକ୍ଷ ଦ୍ୱାରା ଲକ୍ଷ ଲକ୍ଷ ଅସୁରମାନଙ୍କୁ ଯମପୁରକୁ ପଠାଇ ଦେଉଥିଲେ । ସେ ଯେତେବେଳେ ଉଡ଼ୁଥାଆନ୍ତି ସେହି ସମୟରେ ତାଙ୍କ ପକ୍ଷରୁ ଶାମ ବେଦର ସୂକ୍ତଗୁଡ଼ିକ ଆପେ ଆପେ ବାହାରି ଆସୁଥାଏ । ତାଙ୍କର ପ୍ରତୀକ ଗରୁଡ଼ ଘଣ୍ଟ । ଯିଏ ପୂଜାରେ ଘଣ୍ଟକୁ ବଜାଏ ବିନା ମନ୍ତ୍ରରେ ତାର ପୂଜା ସଫଳ ହୁଏ । ଏହା ମୁଁ ଅତ୍ୟନ୍ତ ସଂକ୍ଷେପରେ ଆପଣଙ୍କୁ ଭଗବାନଙ୍କ ବାହନ ଗରୁଡ଼ ଓ ଭଗବାନ ସୂର୍ଯ୍ୟଙ୍କ ସାରଥୀ ଅରୁଣଙ୍କ ବୃତ୍ତାନ୍ତ କହିଲି । ବର୍ତ୍ତମାନ ଆପଣ ଆଉ କ'ଣ ଶୁଣିବାକୁ ଇଚ୍ଛା କରୁଛନ୍ତି ?''

ଏହା ଶୁଣିକରି ଶୌନକ କହିଲେ—''ସୂତ ମହାଭାଗ ! ଆପଣ ଗରୁଡ଼ଙ୍କର ବଡ଼ ଅଦ୍ଭୁତ ଚରିତ ଶୁଣାଇଲେ । ବର୍ତ୍ତମାନ ଆପଣ ମୋତେ ଦକ୍ଷ ପ୍ରଜାପତିଙ୍କର ଅନ୍ୟ କନ୍ୟାମାନଙ୍କର ବଂଶ ସମ୍ପର୍କରେ କୁହନ୍ତୁ । ''ଆପଣ କହିଥିଲେ, ଦକ୍ଷ ତାଙ୍କର ୨୭ଟି କନ୍ୟା ଚନ୍ଦ୍ରଙ୍କୁ ଦେଇଥିଲେ । ଏହି ୨୭ ଜଣଙ୍କର କେତୋଟି ସନ୍ତାନ ହୋଇଥିଲେ ?''

ସୂତ ହସି ହସି କହିଲେ— ''ମହାରାଜ ! ଚନ୍ଦ୍ର ଅଭିଶାପ ଯୋଗୁ ନିଃସନ୍ତାନ ଥିଲେ । ତାଙ୍କର ଏହି ୨୭ ପତ୍ନୀମାନଙ୍କ ମଧ୍ୟରୁ କାହାରି ଗୋଟିଏ ହେଲେ ସନ୍ତାନ ଜାତ ହୋଇ ନଥିଲେ ।''

ଏହାପରେ ଶୌନକ ପଚାରିଲେ— ''ମହାଭାଗ ! ଚନ୍ଦ୍ରଙ୍କୁ କିଏ ଅଭିଶାପ ଦେଇଥିଲା ? କାହିଁକି ତାଙ୍କ ପତ୍ନୀମାନଙ୍କର ସନ୍ତାନ ହେଲନାହିଁ । ଏହି ସବୁ କଥା ଆପଣ ମୋତେ ଦୟାକରି କହନ୍ତୁ ।''

ସୂତ କହିଲେ — ''ଠିକ୍ ଅଛି, ମହାରାଜ ! ଶୁଣନ୍ତୁ ମୁଁ ବର୍ତ୍ତମାନ ଆପଣଙ୍କୁ ଚନ୍ଦ୍ରଙ୍କ ଅଭିଶାପ କଥା ଶୁଣାଉଛି, ସାବଧାନ ହୋଇ ଶୁଣନ୍ତୁ ।''

—ଛପ୍ପୟ—

ବିନତା କଦ୍ରୂ ବହିନ ସୌତିୟା ଡାହ ଭୟୋ ମନ ।
ଉଚୈଃଶ୍ରବା ନିମିତ୍ତ ଦାସତା କୋ କୀନ୍ହୋ ପ୍ରନ ॥
କଦ୍ରୂ ରୁଁଗଟି କରୀ ପୁଁଛ ସୁତଅହି ଲିପଟାୟେ ।
ଦାସୀ ବିନତା ବନୀ ଗରୁଡ଼ ଜନି ଦୁଃଖ ଭୁଲାୟେ ॥
ଅରୁଣ ଭୟେ ଆଧେ ଗରୁଡ଼, ଅମୃତ ଲାଇ ଅହି ପୁନି ହନେ ।
ବରତେ ହରି ଧ୍ୱଜ ମହଁ ରହେଂ, ଇହି ବର ଦେ ବାହନ ବନେ ॥



# ଚନ୍ଦ୍ରଙ୍କୁ ଦକ୍ଷଙ୍କର ଅଭିଶାପ

**କୃତ୍ତିକାଦୀନି ନକ୍ଷତ୍ରାଣୀନ୍ଦୋଃ ପତ୍ନ୍ୟସ୍ତୁ ଭାରତ ।**
**ଦକ୍ଷଶାପସ୍ତୋଽନପତ୍ୟସ୍ତାସୁ ଯକ୍ଷ୍ମଗ୍ରହାର୍ଦ୍ଦିତଃ ॥**
**ପୁନଃ ପ୍ରସାଦ୍ୟ ତଂ ସୋମଃ କଳା ଲେଭେ କ୍ଷୟେ ଦିତାଃ ॥**

[ ଶ୍ରୀ ଭାଗବତ ॥ ୬ଷ୍ଠ ସ୍କନ୍ଧ ॥ ୬ଷ୍ଠ ଅଧ୍ୟାୟ ॥ ୨୩ ଶ୍ଳୋକ ]

**ଛପ୍ପୟ**

**ସତ୍ତାଇସ ନକ୍ଷତ୍ର ଚନ୍ଦ୍ର ପତ୍ନୀ ସୁକୁମାରୀ ।**
**ଔରନି ତେଂ ନହିଁ ନେହ ରୋହିଣୀ ଅତିଶୟ ପ୍ୟାରୀ ॥**

**ପିତୁ ସମୀପ ସବ ଗଈଁ ଦୁଃଖ କୀ କଥା ସୁନାଈ ।**
**ଦୟୋଦକ୍ଷ ମୁନି ଶାପ ହୋୟ କ୍ଷୟ ସୋମ ସଦାଈ ॥**
**ବାତ ଶାପ କୀ ସୋମନେ, ସୁନୀ ବହୁତ ଚିନ୍ତିତ ଭୟେ ।**
**ଅପରାଧୀ ବନି ସସୁରକେ, ବିନୟ ସହିତ ମୁନି ଢିଁଗ ଗୟେ ॥**

ରୂପ ମଦ, ଅଧିକାର ମଦ, ଯୌବନ ମଦ ଓ ଐଶ୍ୱର୍ଯ୍ୟ ମଦ ଏହି ସବୁ ମଦ ମଣିଷକୁ ପାଗଳ କରି ପକାନ୍ତି । ବିବେକୀ, ଜ୍ଞାନୀ, ବୁଦ୍ଧିମାନ ବ୍ୟକ୍ତିମାନେ ଏହି ମଦ ଭିତରରେ ପଡ଼ିଯାଇ ନିଜକୁ ନିଜେ ଭୁଲିଯାଆନ୍ତି । ଯେଉଁମାନେ ଭଗବାନ୍ଙ୍କ ଚରଣରେ ସର୍ବଦା ଶରଣ ପଶିଥାଆନ୍ତି, ସିଏ ଭଗବାନଙ୍କ କୃପାପାତ୍ର ସେହିଁ କେବଳ ଏହି ସବୁ ମଦରୁ ରକ୍ଷା ପାଇଥାଆନ୍ତି । ନ ହେଲେ ଏହି ସବୁ ମଦ ପ୍ରାଣୀମାନଙ୍କୁ ପାଗଳ କରିଦିଏ ।

ସୂତ କହିଲେ "ମୁନି ! ଏ କଥା ମୁଁ ପ୍ରଥମରୁ କହି ରଖିଛି ଯେ, କୃତ୍ତିକାଠାରୁ ଭରଣୀ 'ପର୍ଯ୍ୟନ୍ତ '(ପ୍ରଥମେ ଅଶ୍ୱିନୀଠାରୁ ନକ୍ଷତ୍ରମାନଙ୍କର ଗଣନା ନହୋଇ କୃତ୍ତିକାଠାରୁ ହେଉଥିଲା ଏବଂ ଶେଷରେ ଅଶ୍ୱିନୀ ଭରଣୀକୁ ମିଶାଇ ୨୭ କରାଯାଉଥିଲା ।) ଏଇ ଯେଉଁ କୃତ୍ତିକା, ରୋହିଣୀ, ମୃଗଶିରା, ଆର୍ଦ୍ରା, ପୁନର୍ବସୁ, ପୁଷ୍ୟା, ଅଶ୍ଳେଷା, ମଘା, ପୂର୍ବ-

ଫାଲ୍‌ଗୁନୀ, ଉତ୍ତର ଫାଲ୍‌ଗୁନୀ, ହସ୍ତା, ଚିତ୍ରା, ସ୍ୱାତୀ, ବିଶାଖା, ଅନୁରାଧା, ଜ୍ୟେଷ୍ଠା, ମୂଳା, ପୂର୍ବାଷାଢ଼ା, ଉତ୍ତରାଷାଢ଼ା, ଶ୍ରବଣା, ଧନିଷ୍ଠା, ଶତଭିଷା, ପୂର୍ବାଭାଦ୍ରପଦ, ଉତ୍ତରାଭାଦ୍ରପଦ, ରେବତୀ, ଅଶ୍ୱିନୀ ଏବଂ ଭରଣୀ ୨୭ ନକ୍ଷତ୍ର ଦକ୍ଷଙ୍କର ପ୍ରିୟ କନ୍ୟା ଭାବରେ ବିବେଚିତ । ଦକ୍ଷ ଏହିସବୁ କନ୍ୟାମାନଙ୍କର ବିବାହ ଚନ୍ଦ୍ରଙ୍କ ସହି କରିଥିଲେ ।

ଚନ୍ଦ୍ର ଅତ୍ରିଙ୍କ ପୁତ୍ର । ସେ ଥିଲେ ଜନ୍ମରୁ ସୁନ୍ଦର । ଘୋର ତପସ୍ୟା କରି ସେ ବନସ୍ପତି ସ୍ୱାମୀତ୍ୱ ଲତା, ଗୁଳ୍ମଙ୍କର ତଥା ବ୍ରାହ୍ମଣଙ୍କ ଇଶ୍ୱରତ୍ୱପ୍ରାପ୍ତ ହୋଇଥିଲେ । ରାଜସୂୟ ଯଜ୍ଞ କରି ସେ ସମସ୍ତଙ୍କର ତେଜକୁ ମଳିନ ପକାଇ ଦେଇଥିଲେ । ଏକରେ ସେ ଥିଲେ ଯୁବକ, ସଂସାରରେ ସବୁଠାରୁ ସୁନ୍ଦର ତଥା ତପସ୍ୟାର ପ୍ରଭାବରେ ମହାନ ତେଜସ୍ୱୀ । ବ୍ରହ୍ମାଙ୍କ ଅନୁଗ୍ରହରୁ ସେ ଐଶ୍ୱର୍ଯ୍ୟପ୍ରାପ୍ତ ହୋଇ ସେ ବହୁ ଅନ୍ୟାୟ ଅନାଚାର କରିବାକୁ ଲାଗିଲେ । ଏପରି କି ସେ ତାଙ୍କର ଗୁରୁପତ୍ନୀ ତାରାଙ୍କୁ ମଧ୍ୟ ବଳାତ୍କାର କରି ନିଜ ଘରେ ଆଣି ରଖିଲେ । ଏହି ତାରାଙ୍କ ପାଇଁ ଦେବତା ଓ ଅସୁରଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଯାହାହେଉ ବ୍ରହ୍ମାଙ୍କ ମଧ୍ୟସ୍ଥତାରେ ଏହି ଘଟଣାର ଏକ ପ୍ରକାର ସମାଧାନ କରାଯାଇଥିଲା । ପ୍ରଜାପତି ଦକ୍ଷ ଚନ୍ଦ୍ରଙ୍କୁ ସର୍ବ ସମର୍ଥ, ସୁନ୍ଦର ଯୋଗ୍ୟଥିବାର ଲକ୍ଷ୍ୟକରି ନିଜର ୨୭ କନ୍ୟାଙ୍କୁ ତାଙ୍କ ସଙ୍ଗେ ବିବାହ କରିଦେଲେ । ନିୟମାନୁସାରେ ଚନ୍ଦ୍ରଙ୍କର ଉଚିତ ଥିଲା ସମସ୍ତ ପତ୍ନୀଙ୍କ ସହି ସମାନ ବ୍ୟବହାର ପ୍ରଦର୍ଶନ କରିବା, ସମସ୍ତଙ୍କୁ ସମାନ ଭାବରେ ପ୍ରେମଭାବ ପ୍ରଦର୍ଶନ କରିବା । କିନ୍ତୁ ସେ ତାହା ନକରି ତାଙ୍କ ସମସ୍ତ ସ୍ନେହ ପ୍ରେମଭାବ କେବଳ ରୋହିଣୀ ଉପରେ ଢାଳିଦେଲେ । ରୋହିଣୀ ବ୍ୟତୀତ ସେ ଅନ୍ୟ କୌଣସି ପତ୍ନୀ ପାଖକୁ ଯାଉନଥିଲେ ବା କାହାସହି କଥାବାର୍ତ୍ତା ମଧ୍ୟ ହେଉନଥିଲେ । ଚନ୍ଦ୍ରଙ୍କର ଏପରି ବ୍ୟବହାରରେ ଅନ୍ୟ ୨୬ ଜଣ ଯାକ ସ୍ତ୍ରୀ ତାଙ୍କ ଉପରେ ଘୋର ଅସନ୍ତୋଷ ହୋଇ ପଡ଼ିଲେ । ଏମାନେ ମଧ୍ୟ ଚନ୍ଦ୍ରଙ୍କୁ ବହୁବାର ପ୍ରାର୍ଥନା କରି କହିଲେ -- ନାଥ ! ଆମର ତ କିଛି ଅଧିକାର ଅଛି । କିନ୍ତୁ ଚନ୍ଦ୍ର ସେମାନଙ୍କର କୌଣସି କଥା ଶୁଣିବାକୁ ଇଚ୍ଛା କଲେନାହିଁ । ଶେଷରେ ଏମାନେ ସମସ୍ତେ ନିରାଶ ହୋଇଯାଇ ପିତା ଦକ୍ଷଙ୍କ ପାଖରେ ପହଞ୍ଚି ସମସ୍ତ କଥା ଗୋଟି ଗୋଟି କରି କହିଲେ । ଦକ୍ଷ ଆସି ଚନ୍ଦ୍ରଙ୍କୁ ବହୁ ପ୍ରକାରରେ ବୁଝାସୁଝା କଲେ କିନ୍ତୁ ଚନ୍ଦ୍ର ତାଙ୍କର କୌଣସି କଥା ମାନିଲେ ନାହିଁ କି ଶୁଣିଲେ ନାହିଁ । ଶେଷରେ ଦକ୍ଷ ପ୍ରଜାପତି ରାଗିଯାଇ ଚନ୍ଦ୍ରଙ୍କୁ ଅଭିଶାପ ଦେଲେ— ତୁମେ ମୋର କନ୍ୟାମାନଙ୍କ ମଧ୍ୟରେ ଭେଦଭାବ ରଖିଅଛ ଏଣୁ ତୁମକୁ କ୍ଷୟରୋଗ ବା ରାଜଯକ୍ଷ୍ମା ରୋଗ ତୁମକୁ ଗ୍ରାସକରୁ ।

ଦକ୍ଷ ପ୍ରଜାପତିଙ୍କର ଅଭିଶାପ କେବେହେଲେ ଅନ୍ୟଥା ହେବାର ନୁହେଁ । ଚନ୍ଦ୍ର ରାଜଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଲେ । ତାଙ୍କର କଳା ଦିନକୁ ଦିନ କ୍ଷୀଣ-ହେବାର ସେ ଚିନ୍ତିତ ହୋଇ ପଡ଼ିଲେ । ଯାହାକୁ ରାଜଯକ୍ଷ୍ମା ରୋଗ ଥରେ ଆକ୍ରାନ୍ତ

କରେ ତାର ବଞ୍ଚିବାର ଆଶା କମ୍ । ଚନ୍ଦ୍ର ଯେତେବେଳେ ଦେଖିଲେ ତାଙ୍କର ବିନାଶ ହୋଇଯିବ ସେତେବେଳେ ସେ ଦକ୍ଷପ୍ରଜାପତିଙ୍କୁ ପୁନର୍ବାର ପ୍ରାର୍ଥନା କଲେ ଓ ଭଗବାନ ଶିବଙ୍କର ଆରାଧନା କଲେ । ଶେଷରେ ଶିବଙ୍କ ପ୍ରସାଦରୁ ଓ ଦକ୍ଷଙ୍କ ଅନୁଗ୍ରହ ଫଳରେ "ତାଙ୍କର କଳା କୃଷ୍ଣ ପକ୍ଷରେ କ୍ଷୀଣହୋଇ ଶୁକ୍ଳ ପକ୍ଷରେ ପୂର୍ଣ୍ଣହେବ ।" ଏହି ବର ମିଳିଲା । ଯିଏ କ୍ଷୟ ରୋଗୀ ତାର ସନ୍ତାନ କପରି ହେବ । ଏଣୁ କଳାପ୍ରାପ୍ତି ହୋଇ ମଧ ତାଙ୍କର କୌଣସି ସନ୍ତାନ ହେଲେନାହିଁ । ସତେଇଶି ସ୍ତ୍ରୀ ନିଃସନ୍ତାନ ହୋଇ ରହିଲେ ।

ଏହାପରେ ଶନକ କହିଲେ — "ସୂତ ମହାଭାଗ ! ଆପଣ କହିଲେ ଯେ, ଚନ୍ଦ୍ରଙ୍କ ବଂଶ ବଢ଼ିଲା ନାହିଁ କିନ୍ତୁ କ୍ଷତ୍ରିୟମାନେ ସୂର୍ଯ୍ୟବଂଶୀ ଓ ଚନ୍ଦ୍ରବଂଶୀ ଭାବରେ ତ ଖ୍ୟାତ । ଚନ୍ଦ୍ରବଂଶରୁ ବୁଧ, ଇଲା, ପୁରୁରବା ଆଦି ମହାନ ରାଜର୍ଷି ମଧ ଜନ୍ମଲାଭ କରିଥିଲେ । ତାହାହେଲେ ସେମାନେ କପରି ଜନ୍ମଲାଭ କଲେ ?"

ଏହାପରେ ସୂତ କହିଲେ— "ମହାଭାଗ ! ମୋର କହିବାର ଅଭିପ୍ରାୟ ଏହା ନୁହେଁ ବା ମୁଁ କହୁନାହିଁ ଯେ ଷାଠିଏ ଚନ୍ଦ୍ରବଂଶ ପ୍ରଚଳିତ ନାହିଁ ବୋଲି । ମୁଁ ପ୍ରଜାପତି ଦକ୍ଷଙ୍କର ଷାଠିଏ କନ୍ୟାମାନଙ୍କର ବଂଶ ବର୍ଣ୍ଣନା କରୁଅଛି । ଏହି ଷାଠିଏ ମଧ୍ୟରୁ ୨୭ ଜଣ ହେଉଛନ୍ତି ଚନ୍ଦ୍ରଙ୍କର ପତ୍ନୀ । ଏହି ସତାଇଶ ଜଣଙ୍କର କୌଣସି ସନ୍ତାନ ସନ୍ତତି ନଥିଲେ । ବୁଧ ତ ଚନ୍ଦ୍ରଙ୍କର ପୁତ୍ର ଅଟନ୍ତି । କିନ୍ତୁ ଏହା କପରି ହେଲା ? ତାହାଙ୍କ କଥା ଆଗକୁ ଚନ୍ଦ୍ରବଂଶ ବର୍ଣ୍ଣନା ସମୟରେ କହିବି ।"

ଏହାଶୁଣି ଶୌନକ ପଚାରିଲେ — "ହଁ ମହାଭାଗ ! ଠିକ୍ କଥା । ଆପଣ ଦକ୍ଷଙ୍କର ଷାଠିଏ କନ୍ୟାମାନଙ୍କର ବଂଶ ବର୍ଣ୍ଣନା କରୁଥିଲେ । ସେମାନଙ୍କ ମଧ୍ୟରୁ ଧର୍ମଙ୍କର ଦଶପତ୍ନୀ, ଭୂତ ଅଙ୍ଗିରା ଏବଂ କୃଶାଶ୍ୱଙ୍କର ଦୁଇଟି ଲେଖାଏଁ ପତ୍ନୀଙ୍କର ଅର୍ଥାତ ଛ'ଟି କନ୍ୟାଙ୍କର, ତାର୍କ୍ଷ୍ୟଙ୍କର ଚାରୋଟି ପତ୍ନୀଙ୍କର ତଥା ଚନ୍ଦ୍ରଙ୍କର ସତେଇଶ ପତ୍ନୀମାନଙ୍କର ବୃତ୍ତାନ୍ତ ଆପଣ କହିଲେ । ଏହିପରି ଭାବରେ ସତଚାଳିଶ କନ୍ୟାଙ୍କ ସମ୍ବନ୍ଧରେ ଆପଣ ଶୁଣାଇଲେ, ଆଉ ଯେଉଁ ତେର ଜଣ ଭଗବାନ କଶ୍ୟପଙ୍କ ପତ୍ନୀମାନେ ରହିଗଲେ ସେମାନଙ୍କର ବୃତ୍ତାନ୍ତ ମୋତେ ଦୟାକରି କହନ୍ତୁ ।"

ଏହାପରେ ସୂତ ମହାଶୟ କହିଲେ— "ମହାଭାଗ ! ଏହି ତେରଜଣଙ୍କୁ ଲୋକମାତା ବୋଲି କୁହାଯାଏ । ଏମାନଙ୍କ ଦ୍ୱାରା ସୃଷ୍ଟି ଏପରି ବର୍ଦ୍ଧିତ ହେଲା ଯେ ଏହି ସମସ୍ତ ଚରାଚର ବିଶ୍ୱ ପୂର୍ଣ୍ଣ ହୋଇ ପଡ଼ିଲା । ବର୍ତ୍ତମାନ ମୁଁ ଏମାନଙ୍କ ବଂଶ ବର୍ଣ୍ଣନା କରିବି ଏହା ଆପଣ ପବିତ୍ର ହୃଦୟରେ ଶ୍ରବଣ କରନ୍ତୁ ।"

## ଛପପୟ

ଚନ୍ଦ୍ର ବିନୟ ବହୁ କରୀ ପ୍ରଜାପତି କିରପା କୀନ୍ହୀ ।
କୃଷ୍ଣ ପକ୍ଷ ଛଇ କଲା ହୋୟଁ କ୍ଷୟ ଆଜ୍ଞା ଦୀନ୍ହୀ ॥
ଶୁକ୍ଳ ପକ୍ଷ ମହଁ ପୂର୍ଣ୍ଣ ହୋୟ ଐସୋ ବର ଦୀନ୍ହୋଂ ।
ଅତି ଅନୁନୟ କର ଦକ୍ଷ ତୁଷ୍ଟ ଶଶି ନେ କର ଲୀନ୍ହୋ ॥

ଦକ୍ଷ ସୁତା ଦସ ସତ୍ତରହ, ସଂତତି ବିନୁ ସବ ରହି ଗଈଁ ।
ପକ୍ଷପାତ ପତି ନେ କରୟୋ, ଦୁଃଖିତ ସବନ୍ହଁ ଜାତେ ଭଈ ॥



# କଶ୍ୟପ ପତ୍ନୀମାନଙ୍କର ବଂଶ ବର୍ଣ୍ଣନ

ଶୃଣୁ ନାମାନି ଲୋକାନାଂ ମାତୃଣାଂ ଶଙ୍କରାଣି ଚ ।
ଅଥ କଶ୍ୟପପତ୍ନୀନାଂ ଯତ୍ପ୍ରସୂତମିଦଂ ଜଗତ୍ ॥
ଅଦିତିର୍ଦିତିର୍ଦନୁଃ କାଷ୍ଠା ଅରିଷ୍ଟା ସୁରସା ଇଲା ।
ମୁନିଃ କ୍ରୋଧବଶା ତାମ୍ରା ସୁରଭିଃ ସରମା ତିମିଃ ॥

[ ଶ୍ରୀଭାଗବତ ॥ ୬ଷ୍ଠ ସ୍କନ୍ଦ ॥ ୬ଷ୍ଠ ଅଧ୍ୟାୟ ॥ ୨୪, ୨୫ ଶ୍ଳୋକ ]

## ଛପ୍ପୟ

କାଷ୍ଠା କେ ସୁତ ଅଶ୍ୱ ସୁରଭି କେ ଗୌ ପଶୁଗନ ହୈ ।
ତିମି କେ ଜଲଚର ଜୀବ ଦନୂ କେ ସବ ଦାନବ ହୈ ॥
ଶରମା କେ ବ୍ୟାଘ୍ରାଦି ବାଜ ତାମ୍ରା କୀ ସନ୍ତତି ।
ସୁରଲଲନା ମୁନି ଜନୀ ଦୈତ୍ୟ ଦିତି କେ ହିଂସକ ଅତି ॥
କ୍ରୋଧବଶା କେ ସର୍ପଗନ, କରେଂ କ୍ରୋଧ ଜୋ ନିତ୍ୟ ହେଂ ।
ସୁରସା କେ ରାକ୍ଷସ ଭୟେ, ଅଦିତୀ କେ ଆଦିତ୍ୟ ହୈଂ ॥

ଆମ ସମସ୍ତଙ୍କର ପୂର୍ବପୁରୁଷ ଏକ, ମଣିଷ ଯଦି ଟିକିଏ ଉପରକୁ ନ ଗୃହିଁ ତଳକୁ ଲକ୍ଷ୍ୟକରେ, ଶାଖା ଗୁଡ଼ିକର ମହତ୍ୱ ନ ଦେଖି ମୂଳ ପ୍ରତି ଦୃଷ୍ଟି ଦିଏ ତେବେ ସେ କାହା ପ୍ରତି ଘୃଣାଭାବ ପ୍ରଦର୍ଶନ କରିବ ନାହିଁ । ଯାହାର କାହା ପ୍ରତି ଘୃଣାନାହିଁ ସେ ସମଦର୍ଶୀ ପୁରୁଷ ସଦା ସୁଖୀ । ପ୍ରାଚୀନ ପ୍ରଥା ଏପରି ଥିଲା ଯେ ସମସ୍ତେ ନିଜ ନିଜର ପୂର୍ବଜମାନଙ୍କର ନାମାବଳୀ ଶ୍ରବଣ କରୁଥିଲେ । ସୂତ, ମାଗଧ, ବନ୍ଦୀ ତଥା ଗାୟକ ଲୋକମାନେ ବଂଶର ପୂର୍ବପୁରୁଷମାନଙ୍କର କୀର୍ତ୍ତି ଗାୟନ କରୁଥିଲେ । ନିଜ ପୂର୍ବ ପୁରୁଷର କଥାଶୁଣିଲେ ଆମର ଉତ୍ସାହ ବଢ଼େ, ମନରେ ନିଜ ବଂଶର ଲୋକମାନଙ୍କ ପ୍ରତି ପ୍ରେମଭାବ ଜାଗ୍ରତ ହୁଏ । ଯଦି ଆମେ ଭାବନ୍ତେ ଯେ ପଶୁ, ପକ୍ଷୀ, ବ୍ୟାଘ୍ର, ଦୈତ୍ୟ, ଦାନବ, ଦେବତା ତଥା ମନୁଷ୍ୟ ଆଦି ସମସ୍ତେ

ଏକ ପିତା କଶ୍ୟପଙ୍କର ସନ୍ତାନ ଭାଇ, ଭାଇ, ତେବେ ଲଢ଼ାଇ ଝଗଡ଼ା, ରାଗ ଅହଂକାର ବହୁତ କମିଯାଆନ୍ତା ।

ଶ୍ରୀଶୁକଦେବ କହିଲେ —"ରାଜନ ! ମୁଁ ପ୍ରଜାପତି ଦକ୍ଷଙ୍କର ସତିଗ୍ଳଶି କନ୍ୟାଙ୍କ ସମ୍ପର୍କରେ କହିସାରିଛି । ବର୍ତ୍ତମାନ ଦକ୍ଷଙ୍କର ଶେଷ ତେରଟି କନ୍ୟାଙ୍କ କଥା ଶ୍ରବଣ କରନ୍ତୁ, ଯେଉଁମାନେ କି ଭଗବାନ କଶ୍ୟପଙ୍କର ପତ୍ନୀଭାବରେ ବିବେଚିତ । ଏମାନେ ହେଲେ ଅଦିତି, ଦିତି ଦନୁ, କାଷ୍ଠା, ଅରିଷ୍ଟା, ସୁରସା, ଇଲା, ମୁନି, କ୍ରୋଧବଶା, ତାମ୍ରା, ସୁରଭି, ସରମା, ଏବଂ ତିମି । ପ୍ରଥମେ ସୂଚୀକଟାହ ନ୍ୟାୟ, ଭାବରେ ଦିତି ଅଦିତିଙ୍କୁ ଛାଡ଼ି ଶେଷ ଏଗାର ଜଣଙ୍କ କଥା ସଂକ୍ଷେପରେ ବର୍ଣ୍ଣନା କରିବି । ଗୋଟିଏ କମାର ପାଖକୁ ଜଣେ ଲୋକ ଲୁହା ନେଇ କରି ପହଞ୍ଚି କହିଲା, ମୋତେ ଗୋଟିଏ ବଡ଼ କଡ଼ାଇ ତିଆରି କରିଦେ । ଯେତେବେଳେ କମାର ତାର ଅସ୍ତ୍ର ଶସ୍ତ୍ର ସଜାଡ଼ିକରି କଡ଼େଇ ତିଆରି ଆରମ୍ଭ କରିବାକୁ ଯାଉଛି, ଆଉ ଗୋଟିଏ ଲୋକ ପହଁଞ୍ଚି କହିଲା ମୋତେ ଗୋଟିଏ ଛୁଞ୍ଚି ତିଆରି କରି ଦେ । ନିୟମ ଅନୁସାରେ ଯିଏ ଆଗ ଆସିଛି ତା କାମ ଆଗ କରିବାର କଥା । କଡ଼େଇ ତିଆରି ପାଇଁ ବହୁତ ପରିଶ୍ରମ ଓ ସମୟ ଲାଗିବ । ଛୁଞ୍ଚି କମ୍ ସମୟ ମଧ୍ୟରେ ତିଆରି ହୋଇ ପାରିବ । ଛୋଟିଆ କାମଟା ଏଣୁ କମାର ଆଗ କଡ଼େଇ ତିଆରି ନକରି ଛୁଞ୍ଚିଟି ତିଆରି କରିଦେଲା । ଏହାର ନାମ ହେଲା "ଛୁଞ୍ଚି ତିଆରି ନ୍ୟାୟ ।" ପ୍ରଥମେ ସଂକ୍ଷେପଭାବରେ ହେଉଥିବା କାମକୁ କରି ସାରିବା ପରେ ବହୁ ସମୟ ଦରକାର ହେଉଥିବା କାମରେ ହାତ ଦେବ ।

ହଁ, ରାଜା ! ଏବେ ଆପଣ କଶ୍ୟପ ପତ୍ନୀଙ୍କର ସନ୍ତାନ ସନ୍ତତିଙ୍କର କଥା ଅତ୍ୟନ୍ତ ଶ୍ରଦ୍ଧା ଓ ସାବଧାନତା ସହକାରେ ଶୁଣନ୍ତୁ । କଶ୍ୟପଙ୍କର ତିମି ନାମ୍ନୀ ପତ୍ନୀଠାରୁ ସମସ୍ତ ଜଳଚର ଜୀବ ଜନ୍ମଲାଭ କଲେ । ଏବେ ମଧ୍ୟ ଜଳରେ ତିମି ନାମରେ ଏକ ପ୍ରକାର ବଡ଼ ମାଛ ବାସ କରୁଅଛି । ତାର ଆକାର ଏକ ଛୋଟ ଟାପୁ ବା ଦ୍ୱୀପ ପରି । ତାକୁ ଗିଳିଦେବାଭଳି 'ତିମିଙ୍ଗଳ' ନାମରେ ଅନ୍ୟ ଏକ ଜୀବ ଅଛି । ସରମା ନାମକ ପତ୍ନୀଠାରୁ ସିଂହ, ବାଘ, ଆଦି ଜନ୍ମ-ଲାଭକଲେ । ସୁରଭି ମଇଁଷି, ଗାଈ ଆଦି ଦୁଇ ଖୁରା ବିଶିଷ୍ଟ ପଶୁମାନଙ୍କୁ ଜନ୍ମଦେଲେ । ତାମ୍ରା ଛଞ୍ଚାଣ, ଗୃଧ ଆଦି ପକ୍ଷୀମାନଙ୍କୁ ଜନ୍ମଦେଲେ । କଶ୍ୟପଙ୍କ ମୁନି ନାମ୍ନୀ ପତ୍ନୀ ସ୍ୱର୍ଗର ଅପସରାମାନଙ୍କୁ ଜନ୍ମକଲେ । କ୍ରୋଧବଶା, ଦନ୍ଦଶୂକ ଆଦି ବଡ଼ ବଡ଼ ବିଷଧର ସର୍ପମାନଙ୍କୁ ଜନ୍ମଦେଲେ । ଇଲା ସମସ୍ତ ପ୍ରକାର ବୃକ୍ଷମାନଙ୍କୁ ସୃଷ୍ଟି କଲେ । ଯେତେସବୁ ରକ୍ତ ମାଂସ ଭୋଗୀ କ୍ରୂର କର୍ମ ରାକ୍ଷସ ଅଛନ୍ତି ଏମାନେ ସମସ୍ତେ ସୁରମାଙ୍କର ସନ୍ତାନ । ଅରିଷ୍ଟା ଗାୟନ ବାଜଣା କରୁଥିବା ସୁନ୍ଦର ଗନ୍ଧର୍ବଙ୍କୁ ଉତ୍ପନ୍ନ

କଲେ । ତଥା କାଷ୍ଠାଙ୍କଠାରୁ ଘୋଡ଼ା, ଗଧ, ଖଚର ଗୋଟିଏଖୁରବାଲା ପଶୁ ଉତ୍ପନ୍ନ ହେଲେ । ଦନୁଙ୍କଠାରୁ ଏକଷଠି ଦାନବ ଉତ୍ପନ୍ନ ହେଲେ । କ୍ରମେ କ୍ରମେ ଏମାନଙ୍କଠାରୁ ଅସଂଖ୍ୟ ଦାନବ ସୃଷ୍ଟି ହେବାକୁ ଲାଗିଲେ । ଏହି ଏକଷଠି ଦାନବଙ୍କ ମଧ୍ୟରୁ ଯେଉଁମାନେ ଶ୍ରେଷ୍ଠ, ପ୍ରସିଦ୍ଧ ତଥା ବଳଶାଳୀ ଥିଲେ ସେମାନେ ହେଲେ ଦ୍ୱିମୂର୍ଦ୍ଧା, ଶମ୍ବର, ଅରିଷ୍ଟ, ହୟଗ୍ରୀବ, ବିଭାବସୁ, ଅୟୋମୁଖ, ଶଙ୍କୁ, ଶିରା, ସ୍ୱର୍ଭାନୁ, କପିଳ, ଅରୁଣ, ପୁଲୋମ, ବୃଷପର୍ବା, ଏକଚକ୍ର, ଅନୁତାପନ, ଧୂମ୍ରକେଶ, ବିରୂପାକ୍ଷ, ବିପ୍ରଚିତ୍ତି, ଦୁର୍ଜୟ ଇତ୍ୟାଦି । ଏମାନଙ୍କ ମଧ୍ୟରୁ ନମୁଚି ଦୈତ୍ୟ ସ୍ୱର୍ଭାନୁ ଦାନବର ସୁପ୍ରଭା ନାମକ କନ୍ୟାକୁ ବିବାହ କଲେ । ବୃଷପର୍ବା ଦାନବ ରାଜା ଙ୍କର କନ୍ୟା ଶର୍ମିଷ୍ଠାକୁ ଭରତବଂଶୀ ନହୁଷନନ୍ଦନ ମହାରାଜା ଯଯାତି ବିବାହ କଲେ । ଏହା ଆଗକୁ ମୁଁ ସୂର୍ଯ୍ୟବଂଶ ଚନ୍ଦ୍ରବଂଶ ପ୍ରସଙ୍ଗରେ ବର୍ଣ୍ଣନା କରିବି । ବୈଶ୍ୱାନରଙ୍କର ଉପଦାନବୀ, ହୟଶିରା, ପୁଲୋମା ଏବଂ କାଳକାୟା ନାମରେ ଚାରିଜଣ କନ୍ୟା ଥିଲେ । ସେମାନଙ୍କ ମଧ୍ୟରୁ ଉପଦାନବୀର ହିରଣ୍ୟାକ୍ଷଙ୍କ ସହ ହୟଶିରାର କ୍ରତୁଙ୍କ ସହ ତଥା ପୁଲୋମା ଓ କାଳକେୟା କଶ୍ୟପଙ୍କ ସହ ବିବାହ ହୋଇଥିଲା । ସେମାନଙ୍କଠାରୁ ପୌଲମ ଏବଂ କାଳକାୟ ନାମରେ ଷାଠିଏ ହଜାର ଦାନବ ସୃଷ୍ଟି ହୋଇଥିଲେ । ଏମାନେ ଧନୁର୍ଦ୍ଧର ଅର୍ଜ୍ଜୁନଙ୍କ ହାତରେ ପ୍ରାଣ ହରାଇଥିଲେ । ବିପ୍ରଚିତ୍ତି ଦାନବ ସିଂହିକା ନାମ୍ନୀ ପତ୍ନୀ ଉଦରରୁ ଏକଶହ ପୁତ୍ର ଜାତକଲେ । ସେମାନଙ୍କ ମଧ୍ୟରେ ରାହୁ ସବୁଠାରୁ ବଡ଼ ଥିଲେ । ଏହାଙ୍କର ଶିର ଅମୃତ ପାନ ସମୟରେ କଟା ହୋଇଥିଲା । ଏହି ସୁନ୍ଦର ଆନନ୍ଦଦାୟକ ଉପାଖ୍ୟାନ ସମୁଦ୍ରମନ୍ଥନ ପ୍ରସଙ୍ଗରେ ବଖାଣ କରିବି । ବଡ଼କୁ ରାହୁ, ସାନକୁ କେତୁ କୁହାଯାଏ ।

ବର୍ତ୍ତମାନ ଆପଣ ପରମ ପବିତ୍ର ଦେବମାତା ଅଦିତିଙ୍କର ପୁଣ୍ୟବର୍ଦ୍ଧନକାରୀ ଚରିତକୁ ଶ୍ରବଣ କରନ୍ତୁ । ଏହି ଭାଗ୍ୟବତୀ ଅଦିତିଙ୍କ ଗର୍ଭରୁ ସର୍ବବ୍ୟାପକ ସ୍ୱୟଂ ସାକ୍ଷାତ ଶ୍ରୀମନ୍ନାରାୟଣ ବାମନାବତାର ରୂପେ ଜନ୍ମହୋଇଥିଲେ । ଅଦିତିଙ୍କ ଗର୍ଭରୁ ବାରଜଣ ଆଦିତ୍ୟ ଉତ୍ପନ୍ନ ହୋଇଥିଲେ । ବାର ମାସରେ ଗୋଟିଏ ଗୋଟିଏ ସୂର୍ଯ୍ୟମଣ୍ଡଳରେ ସେମାନେ ରହି ଉତ୍ତାପ ପ୍ରଦାନ କରୁଛନ୍ତି । ସେମାନଙ୍କର ନାମ ବିବସ୍ୱାନ, ଅର୍ଯ୍ୟମା, ପୁଷା, ତ୍ୱଷ୍ଟା, ସବିତା, ଭଗ, ଧାତା, ବିଧାତା, ବରୁଣ, ମିତ୍ର, ଶକ୍ର ଏବଂ ଉରୁକ୍ରମ । ଭଗବାନ ବିବସ୍ୱାନଙ୍କ ଔରସରୁ ତାଙ୍କ ପତ୍ନୀ ସଂଜ୍ଞାଙ୍କ ଗର୍ଭରୁ ଶ୍ରାଦ୍ଧଦେବ ମନୁ, ଯମରାଜା ଏବଂ ଯାମୀ ନାମକ ଏକ କନ୍ୟା ଜନ୍ମଲାଭ କରିଥିଲେ । ଯାମୀଙ୍କଠାରୁ ଘୋଡ଼ା ରୂପ ଆଦି ଅଶ୍ୱିନୀକୁମାର ଜାତ ହେଲେ । ଏହା ପ୍ରସଙ୍ଗକ୍ରମେ ବଖାଣ କରାଯିବ । ବିବସ୍ୱାନଙ୍କର ଦ୍ୱିତୀୟ ପତ୍ନୀ ଛାୟାଙ୍କଠାରୁ ମଧ୍ୟ ସାବର୍ଣ୍ଣି ମନୁ, ଶନୈଶ୍ଚର ଏବଂ କନ୍ୟା ତପତୀ

ଜାତ ହୋଇଥିଲେ । ତପତୀଙ୍କର ବିବାହ ସମ୍ବରଣଙ୍କ ସହିତ ହୋଇଥିଲା । ବିବସ୍ୱାନଙ୍କ ପରେ ଦ୍ୱିତୀୟ ଆଦିତ୍ୟ ଅର୍ଯ୍ୟମା ଅଟନ୍ତି । ତାଙ୍କର ବିବାହ ମାତୃକା ନାମ୍ନୀ ସ୍ତ୍ରୀ ସହ ହୋଇଥିଲା । ତାହାଙ୍କଠାରୁ ଚର୍ଷଣୀ ନାମରେ ପୁତ୍ର ଜାତ ହୋଇଥିଲେ । ଚର୍ଷଣୀ କୃତ ଏବଂ ଅକୃତ ଜ୍ଞାନୀ – ଏହି ମନୁଷ୍ୟ ଜାତିର ଉତ୍ପତ୍ତି ତାଙ୍କଠାରୁ ହୋଇଛି । ଯାହାଙ୍କ ଉପରେ ବ୍ରାହ୍ମଣମାନଙ୍କର କଳ୍ପନା ହେଲା । ପୂଷା ନିଃସନ୍ତାନ ଥିଲେ । ଦକ୍ଷ-ପ୍ରଜାପତିଙ୍କ ଯଜ୍ଞକୁ ସେ ବିଶେଷ ଥର ଯାଇଥିଲେ । ଏହାର ବର୍ଣ୍ଣନା ମୁଁ ଦକ୍ଷଯଜ୍ଞ ପ୍ରସଙ୍ଗ ପୂର୍ବରୁ କହିବି । ଶ୍ରାଦ୍ଧ ଆଦିରେ ଏହି ପୂଷାଦେବଙ୍କୁ ପେଷା ହୋଇଥିବା ଛତୁ ଅନ୍ନ ଦିଆଯାଏ । ଏଣୁ ଏହାଙ୍କୁ ପିଷ୍ଟଭକ୍ଷକ ବୋଲି କୁହାଯାଏ । ତୃତୀୟ ଆଦିତ୍ୟ ଅଟନ୍ତି ତ୍ୱଷ୍ଟା । ସେ ଦୈତ୍ୟବଂଶରେ ବିବାହ କରିଥିଲେ । ଦୈତ୍ୟମାନଙ୍କର ସବୁଠାରୁ ଶ୍ରେଷ୍ଠ ଭଉଣୀ ରଚନା ତାଙ୍କର ପତ୍ନୀ ଥିଲେ । ରାଜନ୍ ! ଆପଣ ଜାଣିଛନ୍ତି, ଦେବତା ଓ ଦୈତ୍ୟମାନଙ୍କ ମଧ୍ୟରେ ସ୍ୱାଭାବିକ ଶତ୍ରୁତାଭାବ ରହିଛି । ଏହିଭାବ ଥାଇ ମଧ୍ୟ ସେମାନଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ସ୍ଥାପନ ହେଉଥିଲା । ଇନ୍ଦ୍ରଙ୍କ ପତ୍ନୀ ଶଚୀ ମଧ୍ୟ ପୁଲମା ଦୈତ୍ୟଙ୍କର କନ୍ୟା । ଏଣୁ ତାଙ୍କୁ ପୌଲୋମୀ ବୋଲି କୁହାଯାଏ ।

ଭଗବାନ ତ୍ୱଷ୍ଟାଙ୍କର ରଚନାଙ୍କ ଗର୍ଭରୁ ଦୁଇଟି ସନ୍ତାନ ଜାତ ହେଲେ ସେମାନଙ୍କ ମଧ୍ୟରେ ସନ୍ନିବେଶ ବଡ଼ ଓ ବିଶ୍ୱରୂପ ଶ୍ରେଷ୍ଠ । ଏହି ବିଶ୍ୱରୂପ ଦେବତାମାନଙ୍କର ପୁରୋହିତ ହୋଇଥିଲେ ।"

ଏହାପରେ ରାଜା ପରୀକ୍ଷିତ ପଚାରିଲେ—"ପ୍ରଭୋ ! ଦେବତାମାନଙ୍କର ପୁରୋହିତ ପରମ ଜ୍ଞାନୀ ତଥା ମହାନ୍ ନୀତିବିଶାରଦ ବୃହସ୍ପତି ବୋଲି ଆମେ ଶୁଣିଛୁ । ବର୍ତ୍ତମାନ ଆପଣ କହୁଛନ୍ତି କ'ଣ ନା ସେମାନେ ବିଶ୍ୱରୂପଙ୍କୁ ପୁରୋହିତ କରିଥିଲେ । ଏହା କିପରି ସମ୍ଭବ ? ଦେବତାମାନେ ଦୁଇଜଣ ପୁରୋହିତ କାହିଁକି କରିଥିଲେ ?"

ଏକଥା ଶୁଣି ଶୁକଦେବ କହିଲେ — "ରାଜନ ! ଏହା ସତ୍ୟ, ଦେବତାମାନଙ୍କର ପୁରୋହିତ ଭଗବାନ ବୃହସ୍ପତି, କିନ୍ତୁ ଇନ୍ଦ୍ର ଯେତେବେଳେ ତାଙ୍କୁ ଅପମାନ ଦେଲେ ସେ (ବୃହସ୍ପତି) ଦେବତାମାନଙ୍କୁ ଛାଡ଼ି ଚାଲି ଆସିଲେ । ପୁରୋହିତ ବ୍ୟତୀତ କାମ କେମିତି ଚଳିବ ତେଣୁ ଦେବତାମାନେ ବୃହସ୍ପତିଙ୍କ ସ୍ଥାନରେ ବିଶ୍ୱରୂପଙ୍କୁ ଦେବଗୁରୁ ଭାବରେ ଗ୍ରହଣ କଲେ ।"

ଏହାପରେ ରାଜା ପଚାରିଲେ—ମହାରାଜ ! ପୁରୋହିତ ଗୁରୁ ଓ ଦେବତାମାନଙ୍କୁ ସର୍ବଦା ଦୈତ୍ୟମାନଙ୍କଠାରୁ ରକ୍ଷା କରୁଥିଲେ । ଦୈତ୍ୟମାନେ ଛିଦ୍ର ପାଇ ମଧ୍ୟ ଦେବତାମାନଙ୍କ ଉପରେ ଚଢ଼ାଉ କରିପାରୁ ନଥିଲେ, ଏଣୁ ମନ୍ତ୍ର ଦେବାପାଇଁ ପୁରୋହିତ

ଆଶ୍ରୟୀ ଥିଲେ । ବିଶ୍ୱରୂପଙ୍କ ମାତା ସ୍ୱୟଂ ଦୈତ୍ୟ ବଂଶରୁ ଜାତ । ସେ ମାତୃବଂଶ କାରଣ ପାଇଁ ଅସୁରଙ୍କର କଲ୍ୟାଣ ପକ୍ଷ ନିଶ୍ଚୟହିଁ ଦେବେ । ଏହିପରି ସନ୍ଦେହପୂର୍ଣ୍ଣ ବ୍ୟକ୍ତିଙ୍କୁ ଦେବତାମାନେ କାହିଁକି ପୁରୋହିତ କଲେ ?”

ହସି ହସି ଶ୍ରୀଶୁକଦେବ କହିଲେ – ମହାରାଜ ! ସ୍ୱାର୍ଥ ବଡ଼ ଖରାପ ବସ୍ତୁ । ସ୍ୱାର୍ଥର ବଶୀଭୂତ ହୋଇ ମନୁଷ୍ୟ ସବୁ କିଛି କରିପାରେ । ସ୍ୱାର୍ଥର କାରଣଯୋଗୁ ଇନ୍ଦ୍ର ବହୁତ କିଛି ଅପରାଧ କରି ବସିଲେ ମହାରାଜ ! ଏହା ଅସରନ୍ତି କଥା । ଇନ୍ଦ୍ର ନିଜର ଗୁରୁଙ୍କୁ ଅପମାନ ଦେଲେ । ଏଥିପାଇଁ ସେ ବଡ଼ ବିପତ୍ତିର ସମ୍ମୁଖୀନ ହୋଇଥିଲେ, ଏହା ସମସ୍ତେ ଜାଣନ୍ତି । ଏହାଛଡ଼ା ସେ ବ୍ରହ୍ମହତ୍ୟା ମଧ୍ୟ କରିଥିଲେ ।”

ଏହାପରେ ଉତ୍ସାହ ପ୍ରକଟକରି ମହାରାଜ ପରୀକ୍ଷିତ ପଚାରିଲେ—“ପ୍ରଭୋ ! ମୋତେ ଏହି ପରମ ପବିତ୍ର ଆଖ୍ୟାନକୁ ପୁରାଭାବରେ ଶୁଣାନ୍ତୁ । ଏହା ଶୁଣିବାକୁ ମୋ ମନରେ କୌତୂହଳ ଜାତ ହେଉଛି ।”

ଏହା ଶୁଣିକରି ଶ୍ରୀଶୁକଦେବ କହିଲେ—“ଠିକ୍ କଥା ରାଜନ ! ମୁଁ ଆପଣଙ୍କୁ ଏହି ପବିତ୍ର ଚରିତ ଶୁଣାଉଛି, ଆପଣ ସାବଧାନତା ସହକାରେ ଶ୍ରବଣ କରନ୍ତୁ ।”

—ଛପ୍ପୟ—

ଇଲ୍ କଳେ ସବ ବୃକ୍ଷ ଜଗତ୍ କେ ଜେ ସୁଖଦାୟକ ।
କଳେ ପୁତ୍ର ଗନ୍ଧର୍ବ ଅରିଷ୍ଟା ସୁନ୍ଦର ଗାୟକ ॥
କୋ ବାହର ଆଦିତ୍ୟ ବଢ଼େ ତିନ ବିବସ୍ୱାନ ରବି ।
ହୈଂ ଅର୍ଯମା ଦ୍ୱିତୀୟ ଭୟେ ତିନତେଂ ମନୁସ କବି ॥
ଦକ୍ଷ ଯଜ୍ଞ ମେଂ ପିଷ୍ଟଭୁକ୍, ଦନ୍ତହୀନ ପୁଷା ଭୟେ ।
ବିଶ୍ୱରୂପ ତ୍ୱଷ୍ଟା ତନୟ, ସୁରଗୁରୁ କଛୁ ଦିନ ବନି ଗୟେ ॥



# ଇନ୍ଦ୍ରଙ୍କର ବୃହସ୍ପତିଙ୍କ ପ୍ରତି ଅପମାନ

ବାଚସ୍ପତିଂ ମୁନିବରଂ ସୁରାସୁରନମସ୍କୃତମ୍ ।
ନୋଚଚାଲାସନାଦିନ୍ଦ୍ରଃ ପଶ୍ୟନ୍ନପି ସଭାଗତମ୍ ॥
ତତୋ ନିର୍ଗତ୍ୟ ସହସା କବିରାଙ୍ଗିରସଃ ପ୍ରଭୁଃ ।
ଆୟଯୌ ସ୍ୱଗୃହଂତୂଷ୍ଣୀଂ ବିଦ୍ୱାନ ଶ୍ରୀମଦବିକ୍ରିୟାମ ॥

[ ଶ୍ରୀଭାଗବତ ॥ ୬ଷ୍ଠ ସ୍କନ୍ଦ । ୭ମ ଅଧ୍ୟାୟ ॥ ୮୯ ଶ୍ଲୋକ ]

ଛପ୍‌ପୟ

ହମ ସବତେଂ ହୈଂ ଊଁଚ ଭୟୌ ଅଭିମାନ ଦେବପତି ।
ଦୈତ୍ୟଂ ଦେବଂ ସନ୍ମାନ ବୃହସ୍ପତିକୁଁ ହମ ନିତପ୍ରତି ॥
ଐସୋ ନିଶ୍ଚୟ କରୟୌ ସଭାମହଁ ଜବ ଗୁରୁ ଆୟେ ।
ନହିଁ ଆସନ ତେଂ ଉଠେ ବଚନ ନହିଁ ମଧୁର ସୁନାୟେ ॥
ସମୁଖେ ଗୟେ ଗୁରୁ ଇନ୍ଦ୍ରକୁଁ, ଅହଙ୍କାର ଅତିଶୟ ଭୟୌ ।
ତୁରତ ଲୌଟି ଆୟେ ଭବନ, ଭଲୋ ବୁରୋ ନହିଁ କଛୁ କହ୍ୟୌ ॥

(ଅହଂକାର କଳହର ମୂଳ । ଯଦି ମଣିଷ ଭାବେ ମୁଁ ସବୁଠାରୁ ବଡ଼, ମୁଁ ସବୁଠାରୁ ଉତ୍ତମ, ମୁଁ ପୂଜନୀୟ, ସମ୍ମାନୀୟ, ମୋ ବ୍ୟତିତ ସବୁ ତୁଚ୍ଛ, ହେୟ, ନିନ୍ଦନୀୟ ତେବେ ଏହାଦ୍ୱାରା ସେ ଅନ୍ୟକୁ ତିରସ୍କାର କରୁଛି । କୌଣସି ପ୍ରାଣୀଙ୍କୁ ଅପମାନ ଦେବା ଅର୍ଥ ସର୍ବ ଅନ୍ତର୍ଯାମୀ ପ୍ରଭୁଙ୍କୁ ଅପମାନିତ କରିବା ) ଏଣୁ ଭୁଲ କଲେ ମଧ୍ୟ କେବେ କୌଣସି ପ୍ରାଣୀକୁ ଶ୍ରେଷ୍ଠ ବା ହେୟ ଜ୍ଞାନ କରିବା ଉଚିତ ନୁହେଁ ! ସମ୍ପୂର୍ଣ୍ଣ ଚରାଚର ଭୂତ ତାର ଇଷ୍ଟଦେବଙ୍କୁ ଦର୍ଶନ କରିବାକୁ ଇଚ୍ଛାକରେ ।

ଯେତେବେଳେ ରାଜା ପରୀକ୍ଷିତ ପ୍ରଶ୍ନ କଲେ ବ୍ରହ୍ମନ୍ତ ଭାର୍ଯ୍ୟଙ୍କ ନିକର ପ୍ରିୟ ଶିଷ୍ୟ ଦେବତାମାନଙ୍କୁ କେଉଁ ଅପରାଧ ନିମନ୍ତେ ତ୍ୟାଗୀ କଲେ, ତାର ଉତ୍ତରରେ

ଶୁକଦେବ କହିଲେ – ରାଜା ! ଐଶ୍ୱର୍ଯ୍ୟ ମଦ ସବୁଠାରୁ ଖରାପ । ଯାହାର ଐଶ୍ୱର୍ଯ୍ୟ ବଢ଼େ ତା ସହିତ ତା ମନରେ ଅବିବେକତା ଜନ୍ମନିଏ । ଫଳରେ ଏହିପରି ମଣିଷର ଭିତର ଓ ବାହାର ଚକ୍ଷୁ ଫୁଟିଯାଏ ଓ ସେ ମଦାନ୍ଧ ହୋଇଯାଏ । ରାଜନ୍ ! ଧନ ଏବଂ ଐଶ୍ୱର୍ଯ୍ୟ ମଦରେ ପୁରୁଷ ଅନ୍ଧହୋଇ ତା ସାମନାରେ ଦେଖାଯାଉଥିବା ସମସ୍ତ ମଣିଷ ଓ ବସ୍ତୁକୁ ତୁଚ୍ଛମନେକରେ । ସେ ତା ବିବେକକୁ ନିୟନ୍ତ୍ରଣ କରିପାରେ ନାହିଁ, କ'ଣ କରିବା ଦରକାର କ'ଣ କରିବା ଦରକାର ନାହିଁ ଏକଥା ପ୍ରତି ତାର ଧ୍ୟାନ ରହେନାହିଁ । କୁବେର ପୁତ୍ର ନଳକୁବେର ମଣିଗ୍ରୀବ ଦ୍ୱାରା ଐଶ୍ୱର୍ଯ୍ୟ ମଦରେ ମତ୍ତ ହୋଇ ଦେବର୍ଷି ନାରଦଙ୍କୁ ଅପମାନ କରିଥିଲା । ଐଶ୍ୱର୍ଯ୍ୟ ମଦରେ ଅନ୍ଧ ହୋଇଥିବା ପୁରୁଷ ଆଖିକୁ ଖୋଲିବା ପାଇଁ ଦାରିଦ୍ର୍ୟତାହିଁ ଏକ ପ୍ରକାର ଅଞ୍ଜନ ଅଟେ । ଦାରିଦ୍ର୍ୟତା ଉପସ୍ଥିତ ହେଲେ ଐଶ୍ୱର୍ଯ୍ୟ ମଦ ଛାଡ଼ିଯାଇ ବୁଦ୍ଧି ଠିକଣା ବାଟରେ ପରିଚାଳିତ ହୁଏ ।

ଥରେ ସ୍ୱର୍ଗ ରାଜ୍ୟରେ ଇନ୍ଦ୍ରଙ୍କର ଦିବ୍ୟ ସୁଧର୍ମା ସଭା ବସିଥାଏ । ମଣିମୟ ସିଂହାସନ ଉପରେ ତ୍ରୈଲୋକ୍ୟସୁନ୍ଦରୀ ଶଚୀଦେବୀଙ୍କ ସହ ଇନ୍ଦ୍ର ବସିଥାଆନ୍ତି । ଅନୁପମ ରୂପ ଲାବଣ୍ୟବତୀ ସ୍ୱର୍ଗୀୟ ଲଳନା ସୁନ୍ଦରୀ ଅପ୍‌ସରାଗଣ, ହାବଭାବ କଟାକ୍ଷ ନେଇ ନୃତ୍ୟ କରୁଥାନ୍ତି । ଗନ୍ଧର୍ବ ତାନ, ମୂର୍ଚ୍ଛା ଓ ଲୟ ସହକାରେ ସୁନ୍ଦର ସଙ୍ଗୀତ ପରିବେଷଣ କରିବାରେ ରତ । ହାତରେ ବିଭିନ୍ନ ପ୍ରକାର ସେବା ସାମଗ୍ରୀ ନେଇ ହଜାରେ ସୁରଙ୍ଗନା ସାବଧାନତା ସହକାରେ ସେବାରତ । ଋଷି, ମହର୍ଷିଗଣ ଦେବରାଜଙ୍କର ସ୍ତୁତି କରୁଥିଲେ । ଦେବତାମାନେ ହାତଯୋଡ଼ି ଆଦେଶକୁ ଅପେକ୍ଷା କରି ରହିଥାଆନ୍ତି । ସିଦ୍ଧ, ଚାରଣ, ଗନ୍ଧର୍ବ, ଉରଗ, ରାକ୍ଷସ, ଗୁହ୍ୟକ, ଭୂତ, ପ୍ରେତ, ପିଶାଚ, ନଦ, ନଦୀ, ବନ, ସମୁଦ୍ର, ପର୍ବତ ସମସ୍ତେ ମୂର୍ତ୍ତିମାନ ହୋଇ ଶତକ୍ରତୁଙ୍କର ଉପାସନାରତ । ଏହି ସମସ୍ତ ବୈଭବ ଏବଂ ପ୍ରତିଷ୍ଠାକୁ ଲକ୍ଷ୍ୟକରି ଇନ୍ଦ୍ରଙ୍କ ମନରେ ପ୍ରବଳ ଅଭିମାନ ଜାତହେଲା । ସେ ଚିନ୍ତାକଲେ ତିନିଲୋକରେ ମୋ ଠାରୁ ଆଉ କିଏ ବଡ଼ ଅଛି । ମଣିଷମାନଙ୍କ କଥା କିଏ ପଚାରେ, ସମସ୍ତ ଦେବ ଉପଦେବ ଓ ଦେବୀ ମୋର ପୂଜା ପ୍ରତିଷ୍ଠା କରୁଛନ୍ତି ; ସମସ୍ତେ ମୋ ସମ୍ମୁଖରେ ହାତ ଯୋଡ଼ି ଠିଆ ହୋଇଛନ୍ତି । ମୁନି, ଋଷି ଠିଆ ହୋଇଛନ୍ତି । ମୁଁ ସିଂହାସନ ଉପରେ ବସିଛି । ସେମାନେ ଠିଆହୋଇ ମୋର ସ୍ତୁତିଗାନ କରୁଛନ୍ତି । ମୁଁ ଏତେ ବଡ଼ ଐଶ୍ୱର୍ଯ୍ୟଶାଳୀ ହୋଇ କାହିଁକି ବୃହସ୍ପତିଙ୍କ ପାଖରେ ମୁଣ୍ଡ ନୁଆଁଇବି । ତାଙ୍କୁ ଦେଖିକରି କାହିଁକି ଆସନରୁ ଉଠି ଠିଆହେବି । ସେ ତ କେବଳ ମାତ୍ର ଜଣେ ସାଧାରଣ ବ୍ରାହ୍ମଣ । ଯେଉଁଠି ସମସ୍ତ ମୁନି ଋଷି ମୋର ସ୍ତୁତିଗାନ କରୁଛନ୍ତି, ସେ ମଧ୍ୟ ସେଇଆ କରିବା ଉଚିତ । ମୁଁ ପ୍ରତିଦିନ ତାଙ୍କର ଦୂରରୁ ଆସିବା ଦେଖି କାହିଁକି ଠିଆହୋଇ ପଡ଼ୁଛି ?

ଏହି ପ୍ରକାର ଅଭିମାନରେ ଉନ୍ମତ୍ତ ହୋଇ ଇନ୍ଦ୍ର ଅଭିମାନରେ ଅନ୍ଧ ହୋଇଗଲେ । ତାଙ୍କୁ ଅହଂକାର ଗ୍ରାସ କଲା । ଏହି ସମୟରେ ସଭାରେ ଆଚାର୍ଯ୍ୟ ବୃହସ୍ପତି ଆସି ପହଞ୍ଚିଲେ । ସବୁଦିନେ ଦେବେନ୍ଦ୍ର ତାଙ୍କର ଖୁବ୍ ସ୍ୱାଗତ ସତ୍କାର କରୁଥିଲେ । ଦେଖିଲା ମାତ୍ରକେ ସିଂହାସନ ଉପରୁ ଉଠି ଠିଆହୋଇ ଯାଉଥିଲେ, ମଧୁର ବଚନରେ ତାଙ୍କୁ କୁଶଳ ପ୍ରଶ୍ନ ପଚାରୁଥିଲେ, ନିଜଠାରୁ ଉଚ୍ଚ ଆସନରେ ତାଙ୍କୁ ନେଇ ବସାଉଥିଲେ । ଯେତେବେଳେ ସେ ସୁଖ ପୂର୍ବକ ବସି ଯାଉଥିଲେ ସେ ତାଙ୍କର ଆଜ୍ଞା ଦ୍ୱାରା ନିର୍ଦ୍ଦେଶିତ ହୋଇ ନିଜ ସିଂହାସନରେ ବସୁଥିଲେ । କିନ୍ତୁ ଆଜି ଐଶ୍ୱର୍ଯ୍ୟ ମଦରେ ଉନ୍ମତ୍ତ । ଦେବେନ୍ଦ୍ର ଉନ୍ମାଦ ଦ୍ୱାରା ହତଜ୍ଞାନ ହୋଇ ପଡ଼ିଥିଲେ ଏଣୁ ସମ୍ମୁଖରେ ଉପସ୍ଥିତ ଥିବା ଗୁରୁଙ୍କୁ ଦେଖି ସେ ନିଜ ଆସନରୁ ଟିକିଏ ହେଲେ ହଲଚଲ ହେଲେନାହିଁ । ସୁଅରେ ବୃକ୍ଷରୁ ଭାଙ୍ଗି ପଡ଼ିଥିବା ଡାଳ ସଦୃଶ ସିଂହାସନ ଉପରେ ବସ୍ଥିର ହୋଇ ବସିରହିଲେ । ସେ ଆଦୌ ଆଚାର୍ଯ୍ୟଙ୍କ ଆଡ଼କୁ ଚାହିଁଲେ ନାହିଁ । ପୂର୍ବରୁ ସେ ତାଙ୍କ ଗୌରବ ବୃଦ୍ଧି କରୁଥିଲେ, ଦେଖିଲା ମାତ୍ରକେ ଉଠି ଠିଆ ହୋଇଯାଉଥିଲେ । ତାଙ୍କ କାନ୍ଧରେ ଇନ୍ଦ୍ରଙ୍କର ଗୋଟିଏ ହାତ ରହିଥିଲା । ମରୁତ, ବସୁ, ରୁଦ୍ର, ଆଦିତ୍ୟ, ଋଭୁ, ବିଶ୍ୱଦେବ, ସାଧ୍ୟଗଣମାନେ ତଥା ଅଶ୍ୱିନୀକୁମାର ତାଙ୍କ ସେବାରେ ନିୟୋଗଥିଲେ । ସିଦ୍ଧ, ଚାରଣ, ଗନ୍ଧର୍ବ, ବ୍ରହ୍ମବାଦୀ ମୁନୀଗଣ, ବିଦ୍ୟାଧର, ଅପ୍ସରା, କିନ୍ନର ପକ୍ଷୀ ନାଗ ତଥା ଅନ୍ୟ ଉପଦେବତାଗଣ ତାଙ୍କର ସ୍ତୁତିଗାନ କରୁଥିଲେ । ତାଙ୍କର ତ୍ରୈଲୋକ୍ୟ-ବ୍ୟାପୀ କମନୀୟ କୀର୍ତ୍ତି ବିସ୍ତାର ହେଉଥିଲା । ତାଙ୍କ ଉପରେ ସହସ୍ର କମନୀୟ ତଥା ଉଜ୍ଜ୍ୱଳ, ଚନ୍ଦ୍ରମଣ୍ଡଳ ସମାନ ଶୁଭ୍ର, ସୁନ୍ଦର ଶ୍ୱେତଛତ୍ର ଶୋଭା ପାଉଥିଲା । ଡାହାଣ ବାମ ଦୁଇ ଭାଗରେ ଅତ୍ୟନ୍ତ ସୁନ୍ଦରୀ ଅପସରାମାନେ ହାତରେ ଚାମର ବ୍ୟଞ୍ଜନ ଆଦି ମହାରାଜୋଚିତ ଚିହ୍ନକୁ ଧାରଣ କରି ଠିଆହୋଇ ଦୁଇ ପାଖରୁ ଚାମର ଢାଳୁଥିଲେ । ଇନ୍ଦ୍ର ଗୁରୁ ବୃହସ୍ପତିଙ୍କୁ ଦେଖି ନ ଦେଖିଲା ଭଳି ସମ୍ମୁଖରେ ନାଚୁଥିବା ଉର୍ବଶୀ ଅପ୍ସରା ଆଡ଼କୁ ଦୃଷ୍ଟିରଖି ଅତ୍ୟନ୍ତ ଅନୁରାଗ ସହକାରେ ବସିରହିଲେ ।

ଆଜି ନିଜ ଶିଷ୍ୟର ଅଭୂତପୂର୍ବ ବ୍ୟବହାର ଦେଖି ଦେବ ଗୁରୁଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେ କିଛି ସମୟ ପର୍ଯ୍ୟନ୍ତ ଠିଆହୋଇ ଦେବେନ୍ଦ୍ର ମୁହଁକୁ କେବଳ ଚାହିଁବାକୁ ଲାଗିଲେ । ସେ ତ ଥିଲେ ତ୍ରିକାଳଜ୍ଞ, ଏଣୁ ସବୁ କଥା ସହଜରେ ବୁଝି ପାରିଲେ, ଇନ୍ଦ୍ରଙ୍କୁ ଐଶ୍ୱର୍ଯ୍ୟ ମଦ ଘାରିଛି, ତାଙ୍କର ସମଗ୍ର ଶରୀରକୁ ଅଭିମାନ ରୂପକ ଭୂତ ଗ୍ରାସକରିଛି । ଏହା ଦେଖି ସେ ଆଉ ଆଗକୁ ସଭା ଭିତରକୁ ନଯାଇ ଓଲଟା ପାଦ ପକାଇ ଲେଉଟି ଆସିଲେ । ଶ୍ରୀ ସୂତ

କହିଲେ—ପୁରୁଷର ଚିତ୍ତ ବୃତ୍ତି ସର୍ବଦା ବଦଳୁଥାଏ । କେତେବେଳେ ସତ୍ତ୍ୱଗୁଣ ବଢ଼ିଯାଏ, କେତେବେଳେ ରଜୋଗୁଣର ପ୍ରାବଲ୍ୟ ଆସିଯାଏ ତ, କେତେବେଳେ ତମୋଗୁଣ ଆସି ହୃଦୟରେ ବଳୀଇ ହୋଇଯାଏ । ଯେଉଁ ଗୁଣ ଯେଉଁ ସମୟରେ ଉଦୟ ହୁଏ ସେତେବେଳେ ସେହି ପ୍ରକାରର ବୃଦ୍ଧି ମନରେ ଜାତହୁଏ (ସତ୍ତ୍ୱଗୁଣ ଉଦୟ ହେଲେ ଚିତ୍ତରେ ଶାନ୍ତଭାବ ପ୍ରବେଶ କରେ, ଦାନଦେବା, ଧର୍ମ କରିବାର ପ୍ରବଳ ଇଚ୍ଛା ପ୍ରକାଶ ହୁଏ । ରଜୋଗୁଣର ବୃଦ୍ଧି ଘଟିଲେ ଅଭିମାନ ବୃଦ୍ଧିପାଏ, କର୍ମ କରିବା ପାଇଁ ଅତ୍ୟଧିକ ରୁଚି ଜାଗ୍ରତ ହୁଏ ଓ ଯେତେବେଳେ ତମୋଗୁଣ ଉଦୟ ହୁଏ ନିଦ୍ରା, ଆଳସ୍ୟ, ପ୍ରମାଦର ପ୍ରାବଲ୍ୟ ବୃଦ୍ଧିପାଏ, ମହାପୁରୁଷମାନଙ୍କ ସମ୍ବନ୍ଧରେ ଉତ୍ପନ୍ନ ହେଉଥିବା ଜ୍ଞାନ ରହିତ ହୋଇଯାଏ ।")

ଏହାପରେ ଶୌନକ ପଚାରିଲେ - "ସୂତ ମହାଭାଗ ! କେଉଁ ଲକ୍ଷଣରୁ ଜାଣିହେବ ଯେ, ଅମୁକ ଗୁଣ ବୃଦ୍ଧି ହେଲବୋଲି ?"

ଏହାପରେ ସୂତ କହିଲେ —"ଭଗବାନ ! ହୃଦୟରେ ଯେଉଁଗୁଣର ବୃଦ୍ଧି ଘଟେ ତଦନୁଯାୟୀ ବୃଦ୍ଧି ଜାତ ହୁଏ । ଏହି ସମୟରେ ବିବେକ ରହେନାହିଁ । ଯେତେବେଳେ ସବୁଦିଗରୁ ସମସ୍ତ ଇନ୍ଦ୍ରିୟମାନଙ୍କ ଦ୍ୱାରା ଜ୍ଞାନାତ୍ମକଭାବ ପ୍ରକାଶ ପାଏ, ଚିତ୍ତ ଅତ୍ୟନ୍ତ ପ୍ରସନ୍ନ ସାତ୍ତ୍ୱିକ ହୋଇଯାଏ, ସମସ୍ତଙ୍କ ସହ ମିତ୍ରତା, ଅଦ୍ରୋହଭାବ ଉଦ୍ରେକ ହୁଏ, ଏଥିରୁ ଜାଣିବାକୁ ହେବଯେ ସାତ୍ତ୍ୱିକଭାବ ହୃଦୟରେ ଜାତ ହୋଇଅଛି । ଯେଉଁ ସମୟରେ ସାଂସାରିକ କାର୍ଯ୍ୟରେ ଅତ୍ୟଧିକ ପ୍ରବୃତ୍ତି, ଲୋଭ, ବିଷୟ, ଭୋଗ, ଲାଳସା, ଚିତ୍ତରେ ଉଦ୍‌ବେଗ, ଅନ୍ୟପ୍ରତି ହିଂସା ଆଦି ଦେଖାଦେବ ସେତେବେଳେ ଜାଣିବାକୁ ହେବ ଯେ ହୃଦୟରେ ରଜୋଗୁଣ ପ୍ରକାଶ ପାଇଅଛି । ଯେତେବେଳେ ଅବିବେକତା, କାର୍ଯ୍ୟ କରିବାପାଇଁ ଅନିଚ୍ଛାଭାବ, ଅସାବଧାନତା, ମୋହ ତଥା ଉଦ୍ୟମରହିତ ଆଦିର ଇଚ୍ଛା ଜାତହୁଏ ଜାଣିବାକୁ ହେବ ଯେ ମହାପାପୀ ତମୋଗୁଣ ହୃଦୟକୁ ଗ୍ରାସ କରିଅଛି । ଗୋଟିଏ ପ୍ରକାର ଗୁଣ ସବୁବେଳେ ଦେଖାଦିଏ ନାହିଁ । କେତେବେଳେ ସତ୍ତ୍ୱ ଗୁଣ, କେତେବେଳେ ରଜଗୁଣ ସତ୍ତ୍ୱକୁ ଲୁଚିକରି ପ୍ରକାଶ ପାଏ ତ କେତେବେଳେ ତମୋଗୁଣ ସତ୍ତ୍ୱ ଓ ରଜ ଉପରେ ଚଢ଼ି ହୃଦୟକୁ ଆକ୍ରାନ୍ତ କରେ । ଏହି ସମୟରେ ଇନ୍ଦ୍ର ତମୋଗୁଣରେ ଆକ୍ରାନ୍ତ ହୋଇ ଘାରି ହେଉଥିଲେ । ଦେବଗୁରୁ ଫେରିଯିବାରୁ ଇନ୍ଦ୍ରଙ୍କ ମନରେ ଚେତନା ଉଦୟ ହେଲା । ତାଙ୍କ ମନରେ ସତ୍ତ୍ୱଗୁଣ ଜାତ ହେଲା । ସେ ଚିନ୍ତା କରିବାକୁ ଲାଗିଲେ— ଆରେ ମୁଁ କ'ଣ କଲି ? ଆଜି ତ ମୁଁ ମୋର ପରମ ପୂଜନୀୟ ଗୁରୁଙ୍କୁ ଅପମାନିତ କରିଛି । ମୋର ଏହି ଏତେବଡ଼ ଐଶ୍ୱର୍ଯ୍ୟକୁ ଧିକ୍, ଏହିପରି ସେ ବାରମ୍ବାର ନିଜକୁ ଧିକ୍କାର କରିବାକୁ ଲାଗିଲେ ।

ଏହାପରେ ଶୌନକ ପଚାରିଲେ— "ସୂତ ମହାଭାଗ ! ଇନ୍ଦ୍ରଙ୍କୁ ତ ଅଭିମାନ ଗ୍ରାସ କରିଥିଲା, ତେବେ ଏହିପରି ଅବସ୍ଥାରେ ଦେବଗୁରୁ କାହିଁକି ଫେରି ଆସିଲେ । ଯେପରି ଅବସ୍ଥାରେ ଇନ୍ଦ୍ର ଥାଆନ୍ତୁ ନା କାହିଁକି ସେ ଯେ ତାଙ୍କର ଶିଷ୍ୟ । ଏହି ସମୟରେ ଅପମାନ ପାଇ ମଧ୍ୟ ଇନ୍ଦ୍ରଙ୍କୁ ବୁଝାଇବା ଉଚିତ ଥିଲା । ତାଙ୍କୁ ବୁଝାଇବା ପରେ ଇନ୍ଦ୍ର ନିଜର ଭୁଲ ବୁଝିପାରି ଦେବଗୁରୁଙ୍କ ଠାରୁ କ୍ଷମା ଗ୍ରହି ଥାଆନ୍ତେ ଆଉ ଆଗକୁ ଅଗ୍ରସର ହୋଇପାରି ନ ଥାଆନ୍ତେ । ଏପରି ନିଜର ବୃହସ୍ପତି କାହିଁକି ଫେରିଗଲେ ? ସେ ନିଜର ଅପମାନ ପ୍ରତି କାହିଁକି ଧ୍ୟାନ ଦେଲେ ?"

ଏହାପରେ ସୂତ କହିଲେ— "ଭଗବାନ ! ଆପଣ ଠିକ୍ କଥା କହୁଛନ୍ତି । ଦେବଗୁରୁ ବୃହସ୍ପତିଙ୍କ ପାଇଁ ମାନ ଅପମାନ କିଛି ନାହିଁ । ପିଲା ଅପରାଧ କଲେ ବଡ଼ ଲୋକମାନେ ତାଙ୍କୁ କ୍ଷମା କରିଦିଅନ୍ତି । ମା' ପେଟରେ ରହି ପିଲା ଲାତ ମାରେ; ହେଲେ ମା' ଏଥିରେ ରାଗ ହୁଏ ନାହିଁ, ତାଙ୍କୁ ଅଜ୍ଞାନ ଭାବି ତାର ଅପରାଧ ପ୍ରତି ମଧ୍ୟ ଧ୍ୟାନ ଦିଏ ନାହିଁ । କିନ୍ତୁ ଐଶ୍ୱର୍ଯ୍ୟର ମୋହ ଏପରି ପ୍ରବଳ ଯେ, ଏହାଦ୍ୱାରା କୌଣସି ଲୋକ ହୃଦୟରେ ଅହଙ୍କାର ଏପରି ଭାବରେ ଜାତ ହୁଏ, ଫଳରେ ତାର ବିବେକ ବୁଦ୍ଧି ସବୁ ନଷ୍ଟ ହୋଇଯାଏ । 'ବଡ଼ ବଡ଼ ଲୋକଙ୍କୁ ମଧ୍ୟ ସେ ଅପମାନିତ କରି ବସେ । ଯେତେବେଳେ ଯାଏ ତାଠାରୁ ଐଶ୍ୱର୍ଯ୍ୟ ମଦ ଛାଡ଼େ ନାହିଁ ସେତେବେଳେ ତାଙ୍କୁ ଉପଦେଶ ଦେବା ବ୍ୟର୍ଥ । ଉପଦେଶ ଦେବା ଫଳରେ ମଧ୍ୟ ତା ମନରେ କୌଣସି ପ୍ରଭାବ ପଡ଼ିବ ନାହିଁ ; ବରଂ ସେ ଓଲଟା ଅପରାଧ କରିବସିବ । ଏହି ମଦ ଛାଡ଼ିଗଲେ ଆପେ ଆପେ ସେ ତାର ଭୁଲ ବୁଝିପାରିବ । ହୃଦୟରେ ଅନୁତାପ ଭାବ ଜାଗ୍ରତ ହେଲେ ପାପର ପ୍ରାୟଶ୍ଚିତ ଆରମ୍ଭ ହେଲା ବୋଲି ଜାଣିବାକୁ ହେବ । ଏହି ବିଷୟରେ ଏକ ଦୃଷ୍ଟାନ୍ତ ମୁଁ ଆପଣଙ୍କୁ କହୁଛି, ଶୁଣନ୍ତୁ ।

ଗୋଟିଏ ସୁରାପାନକାରୀ ଲୋକ ଥିଲା । ସେ ପ୍ରତ୍ୟେକ ଦିନ ମଦ ପିଏ । ଦିନେ ସେ ତାର ଆବଶ୍ୟକ ଅପେକ୍ଷା ଅଧିକ ସୁରାପାନ କରି ମଦ ମତ୍ତରେ ମଦାନ୍ଧ ହୋଇ-ଯାଇଥିଲା । ଏହି ସମୟରେ ସେହି ନଗରର ନଗରପାଳ ରଥରେ ବସି ବୁଲିବାପାଇଁ ଯାଉଥିଲେ । ମଦ ପିଇଥିବା ସେଇ ଲୋକଟି ନଗରପାଳଙ୍କୁ ଖୁବ୍ ଜୋରରେ ଡାକି କହିଲା— "ଆରେ ନଗରପାଳ ! ତୁ କେଉଁଆଡ଼େ ବୁଲିବାକୁ ଯାଉଛୁ ? ରଥକୁ ଠିଆ କର, ଆଗ ମୁଁ ତା ଉପରେ ବସିବି ତାପରେ ଯାଇ ତୋ କଥା ବିଚାର କରିବି ।"

ତାଙ୍କୁ ମଦ୍ୟପର ଏପରି କଥା ବହୁତ ଖରାପ ଲାଗିଲା । ସେ ନଗର ରକ୍ଷକ ସେବକଙ୍କୁ ଆଦେଶ ଦେଇ କହିଲେ – "ଏଇ ଦୁଷ୍ଟକୁ ବାନ୍ଧି ନେଇ ବନ୍ଦୀଶାଳାରେ ରଖ । ତାର ମନ୍ଦ ବ୍ୟବହାର ନିମନ୍ତେ କାଲି ତାର ବିଚାର ହେବ । ନଗର ରକ୍ଷକ

ମଦ୍ୟପକୁ ବାନ୍ଧନେଇ ବନ୍ଦୀଶାଳାରେ ପକାଇଦେଲା । ରାତି ଭିତରେ ତାଠାରୁ ମଦ ନିଶା ଛାଡ଼ିଗଲା । ପରଦିନ ସକାଳେ ନଗରପାଳ ତାର ବିଗ୍ଭର ନିମନ୍ତେ ଯେତେବେଳେ ଦରବାରକୁ ଅଣାଇଲେ, ସେତେବେଳେ ସେହି ଲୋକ ବଡ଼ ଅନୁନୟ ବିନୟ ହୋଇ କହିଲା – "ଅନ୍ନଦାତା ! ମୋତେ କାହିଁକି ବାନ୍ଧିକରି ରଖିଛନ୍ତି ? ମୋତେ ଦୟାକରି ଛାଡ଼ିଦିଅନ୍ତୁ ।"

ତା କଥା ଶୁଣି ରାଗରେ ଗର୍ଜିଉଠି ନଗରପାଳ କହିଲେ—"ଆରେ ନିର୍ଲଜ ! କାଲି ତୁ କହୁଥିଲୁ ମୋର ବିଗ୍ଭର କରିବୁ ବୋଲି । ଏବେ ମୋର ବିଗ୍ଭର କର ।"

ସେହି ଲୋକ ଅତ୍ୟନ୍ତ ବିନୟ ଭାବରେ କହିଲା -"ଦୀନବନ୍ଧୁ ! ମୁଁ ତ କେବେ ଏପରି କଥା କହିନାହିଁ । ଯଦି କହିଥିବ ତେବେ ମୁଁ ମଦ ମତ୍ତରେ ଏହି କଥା କହିଥିବି, ବର୍ତ୍ତମାନ ମଦନିଶା ମୋର ଛାଡ଼ି ଯାଇଛି । କାଲି କହିଥିବା ଶକ୍ତି ଆଜି ଆଉ ନାହିଁ । ମୁଁ ବର୍ତ୍ତମାନ ଆପଣଙ୍କୁ ବାରମ୍ବାର କ୍ଷମା ମାଗୁଛି । ମୋତେ ଆପଣ କ୍ଷମା ଦିଅନ୍ତୁ ।"

ସୂତ ! ବୃହସ୍ପତି ଭାବିଲେ – "ଏବେ ତା ହୃଦୟରେ ଐଶ୍ୱର୍ଯ୍ୟ ଜନିତ ମଦ ସ୍ଥାନ ପାଇଛି, ସେ ଏହି ସମୟରେ ମୋର ଉପଦେଶ ଶୁଣିବ ନାହିଁ । ତାଙ୍କୁ ଏହି ସମୟରେ ଉପଦେଶ ଦେଲେ ବ୍ୟର୍ଥରେ ପରିଣତ ହେବ । ବରଂ ତାଙ୍କୁ କିଛି ନକହିବା ବା ତା ପାଖକୁ ନ ଯିବା ସବୁଠାରୁ ମଙ୍ଗଳମୟ । ତା ପାଖରୁ ଦୂରକୁ ହଟିଯିବା ହେଉଛି ଶ୍ରେୟସ୍କର । ଏଣୁ ସେ ଚାଲି ଆସିଲେ । ସେ ଫେରି ଆସିବା ପରେ ଇନ୍ଦ୍ରଙ୍କର ମଦ ଛାଡ଼ିଗଲା । ସେ ନିଜର ଭୁଲ ବୁଝିପାରିଲେ । ସେ ଅତ୍ୟନ୍ତ ଦୁଃଖ ପ୍ରକାଶ କରି ସଭାରେ ବସି ଅନୁତାପ କରିବାକୁ ଲାଗିଲେ—"ହାୟ ! ମୁଁ ମନ୍ଦମତି କିପରି ଏହି ମହାନ୍ ପାପ କଲି ! ମୋର କିପରି ଆଜି ଏଡ଼େ ବଡ଼ ଅପରାଧ ଜାତହେଲା । ମୁଁ ଐଶ୍ୱର୍ଯ୍ୟ ମଦରେ ଘାରି ହୋଇ ତ୍ରୈଲୋକ୍ୟ ପୂଜିତ ସୁରାସୁର ସମସ୍ତଙ୍କ ଦ୍ୱାରା ପୂଜିତ ପୂଜ୍ୟ ଗୁରୁଦେବଙ୍କୁ ହତାଦର କଲି । ଏହାସବୁ ଇନ୍ଦ୍ରତ୍ୱ ବୈଭବର କାରଣ ଐଶ୍ୱର୍ଯ୍ୟ ଯୋଗୁ ହିଁ ହୋଇଗଲା, ଯେଉଁ ଐଶ୍ୱର୍ଯ୍ୟ ବଶତଃ ମୋହ ଯୋଗୁ ପରମସତ୍ତ୍ୱ ସମ୍ପନ୍ନ ଦେବତାମାନଙ୍କର ଅଧିପତି ହୋଇ ମଧ୍ୟ ମୋଠାରେ ଏପରି ମିଥ୍ୟା ଅଭିମାନ ଘାରିଦେଲା ଯାହାଫଳରେ ମୋଠାରେ ଅସୁର ଭାବ ଜାଗ୍ରତହେଲା । ଏହିପରି ଭାବରେ ସେ ନିଜକୁ ବାରମ୍ବାର ଧିକ୍କାର କରିବାକୁ ଲାଗିଲେ ।"

ସଭାରେ ଉପସ୍ଥିତ ଥିବା ପ୍ରାୟ ଅଧିକାଂଶ ଲୋକ ଯେଉଁମାନେ କି ରାଜାଙ୍କର ବ୍ୟର୍ଥ ପ୍ରଶଂସା ଗାନ କରି ତାଙ୍କୁ ଭ୍ରମରେ ପକାଇ ତାଙ୍କର ଅନୁଚିତ କର୍ମକୁ ଶାସ୍ତ୍ର-ବଚନ ଦ୍ୱାରା ବିଭିନ୍ନ ପ୍ରକାର ଦୃଷ୍ଟାନ୍ତ ଦେଖାଇ ସମର୍ଥନ କରୁଥିଲେ ସେମାନେ ସମସ୍ତେ

ରାଜାଙ୍କୁ ଖୋସାମଦ କରିବାକୁ ଲାଗିଲେ । ରାଜାଙ୍କୁ ଯେକୌଣସି ପ୍ରକାରରେ ପ୍ରସନ୍ନ କରିବା ଥିଲା ସେମାନଙ୍କର କାର୍ଯ୍ୟ । ସେମାନଙ୍କ ମଧ୍ୟରୁ ଜଣେ ଖୋସାମଦିଆ ବିଦ୍ୱାନ କହିଲେ — "ମହାରାଜ ! ଆପଣ କି ଅପରାଧ କରିଛନ୍ତି ଯେ ଏତେ ବ୍ୟସ୍ତ ହୋଇପଡ଼ୁଛନ୍ତି । ଆପଣ ଠିକ୍ କାର୍ଯ୍ୟ କରିଛନ୍ତି । ଦେଖନ୍ତୁ ଶାସ୍ତ୍ରରେ ଲେଖାଯାଇଛି—"ସାର୍ବଭୌମ ସିଂହାସନ ଉପରେ ବସିଥିବା ସମ୍ରାଟ ଯେ କେହି ଆସିଲେ ମଧ୍ୟ ଉଠିବା ଉଚିତ ନୁହେଁ । ସେ ଯଦି ଆଗନ୍ତୁକମାନଙ୍କ ଆଗମନରେ ବାରମ୍ବାର ଉଠି ଠିଆ ହେଉଥିବେ ତାହାହେଲେ ତାଙ୍କର ସମ୍ମାନ ନଷ୍ଟହେବ । ସେ ସିଂହାସନ ଉପରେ ବସିଥିବାବେଳେ ଆଠ ଲୋକପାଳମାନଙ୍କର ପ୍ରତିନିଧିତ୍ୱ କରିଥାଆନ୍ତି । ଆଉ ଆପଣ ଯଦି ସିଂହାସନରୁ ଉଠି ନାହାଁନ୍ତି ତେବେ ଏହାଦ୍ୱାରା କିଛି ଅନ୍ୟାୟ କରି ନାହାନ୍ତି । ଉଠିବାଟା ଅନୁଚିତ ।"

ତାଙ୍କର ଏହିକଥା ଶୁଣି ଇନ୍ଦ୍ର ବ୍ୟସ୍ତହୋଇ କହିଲେ—"ଆପଣ ଯାହା କହୁଛନ୍ତି ତାହା ଠିକ୍ ନୁହେଁ । ଏହାକୁ ଉତ୍ତମ ଧର୍ମବୋଲି କୁହାଯାଏ ନାହିଁ । ଏହିପରି ବାକ୍ୟ ବହୁତ ମିଳିବ । କିନ୍ତୁ ଗୁରୁଦେବ ସବୁ ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ତଥା ସାକ୍ଷାତ୍ ଭଗବାନ ସ୍ୱରୂପ ଅଟନ୍ତି । ତାଙ୍କୁ ସବୁସ୍ଥାନରେ ସବୁକ୍ଷେତ୍ରରେ ଅଭ୍ୟର୍ଥନା କରିବା ଉଚିତ । ତାଙ୍କୁ ପ୍ରଣାମ ନ କରିବା ଏକ ମହା ଅପରାଧ । ଶିଷ୍ୟ ଯେ କୌଣସି ଅବସ୍ଥାରେ ଥାଉନା କାହିଁକି, ଯେତେ ବଡ଼ ହେଉନା କାହିଁକି, ସେ ଶିଷ୍ୟ ବ୍ୟତୀତ ଆଉ କିଛି ନୁହେଁ ।

ସେହି ତୋଷାମଦ୍ ବିଦ୍ୱାନ ମହୋଦୟ ନିଜ କଥାକୁ ବଜାୟ ରଖିବା ତଥା ଇନ୍ଦ୍ରଙ୍କୁ ଆନନ୍ଦ ଦେବା ଉଦ୍ଦେଶ୍ୟରେ ପୁଣି କହିଲେ —"ହଁ, ମହାରାଜା । ଆପଣ ଯାହା କହୁଛନ୍ତି ସବୁ ଠିକ୍ ; ହେଲେ ମଧ୍ୟ ସିଂହାସନ ଆସୀନ ରାଜା ହିଁ ରାଜା । ଏହି ସମୟରେ ସେ ସମସ୍ତଙ୍କର ପୂଜନୀୟ । ଯେଉଁମାନେ ତାଙ୍କ ରାଜ୍ୟରେ ବାସକରୁଛନ୍ତି ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବା ଉଚିତ । ଆପଣ ହେଉଛନ୍ତି ତ୍ରୈଲୋକ୍ୟସ୍ୱାମୀ । ଏହି ତିନିଲୋକରେ ଯେଉଁମାନେ ବାସକରୁଛନ୍ତି ସେମାନେ ସମସ୍ତେ ଆପଣଙ୍କର ପ୍ରଜା । ରାଜାଙ୍କୁ ପ୍ରଜାମାନେ ସମ୍ମାନ ଦେଖାଇବା ଉଚିତ ।"

ଏହା ଶୁଣି ଇନ୍ଦ୍ର ଖୁବ୍ ରାଗିଯାଇ କହିଲେ —"ତୁମେ ପକ୍ଷପାତପୂର୍ଣ୍ଣ ଅଧର୍ମ କଥା ମୋତେ ଶୁଣାଉଛ । ବ୍ରାହ୍ମଣ ଜଗତର ଗୁରୁ । ଗୁରୁଦେବଙ୍କ ଶାସନ ଅଧୀନରେ ସମସ୍ତେ ରହିବାର କଥା । ସେ କାହା ଶାସନ ଭିତରେ ନାହାନ୍ତି ବା ସେ କାହାର ପ୍ରଜା ନୁହନ୍ତି । ତୁମେ ପଣ୍ଡିତ ନୁହଁ, ମୂର୍ଖ । ତୁମେ ମୋତେ ଖରାପ ପଥ ଦେଖାଉଅଛ । ତୁମମାନଙ୍କଭଳି ତୋଷାମଦିଆ ପଣ୍ଡିତମାନଙ୍କ ଉପଦେଶ ଅନୁସାରେ ବାଟ ଚାଲିଲେ ମଣିଷ ନିଶ୍ଚୟ ନରକରେ ବହୁକାଳ ପର୍ଯ୍ୟନ୍ତ ଭୟଙ୍କର କୁମ୍ଭୀପାକ

ରୌରବ ଆଦି ନରକରେ ପଡ଼ି ସଡ଼ିବାକୁ ହେବ । ତୁମେ ଯେପରି ମୂର୍ଖମାନଙ୍କ କଥା ଉପରେ ବିଶ୍ୱାସ କରି ଏହି ସଂସାରସାଗରକୁ ପାରି କରିବା ପାଇଁ ବିଚାର କରିବାକୁ ଇଚ୍ଛାକରୁଛ, ତାହାହେଉଛି ଏହିପ୍ରକାର "ପଥର ନୌକା ଉପରେ ବସି ନଦୀ ପାରିହେବା ବିଚାର" ସଙ୍ଗେ ସମାନ । ମୁଁ ତୁମମାନଙ୍କର ଚିକ୍କଣ କଥାରେ ବିଶ୍ୱାସ କରି ଅଗ୍ରସର ହେବାକୁ ଚାହେଁନାହିଁ । ଆଜି ପର୍ଯ୍ୟନ୍ତ ମୁଁ ମୋର ଗୁରୁଦେବଙ୍କୁ କେବେ ଅପମାନ କରି ନଥିଲି । ସଦା ମୁଁ ତାଙ୍କୁ ଅନୁକୂଳ ଆଚରଣ ପ୍ରଦର୍ଶନ କରି ତାଙ୍କର ସମସ୍ତ ଆଜ୍ଞାକୁ ସାବଧାନତା ଓ ତତ୍ପରତା ସହକାରେ ପାଳନ କରି ଆସୁଥିଲି କିନ୍ତୁ ଆଜି ମୋର ଘୋର ଅପରାଧ ହୋଇଗଲା । ଆଉ ମୁଁ ନିଜକୁ ଅଧିକ ଭ୍ରମ ଭିତରେ ରଖିବାକୁ ଚାହେଁ ନାହିଁ । ମୁଁ ବର୍ତ୍ତମାନ ଶଠତା ତ୍ୟାଗକରି ମୋର ସେହି ପରମପୂଜ୍ୟ ଗୁରୁଦେବଙ୍କ ନିକଟକୁ ଯିବି, ତାଙ୍କ ପାଖରେ ମଥାନତ କରି ବିନମ୍ର ଭାବରେ ବୁଝାଇବାକୁ ଚେଷ୍ଟା କରି ମୋତେ କ୍ଷମା କରିଦେବା ନିମନ୍ତେ ପ୍ରାର୍ଥନା କରିବି । ସେ ନିଶ୍ଚୟ ମୋତେ କ୍ଷମା କରିବେ । ତାଙ୍କ ପାଖରେ ମୁଁ ମୋର ସମସ୍ତ କଥା ଠିକ୍ ଠିକ ଭାବରେ ପ୍ରକାଶ କରିବି ।"

ସୂତ କହିଲେ—"ଏସବୁ କଥା କହି ଇନ୍ଦ୍ର ସଙ୍ଗେ ସଙ୍ଗେ ସିଂହାସନରୁ ଉଠି ଠିଆହେଲେ ଏବଂ ଖାଲି ପାଦରେ ବୃହସ୍ପତିଙ୍କ ଘରକୁ ଗଲେ । କିନ୍ତୁ ଏହି ସମୟରେ ବୃହସ୍ପତିଙ୍କୁ ତାଙ୍କ ଘରେ ପାଇଲେ ନାହିଁ । ସେ ଚାରିଆଡ଼େ ବୃହସ୍ପତିଙ୍କୁ ଖୋଜିବାକୁ ଲାଗିଲେ । ବାଣ ଯେ ଧନୁରୁ କିପରି ଚାଲିଯାଇଛି । ଇନ୍ଦ୍ରଙ୍କ ମନରେ ବଡ଼ ଅନୁତାପ ଜାତହେଲା । ସେ ମନ ଦୁଃଖରେ କେବଳ ଚିନ୍ତା କରିବାକୁ ଲାଗିଲେ ।"

— ଛପ୍ପୟ —

ତୁରତ ଇନ୍ଦ୍ରକୁଁ ଚେତ ଭୟୋ ମନକୁଁ ଧିକ୍କାରେଂ ।
କେଁସେଙ୍କୀୟୋ କାମ ଦୁଖିତ ଅତି ହୋହିଁ ବିଚାରେଂ ॥
ହାୟ ! ବୁଦ୍ଧି, ମୟନସୀ ଅନାଦର ଗୁରୁକୋ କୀହ୍ନୋ ।
ସମ୍ମୁଖ ଆୟେ ଦେବ ନହୀ ଉଠି ଆସନ ଦୀହ୍ନୋ ॥
ଶ୍ରୀ ଚରନନୀ ମହିଁ ଶୀଶଧରି, ରେଉଁଙ୍ଗୋ ପଛିତାଉଁଗେ ।
ବାର ବାର ବହୁ ବିନୟକରି, ଗୁରୁକୁଁ ଜାଇ ମନାଉଁଗେ ॥

●

ମୁଦ୍ରଣ —ବାପୁଜୀ ପ୍ରିଣ୍ଟର୍ସ, କଟକ-୯

## କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ପ୍ରକାଶିତ କେତୋଟି
## ଚିରନ୍ତନ ସାହିତ୍ୟ

---

ଦ୍ୱାପର ଯୁଗର ଶୁକଙ୍କ ପର ଅହୋରାତ୍ର କୃଷ୍ଣଭାବୋନ୍ମତ୍ତ ମହାତ୍ମା ପ୍ରଭୁଦତ୍ତ ବ୍ରହ୍ମଚାରୀ ପ୍ରଣୀତ ଷାଠିଏ ଖଣ୍ଡ 'ଭାଗବତୀ କଥା'ର ଓଡ଼ିଆ ଅନୁବାଦ ।

**"ଭାଗବତୀ କଥା"**

(ବର୍ତ୍ତମାନ ସୁଦ୍ଧା ଷୋହଳ ଖଣ୍ଡ ପ୍ରକାଶିତ)

ଭାରତୀୟ ଆତ୍ମାର ପରପ୍ରକାଶ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ପ୍ରଣୀତ

**ରାମାୟଣ**

ମୂଲ୍ୟ ପଞ୍ଚଦଶ ଟଙ୍କା

**ମହାଭାରତ**

ପରିମାର୍ଜିତ ସଂସ୍କରଣ ମୂଲ୍ୟ—ଚାଳିଶି ଟଙ୍କା

**ଭଗବଦ୍ ଗୀତା**

ମୂଲ୍ୟ ପାଞ୍ଚ ଟଙ୍କା

କେ. ଏମ୍. ମୁନ୍ସୀ ପ୍ରଣୀତ ସୁଖ୍ୟାତ ଚରିତୋପନ୍ୟାସ

**ଭଗବାନ ପରଶୁରାମ**

ପ୍ରଥମ ଓ ଦ୍ୱିତୀୟ ଖଣ୍ଡ—ପ୍ରତ୍ୟେକ ଖଣ୍ଡ ପଚିଶ ଟଙ୍କା

ପ୍ରକାଶ ଅପେକ୍ଷାରେ......

ଆଚାର୍ଯ୍ୟ ହରିହର ଦାସଙ୍କ

**ଭଗବଦ୍ ଗୀତା**